# ଜୁଆଙ୍ଗ ପର୍ବପର୍ବାଣି

*(Art, culture, ritual, tradition & festivals: an exclusive field study on the juang)*

ରଞ୍ଜନ ପ୍ରଧାନ



ଲେଖକ: ରଞ୍ଜନ ପ୍ରଧାନ

# ଜୁଆଙ୍ଗ ପର୍ବପର୍ବାଣି

.............................................................................

*(Art, culture, ritual, tradition & festivals: an exclusive field study on the juang)*

ପ୍ରକାଶକ : କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ,କେନ୍ଦ୍ରାପଡା
ବିତରକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର-୧୨
ପ୍ରଚ୍ଛଦ : ଅଶୋକ ମହାନ୍ତି, ଫଟୋ : ରଞ୍ଜନ ପ୍ରଧାନ
ମୁଦ୍ରଣ : ଏ.ବି.ଇମେଜିଂ ଆଣ୍ଡ ପ୍ରିଣ୍ଟସ୍ ପ୍ରା.ଲି., ଭୁବନେଶ୍ୱର
ବହି ଭିତରର ସମସ୍ତ ଫଟୋ : ରଂଜନ ପ୍ରଧାନ
ପ୍ରଥମ ମୁଦ୍ରଣ : ୨୦୧୪

ମୂଲ୍ୟ - ୩୭୦ ଟଙ୍କା


*photography: ranjan pradhan*

***juang parba parbani***

*Art, culture, ritual, tradition & festivals: an exclusive field study on the juang by ranjan pradhan, published by creative odisha, niginipur, sanajaria, kendrapada, odisha.*

***contact:* 09437213854**
***e-mail:*** *ranjan_pragyan@rediffmail.com*
*pradhanranjan37@yahoo.com*

**₹. 370.00**

ISBN: 978-81-89098-68-1



# ଉତ୍ସର୍ଗ

ଗଳ୍ପ, କବିତା ଓ ଉପନ୍ୟାସ ଭଳି ସାହିତ୍ୟର ଲୋଭନୀୟ ଏବଂ ଗ୍ଲାମର୍‌ପୂର୍ଣ୍ଣ ବିଭାଗକୁ ଛାଡି ଏଇ ନିରସିଆ ଆଦିବାସୀ ସାହିତ୍ୟ ପ୍ରେମରେ ପଡିଥିବା ଏବଂ ସେହି ଆଦିମ ଜନଜାତିଙ୍କ ପାଇଁ ଦିନରାତି ଖଟିଖଟି, ଅଖିଆ ଅପିଆ ବଣଜଙ୍ଗଲ ଓ ପାହାଡରେ ବୁଲିବୁଲି ରୋଗିଣା ହୋଇ ପଡିଥିବା ବିଚରା ନିରୀହ **ରଂଜନ ପ୍ରଧାନଙ୍କୁ** ....

## ସୂଚୀପତ୍ର

# ମିଛ ଆଧୁନିକତା ବନାମ୍ ନିଛକ ପରଂପରା

ଖଣି ଓ ଶିଳ୍ପର ବିକାଶ ଯୋଗୁଁ କେନ୍ଦୁଝର ଜିଲ୍ଲାର ଆଉକିଛି ଲାଭକ୍ଷତି ହେଉ କି ନହେଉ ଆଦିବାସୀ ଜନଜୀବନ, ପ୍ରକୃତି ଓ ପରିବେଶ ବିଶେଷ ଭାବେ ପ୍ରଭାବିତ ହୋଇଛି । କେନ୍ଦୁଝର ଜଙ୍ଗଲର ସ୍ୱାସ୍ଥ୍ୟ ରୁଗ୍ଣ ହୋଇଛି, ନଦୀନାଳ, ଝରଣା ଶୁଷ୍କ ହୋଇଛି, ପାହାଡ଼, ପର୍ବତ ଧ୍ୱଂସ ପାଇଛି ଏବଂ ସର୍ବୋପରି ଏହାର ନିର୍ମଳ



ଜୁଆଙ୍ଗ ବୃଦ୍ଧାମାନଙ୍କ ଗହଣରେ ଲେଖକ

ଆକାଶ ଓ ବାୟୁମଣ୍ଡଳ କଳକାରଖାନାର ଧୂଆଁରେ ବିଷାକ୍ତ ହୋଇଛି ।

ଏକଦା ବଣ, ପାହାଡଘେରା ସବୁଜସୁନ୍ଦର କେନ୍ଦୁଝର କେବଳ ଏଠାକାର ପୁରାତନ ଜନଜାତିଙ୍କ ଆଦିଭୂମି ଭାବେ ବେଶ୍ ପରିଚିତ ଥିଲା । ଅତୀତରେ କେନ୍ଦୁଝର ଜିଲ୍ଲାର ଶାନ୍ତଶୀତଳ ସବୁଜିମା, ପାହାଡ, ଝରଣା, ନଦୀ, ନାଳ, ପୁରାତନ ଜନଜାତି ଓ ଏହାର ଜୈବବିବିଧତା ବହିରାଗତଙ୍କୁ ଆକୃଷ୍ଟ କରୁଥିଲା । ମାତ୍ର ଆଜି ଏସବୁ ବିପର୍ଯ୍ୟସ୍ତ । ହୃଦୟଶୂନ୍ୟ ଖଣି ଖନନ ଏବଂ ଅନ୍ଧ ଶିଳ୍ପାୟନର ପ୍ରଭାବରେ କେନ୍ଦୁଝର ଜିଲ୍ଲାର ପୁରାତନ ଜନଜାତି ଜୁଆଙ୍ଗ, ଭୂୟାଁ, ବାଥୁଡି, ମୁଣ୍ଡା, ସାନ୍ତାଳ ଭଳି ଜନଜାତିଙ୍କ ଜୀବନଯାତ୍ରା ବିପର୍ଯ୍ୟସ୍ତ ହୋଇଛି । ସେମାନଙ୍କ ଜୀବନଶୈଳୀରେ ଅନେକ ପରିବର୍ତ୍ତନ ଦେଖାଦେଇଛି ।

କେନ୍ଦୁଝରକୁ 'ରତ୍ନଗର୍ଭା' ବୋଲି କୁହାଯାଇଥାଏ । ଆଉ ଖାସ୍ ଏହି ପରିଚୟ ପାଇଁ ହିଁ କେନ୍ଦୁଝରକୁ ଅନେକ ମୂଲ୍ୟ ଦେବାକୁ ପଡିଛି । କେନ୍ଦୁଝର ମାଟିରେ ଲୁହାପଥର, ମାଙ୍ଗାନିଜ୍, କ୍ରୋମାଇଟ୍, ଡୋଲାମାଇଟ୍, ଅଭ୍ର, ଆଲୁମିନିୟମ, ସୁନା, ପ୍ଲାଟିନମ୍, ଗ୍ରାନାଇଟ୍, ଚୂନପଥର ଭଳି ଅନେକ ମୂଲ୍ୟବାନ୍ ଖଣିଜ ସଂପଦ ଭରି ରହିଛି । ଖଣିଜ ସଂପଦ ଉତ୍ତୋଳନ ପାଇଁ ନିୟମିତ ପାହାଡ଼ ଭଙ୍ଗା ଚାଲିଛି ଏବଂ ସେଠି ଗଢି ଉଠିଛି କଳକାରଖାନା । କାରଖାନା ପ୍ରତିଷ୍ଠା ଆଳରେ ବ୍ୟାପକ ଜଙ୍ଗଲ ଧ୍ୱଂସ କରାଯାଉଛି । ଏହି କାରଣରୁ ଏଠାକାର ପୁରାତନ ଅଧିବାସୀମାନଙ୍କୁ କ୍ରମେ ଜଙ୍ଗଲର ଆତ୍ମୀୟତାରୁ ବଞ୍ଚିତ ହେବାକୁ ପଡୁଛି । ତଥାକଥିତ ବିକାଶ ଏବଂ ମିଛ ଆଧୁନିକତାର ପ୍ରଭାବରେ ଏଠାକାର ପୁରାତନ ଅଧିବାସୀମାନେ ନିଜର ପ୍ରାଚୀନ ସଂସ୍କୃତି ଓ ପରଂପରାକୁ ଭୁଲି ଯାଇଛନ୍ତି ।

ଦିନ ଥିଲା, କେନ୍ଦୁଝରର ଅନେକ ଦୁର୍ଗମ ଜଙ୍ଗଲିଆ ରାସ୍ତା ଉପରେ ଦିନଦି'ପ୍ରହରରେ ବାଘ, ଭାଲୁ, ବାର୍ହା, ସମ୍ବର, ହରିଣ କିମ୍ବା ହାତୀ ଭଳି ଜଙ୍ଗଲୀ ଜୀବଜନ୍ତୁଙ୍କୁ ଦେଖିବାକୁ ମିଳୁଥିଲା । ମାତ୍ର ଆଜିର ଦିନରେ ଆପଣ ସେହି ରାସ୍ତା ଉପରେ ହଜାର ହଜାର ସଂଖ୍ୟାରେ ଲୁହାପଥର ବୋଝେଇ ଟ୍ରକ୍, ଡ଼ମ୍ପର ଓ ପେ-ଲୋଡ଼ର ଭଳି ବିରାଟ ବିରାଟ ଇସ୍ପାତ ଜନ୍ତୁମାନଙ୍କୁ ଦେଖିବାକୁ ପାଇବେ । ରାସ୍ତା ଉପରେ ଗତି କରୁଥିବା ଶହଶହ ସଂଖ୍ୟାରେ ଲୁହାପଥର ବୋଝେଇ ଟ୍ରକ୍‌ର ବିକଟାଳ ଶବ୍ଦ, ରେଲ୍‌ୱେ ସାଇଡ଼ିଂର ଧୂଳି, ଖଣିଖାଦାନ ଓ କଳକାରଖାନାର ବିଷାକ୍ତ ଧୂଆଁରେ ମଳିନ ପଡିଯାଇଛି କେନ୍ଦୁଝରର ଶୀତୁଆ କାକରଭିଜା ସକାଳ । ଆଧୁନିକ ଓ ପାଶ୍ଚାତ୍ୟ ଶୈଳୀର କ୍ଲବ୍, ହୋଟେଲ୍ ଓ ବାର୍‌ମାନଙ୍କରୁ ଶୁଭୁଥିବା

ଇଂଲିଶ୍ ପପ୍ ସଂଗୀତର କୋଳାହଳ ଭିତରେ ଆଉ ଶୁଭୁନି ଜୁଆଙ୍ଗର 'ମଣ୍ଡ ଘରୁ' ଚାଙ୍ଗୁର ମଧୁର ମୂର୍ଚ୍ଛନା ।

ଆମ ଦେଶରେ ଯେଉଁ କେତେ ପ୍ରକାର ପୁରାତନ ଜନଜାତି ଅଛନ୍ତି, ସେମାନଙ୍କ ମଧ୍ୟରୁ ଜୁଆଙ୍ଗମାନେ ହେଉଛନ୍ତି ଏକ ସର୍ବପ୍ରାଚୀନ ଜନଜାତି । ଜୁଆଙ୍ଗମାନଙ୍କର ଗୋଟିଏ ବିଶେଷ ଗୁଣ ହେଉଛି ସେମାନଙ୍କର 'ଗୋଷ୍ଠୀ ଜୀବନ' *(community life)*। ସେମାନେ ଗୋଷ୍ଠୀଗତ ଭାବେ ଜୀବନକୁ ଉପଭୋଗ କରିବା ଶିଖିଛନ୍ତି । ପ୍ରତ୍ୟକ ପର୍ବପର୍ବାଣିରେ ସେମାନେ ଏକତ୍ରିତ ହୁଅନ୍ତି ଓ ପରସ୍ପର ମଧ୍ୟରେ ସୁଖ, ଆନନ୍ଦ ବାଣ୍ଟିଥାନ୍ତି । ତେବେ ଜୁଆଙ୍ଗମାନଙ୍କର ଗୋଷ୍ଠୀ ଜୀବନ ଆଜି ବିପନ୍ନ । ଦିନ ଥିଲା, ଗୋଟିଏ ଅତି ସାଧାରଣ ପର୍ବରେ ଜୁଆଙ୍ଗମାନେ ଏକତ୍ରିତ ହୋଇ ମହୁଲି କିମ୍ବା ହାଣ୍ଡିଆ ପିଉଥିଲେ ଏବଂ ଚାଙ୍ଗୁ ବଜେଇ, ନାଚଗୀତ କରି ଜୀବନକୁ ଉପଭୋଗ କରୁଥିଲେ । ପର୍ବପର୍ବାଣିମାନଙ୍କରେ ଗାଁର ପ୍ରତି ଘରୁ ଟଙ୍କା ଓ ଧାନ, ଚାଉଳ, ମୁଗ, ବିରି ଆଦି ନାନା ପ୍ରକାର ଶସ୍ୟ ଆଦାୟ ହେଉଥିଲା । ତାହା ମଣ୍ଡଘରେ ଥିବା 'ଗ୍ରାମ ପାଣ୍ଡି'ରେ ସଂରକ୍ଷିତ ହୋଇ ରହୁଥିଲା । ଏହି 'ଗାଁ ପାଣ୍ଡି'



ଗୋଟିଏ ଶୀତ ରାତିରେ ଜୁଆଙ୍ଗ ମଣ୍ଡଘରେ ଲେଖକ ନିଆଁ ପୁଆଁଉଛନ୍ତି ।

ଅର୍ଥରେ ପାଖ ହାଟରୁ ମହୁଲି କିମ୍ବା ହାଣ୍ଡିଆ କିଣା ହୋଇ ଆସୁଥିଲା । ପର୍ବ ପାଳନବେଳେ ଏହାକୁ ସମସ୍ତେ ମିଳିମିଶି ପିଉଥିଲେ ଏବଂ ଚାଙ୍ଗୁ ବଜେଇ ନାଚଗୀତ କରୁଥିଲେ । ଦୁର୍ଭାଗ୍ୟ, ଆଜି ଚାଙ୍ଗୁ ବଜେଇବା ପାଇଁ ଗାଁରେ କଙ୍ଗେର୍ (ଯୁବକ)ମାନଙ୍କର ଦେଖାଦର୍ଶନ ମିଳୁନି । ଚାଙ୍ଗୁ ବଜେଇ ନାଚଗୀତ କରିବାକୁ ଆଜିର ତଥାକଥିତ ଆଧୁନିକ ଓ ଶିକ୍ଷିତ ଯୁବବର୍ଗ ପସନ୍ଦ କରୁନାହାନ୍ତି । ଗୁପ୍ତଗଙ୍ଗା ଗ୍ରାମରେ 'ମାଘପୋଡି' ପର୍ବ ପାଳନବେଳେ ଚାଙ୍ଗୁ ବଜେଇ ନାଚଗୀତ କରିବାକୁ ସେଦିନ ଜଣେ ହେଲେ ଯୁବକ (କଙ୍ଗେର୍) ନ ମିଳିବା ଘଟଣା ଖୁବ୍ ଆଶ୍ଚର୍ଯ୍ୟ ଲାଗିଥିଲା । କେବଳ କେତେଜଣ ପୁରୁଣା ବୁଢା ଜୁଆଙ୍ଗ ମଣ୍ଡଘରେ ଟଙ୍ଗାଯାଇଥିବା ଅତି ପୁରୁଣା ଫିମ୍ପିମରା ଚାଙ୍ଗୁ ବାହାର କରି ନାଚଗୀତ କରିବାକୁ ବାହାରିଥିଲେ । ଏହା କ'ଣ ସେମାନଙ୍କର ସଂସ୍କୃତି ଓ ପରଂପରାକୁ ବଞ୍ଚାଇ ରଖିବାର ଆଶ୍ୱାସନା? ବର୍ତ୍ତମାନର ଯୁବପୀଢି ମଧ୍ୟରେ ଦେଖାଦେଇଥିବା ଏଭଳି ପରିବର୍ତ୍ତନ ଜୁଆଙ୍ଗମାନଙ୍କର ସଂସ୍କୃତି ଓ ପରଂପରା ପ୍ରତି ଏକ ନୂଆ ବିପଦ ସୃଷ୍ଟି କରିନାହିଁକି?

ଦିନଥିଲା ଆମ୍ବ ନୂଆଖିଆ, ଧାନ ନୂଆଖିଆ, ଅଷାଢ଼ି, ମାଘପୋଡି ଭଳି ପର୍ବପର୍ବାଣିମାନଙ୍କରେ ଛେଦ ପଡିଥିବା ଏକାଧିକ ଛେଳି (ମେରମ୍), ଗାଡ୍ରା (ମେଣ୍ଢା), ବୁଡାଏ (ଘୁଷୁରି) ଓ କୁକୁଡା (ସେଙ୍କଏ)ର ମାଂସର ପ୍ରାବଲ୍ୟରେ ଜୁଆଙ୍ଗ ଗାଁଟିଏ ଭାସି ଉଠୁଥିଲା । ପର୍ବ ପାଳନ ସରିଗଲାପରେ ଜୁଆଙ୍ଗମାନେ ଛେଦ ପଡିଥିବା ଏହି ପଶୁପକ୍ଷୀଙ୍କ ମାଂସକୁ ରାନ୍ଧି ଗାଁ ଦାଣ୍ଡରେ ପଙ୍କ୍ତି ଭୋଜନର ଆୟୋଜନ କରୁଥିଲେ ଏବଂ ମହୁଲି, ହାଣ୍ଡିଆ ନିଶାରେ ମାତାଲ୍ ହୋଇ ଉଠୁଥିଲେ । ସମସ୍ତେ ମିଳିମିଶି ଭୋଜିର ଆନନ୍ଦ ନେଇପାରୁଥିଲେ । ଗୋଷ୍ଠୀଗତ ଭାବେ ଜୀବନକୁ ବେଶ୍ ଉପଭୋଗ କରୁଥିଲେ । ମାତ୍ର, ଆଜି ଜୁଆଙ୍ଗମାନଙ୍କର ଏହି ସମୂହ ଭୋଜନ ବ୍ୟବସ୍ଥା ଏବଂ ଗୋଷ୍ଠୀ ଜୀବନ ପ୍ରତି ଏକ ପ୍ରକାଣ୍ଡ ବିପଦ ସୃଷ୍ଟି ହୋଇଛି । ଆଜି ପ୍ରତ୍ୟକ ଜୁଆଙ୍ଗ ଛେଦ ପଡିଥିବା ମାଂସକୁ ଭାଗବାଣ୍ଟ କରି ନିଜ ଘରକୁ ନେଇ ଯାଉଛନ୍ତି ଏବଂ ଘରେ ଏକଲା ରୋଷେଇ କରି ଖାଉଛନ୍ତି ।

ଆଜିର ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଜୁଆଙ୍ଗ ଯୁବ ସମାଜକୁ ପଥଭ୍ରଷ୍ଟ କରିଛି । ଅର୍ଦ୍ଧଶିକ୍ଷିତ ଜୁଆଙ୍ଗ ପିଲାଟି ନା ନିର୍ଦ୍ୱନ୍ଦ୍ୱରେ ଆସିପାରୁଛି ସ୍କୁଲ୍‌କୁ ନା ଫେରି ଯାଇ ପାରୁଛି ତା ପ୍ରିୟ ମଣ୍ଡଘରକୁ । ଫଳସ୍ୱରୂପ ଜୁଆଙ୍ଗ ପିଲାଟି ସ୍କୁଲକୁ ଆସି ପୂରାପୂରି ଶିକ୍ଷିତ ହୋଇପାରୁନି କି ତା'ର ମଣ୍ଡଘର ସଂସ୍କୃତି ଓ ପରଂପରାକୁ ଆପଣାର କରି ରଖିପାରୁନି । ଏମିତି ଏକ ଦ୍ୱନ୍ଦ୍ୱଗ୍ରସ୍ତ ସ୍ଥିତିରେ ରହି ଜୁଆଙ୍ଗ ପିଲାଟି ତା' ନିଜର



▶ ମଣ୍ଡଘରେ ବସି ଜୁଆଙ୍ଗମାନେ ଭଲମନ୍ଦ ଗପସପ କରୁଛନ୍ତି

ମଣ୍ଡଘର ସଂସ୍କୃତିକୁ ଭୁଲି ଯିବାକୁ ଚେଷ୍ଟା ନୁହେଁତ; ଅପଚେଷ୍ଟା କରୁଛି । ଆଜି ଜୁଆଙ୍ଗ ପିଲାଟି ଭୁଲି ଯାଇଛି ତାର ପ୍ରିୟ ମଡାଙ୍ଗକୁ ଓ ଡଇନାକୁ । ଭୁଲି ଯାଇଛି ତାର ପ୍ରିୟ ଚାଙ୍ଗୁକୁ ଓ ଢୋଲକୁ । ଭୁଲି ଯାଇଛି ତା ପ୍ରିୟ ପାହାଡକୁ ଓ ଜଙ୍ଗଲକୁ । ଭୁଲି ଯାଇଛି ତା ପ୍ରିୟ ମାତୃଭାଷାକୁ ଓ ସଂସ୍କୃତିକୁ । ଭୁଲି ଯାଇଛି ତା ପ୍ରିୟ ପରଂପରାକୁ ଓ ଜୀବନଶୈଳୀକୁ । ସର୍ବୋପରି ଭୁଲି ଯାଇଛି ତା ନିଜର ପ୍ରିୟ ପରିଚୟକୁ । ଭୁଲି ଯାଇଛି ତା ବୁନିଆଦ୍‌କୁ । ଜୁଆଙ୍ଗ ପିଲାଟି ନା ଭଲ ଓଡ଼ିଆ କହି ପାରୁଛି ନା ଭଲ. ତା ନିଜର ଜୁଆଙ୍ଗ ଭାଷାକୁ ଉଚ୍ଚାରଣ କରିପାରୁଛି? ସେ ଏକ ଅପମିଶ୍ରିତ ଭାଷାର ଜାଲରେ ଛନ୍ଦି ହୋଇ ନିଜକୁ ପ୍ରକାଶ କରିବାକୁ ଅସମର୍ଥ ହୋଇ ପଡୁଛି ।

ଜୁଆଙ୍ଗମାନେ ବେଶ୍ ଶୃଙ୍ଖଳିତ ଜନଜାତି । ସେମାନଙ୍କର ସାମାଜିକ ଏବଂ ଗୋଷ୍ଠୀ ଜୀବନ ଖୁବ୍ ସମୃଦ୍ଧ । ସେମାନେ ଗୋଷ୍ଠୀବଦ୍ଧ ଭାବେ ପାହାଡିଆ ଅଞ୍ଚଳରେ ବସବାସ କରିବାକୁ ପସନ୍ଦ କରିଥା'ନ୍ତି । ଜୁଆଙ୍ଗମାନଙ୍କର ସାମାଜିକ ଓ ଗୋଷ୍ଠୀ

ଜୀବନରେ 'ମଣ୍ଡଘର'ର ଏକ ବିଶେଷ ଭୂମିକା ରହିଥାଏ । ମଣ୍ଡଘରକୁ ଅନ୍ୟ ଅର୍ଥରେ କଚେରୀ ଘର ବୋଲି ବୁଝାଯାଇଥାଏ । ଏଠାରେ ଜୁଆଙ୍ଗମାନଙ୍କର ସମସ୍ତ ପ୍ରକାର ମାଲିମୋକଦ୍ଦମାର ଶୁଣାଣି, ନ୍ୟାୟନିଶାପ କାର୍ଯ୍ୟ ସଂପାଦନ ହୋଇଥାଏ । ଏହି ମଣ୍ଡଘରେ ହିଁ ପ୍ରତି ସନ୍ଧ୍ୟାରେ ଜୁଆଙ୍ଗ ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି । ଚାଙ୍ଗୁ ବାଦ୍ୟ ଓ ନୃତ୍ୟର ତାଳେତାଳେ ଜୁଆଙ୍ଗ ସେଲାନ୍ (ଯୁବତୀ) କଙ୍ଗେର୍ (ଯୁବକ)ମାନେ ପ୍ରତିଟି କ୍ଳାନ୍ତ ସନ୍ଧ୍ୟାକୁ ବେଶ୍ ରଙ୍ଗମୟ ଓ ରୋମାଞ୍ଚିତ କରିଦେଇଥାନ୍ତି । ଆଉ ମଧ୍ୟ 'ମଣ୍ଡଘର'ଟିରେ ଜୁଆଙ୍ଗମାନେ ଏକତ୍ରିତ ହୋଇ ସେମାନଙ୍କର ସମସ୍ୟା ଉପସ୍ଥାପନ କରିଥାନ୍ତି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରି ଜୀବନକୁ ଉପଭୋଗ କରିଥାନ୍ତି । ମାତ୍ର ଦୁର୍ଭାଗ୍ୟ, ଜୁଆଙ୍ଗମାନଙ୍କର ସାମାଜିକ ଓ ଗୋଷ୍ଠୀ ଜୀବନର ପ୍ରାଣକେନ୍ଦ୍ର କୁହାଯାଉଥିବା 'ମଣ୍ଡଘର' ଆଜି ସ୍ୱପ୍ନ ଓ ଇତିହାସ ପାଲଟିଯାଇଛି । ଏବେ ଜୁଆଙ୍ଗର 'ମଣ୍ଡଘର'ର ଚିତ୍ର ସଂପୂର୍ଣ୍ଣ ବଦଳି ଯାଇଛି । **ଆଧୁନିକତାର ପ୍ରଭାବ ହେଉ କିମ୍ବା ତଥାକଥିତ ମିଛ ବିକାଶର ସ୍ରୋତର ଅନୁକୂଳ ଦିଗରେ ଭାସି ଚାଲିଛନ୍ତି ପୃଥିବୀର ଅନ୍ୟତମ ପୁରାତନ ଜନଜାତି କୁହାଯାଉଥିବା ଏହି ଜୁଆଙ୍ଗମାନେ** । ପୁରୁଷ ପୁରୁଷ ଧରି ଗାଁ ମଝିରେ ଠିଆ ହୋଇଥିବା ପାରଂପରିକ ମାଟି ଏବଂ ନାନା ପ୍ରକାର ଚିତ୍ରକଳା ଖୋଦିତ କାଠରେ ନିର୍ମିତ ମଣ୍ଡଘରକୁ ସରକାର ଧ୍ୱଂସ କରି ସେହି ସ୍ଥାନରେ ସ୍କୁଲ୍ ଘର ଭଳି ଆଜବେଷ୍ଟସ ଛାତ ପଡିଥିବା ଲମ୍ବା ହଲ୍‌ଟିଏ ନିର୍ମାଣ କରି ତାହାର ନାମ 'କମ୍ୟୁନିଟି ସେଣ୍ଟର' *(comunity centre)* ରଖୁଛନ୍ତି । ତେବେ ସରକାରଙ୍କ ପକ୍ଷରୁ ନବନିର୍ମିତ ଏହି ଗୋଷ୍ଠୀ କେନ୍ଦ୍ରଗୁଡିକ ପାରଂପରିକ ମଣ୍ଡଘରର ସ୍ଥାନ ନେଇପାରିବକି? ଏହା ବିତର୍କସାପେକ୍ଷ । ପୂର୍ବର ମଣ୍ଡଘରେ ବ୍ୟବହୃତ ହୋଇଥିବା କାଠର ଖୁଣ୍ଟରେ ଯେଉଁଭଳି ଖୋଦେଇ ଶିଳ୍ପକଳା ପ୍ରଦର୍ଶିତ ହୋଇପାରିଥିଲା, ଆଜିର ସିମେଣ୍ଟ ନିର୍ମିତ ଗୋଷ୍ଠୀକେନ୍ଦ୍ରରେ ସେମିତି କ'ଣ ସଂଭବ ହୋଇପାରିଛି?

କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା ଏକ ପୁରାତନ ଜନଜାତି ଜୁଆଙ୍ଗମାନଙ୍କର ବିକାଶ ପାଇଁ ରାଜ୍ୟ ସରକାର ୧୯୭୮ ମସିହାରେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଗଠନ କରିଥିଲେ । ଏହା ସରକାରଙ୍କର ଏକ 'ଅଣୁ ପ୍ରକଳ୍ପ' ବା 'ମାଇକ୍ରୋ ପ୍ରୋଜେକ୍ଟ' ଏବଂ ଏହାର କାର୍ଯ୍ୟାଳୟ କେନ୍ଦୁଝର ଜିଲ୍ଲାର

ଗୋନାସିକାଠାରେ ଅବସ୍ଥିତ । ଜୁଆଙ୍ଗ ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଓ ଅର୍ଥନୀତିରେ ସୁଧାର ଆଣିବା ଉଦ୍ଦେଶ୍ୟରେ ଏହି ପ୍ରକଳ୍ପଟି ଗଠନ କରାଯାଇଥିଲା । ଏହି ସଂସ୍ଥା ମାଧ୍ୟମରେ ଜୁଆଙ୍ଗ ଅଞ୍ଚଳରେ ପକ୍କା ସଡ଼କ ନିର୍ମାଣ କରିବା ସହିତ ପାନୀୟ ଜଳ ପ୍ରକଳ୍ପ, ଜଳ ଅମଳ ପ୍ରକଳ୍ପ, ଉଦ୍ୟାନ କୃଷି, ନଳକୂପ ଖନନ, ଚେକ୍ ଡ୍ୟାମ୍ ନିର୍ମାଣ, କମ୍ୟୁନିଟି ସେଣ୍ଟର ପ୍ରତିଷ୍ଠା ଓ ଅନ୍ୟାନ୍ୟ ଯାବତୀୟ ଉନ୍ନୟନମୂଳକ କାର୍ଯ୍ୟକ୍ରମ କରାଯାଉଛି । ମାତ୍ର, ବାସ୍ତବରେ ଏହି



ରଜ ପର୍ବ: ଜୁଆଙ୍ଗ ଯୁବତୀଙ୍କ ଗହଣରେ ଲେଖକ

ସଂସ୍ଥାଟି ଏ ଅଞ୍ଚଳର ବିକାଶ ଦିଗରେ ବିଶେଷ ସହାୟକ ହୋଇପାରିଲା ଭଳି ମନେହୁଏ ନାହିଁ । ଏହି ଅଣୁ ପ୍ରକଳ୍ପଟିର ଅଧୀନରେ ୩୫ଟି ଜୁଆଙ୍ଗ ଗ୍ରାମ ଅନ୍ତର୍ଭୁକ୍ତ । ମାତ୍ର, ଦୁର୍ଭାଗ୍ୟ ଏହି ୩୫ଟି ଜୁଆଙ୍ଗ ଗାଁ ବ୍ୟତୀତ ଏ ଅଞ୍ଚଳରେ ଆହୁରି ଶତାଧିକ ଜୁଆଙ୍ଗ ଗ୍ରାମ ରହିଥିଲେ ମଧ୍ୟ ସେମାନେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅନ୍ତର୍ଭୁକ୍ତ ହୋଇପାରି ନାହାନ୍ତି । ଏହିସବୁ ଜୁଆଙ୍ଗ ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା'ର କୌଣସି ବିକାଶମୂଳକ କାର୍ଯ୍ୟରେ ସାମିଲ୍ ହୋଇ ପାରୁନାହାନ୍ତି । 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ମୋଟ ୬ଟି ଗ୍ରାମ ପଞ୍ଚାୟତ ଯଥା– ବାଂଶପାଳ ବ୍ଲକ୍‌ର ଗୋନାସିକା, ବାର୍ହ୍ମଗଡ, ବାୟାକୁମୁଟିଆ, କୋଡିପଶା, କୁଆଁର, ତଳଚଂପେଇର ମୋଟ ୩୫ଟି ଗ୍ରାମ ଅନ୍ତର୍ଭୁକ୍ତ ହୋଇଛି । ସବୁଠୁ ଦୁର୍ଭାଗ୍ୟର ବିଷୟ, ତଳଚଂପେଇ ଗ୍ରାମ ପଞ୍ଚାୟତର ଗିମୁଳିଘାଟି, ତଳଚଂପେଇ, ଉପରଚଂପେଇ ଆଦି ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ଯାଉଥିବାବେଳେ ତଳଚଂପେଇ ଗ୍ରାମକୁ ଲାଗିକରି ଥିବା ଏକ ଜୁଆଙ୍ଗ ଗ୍ରାମ ଉପରରଡୁଆଁ ଗାଁଟି 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅନ୍ତର୍ଭୁକ୍ତ ହୋଇପାରିନାହିଁ । କେବଳ ଉପରରଡୁଆଁ ନୁହେଁ ବରଂ ଏହିଭଳି ଶତାଧିକ ଜୁଆଙ୍ଗବହୁଳ ଗ୍ରାମ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ରହିପାରିନାହାନ୍ତି । ବାଂଶପାଳ ବ୍ଲକ୍ ବ୍ୟତୀତ ତେଲକୋଇ, ହରିଚନ୍ଦନପୁର ଓ ଘଟଗାଁ ବ୍ଲକ୍‌ରେ ଶହେରୁ ଉର୍ଦ୍ଧ୍ୱ ଜୁଆଙ୍ଗ ଗ୍ରାମ ରହିଛି । ଏହି ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ଆସୁନାହାନ୍ତି । ଏହା ଏକ ବିଚିତ୍ର ବ୍ୟବସ୍ଥା ଭଳି ମନେ ହୁଏନିକି?

ଅପରପକ୍ଷେ, ଯେଉଁସବୁ ଜୁଆଙ୍ଗବହୁଳ ଗ୍ରାମଗୁଡ଼ିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ସାମିଲ୍ ହୋଇଛନ୍ତି ସେହିସବୁ ଗାଁମାନଙ୍କରେ ତଥାକଥିତ ବିକାଶ ନାଁରେ ବ୍ୟାପକ ଅବକ୍ଷୟ ପରିଲକ୍ଷିତ ହୋଇଛି । ସେହିସବୁ ଗାଁମାନଙ୍କରେ କମ୍ୟୁନିଟି ସେଣ୍ଟର ପ୍ରତିଷ୍ଠା ନାମରେ ଜୁଆଙ୍ଗମାନଙ୍କର ମୂଳ ପାରଂପରିକ 'ମଣ୍ଡଘର'ଗୁଡିକ ଧ୍ୱଂସ ପାଇଯାଇଛି । ସେଠାରେ ଗଢିଉଠିଛି ସ୍କୁଲ୍ ଘର ଭଳି କିଛିକିଛି ଆଜବେଷ୍ଟସ ଛାତପକା ଲମ୍ବା ଘର ଯାହାକୁ ଏବେକାର ଯୁବକମାନେ 'କ୍ଲବ୍ ଘର' ବୋଲି କହୁଛନ୍ତି । ସେଠାରେ 'ମଣ୍ଡଘର' ସଂସ୍କୃତିର ଚିହ୍ନବର୍ଣ୍ଣ ଦେଖିବାକୁ ମିଳୁନାହିଁ । ଅପରପକ୍ଷେ, ଯେଉଁସବୁ ଗାଁ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ନାହାନ୍ତି ବରଂ ସେଠାରେ ସେମାନଙ୍କର ପ୍ରାଚୀନ ମଣ୍ଡଘର ଅକ୍ଷତ ଅବସ୍ଥାରେ ସଂରକ୍ଷିତ ରହିଥିବାର ଦେଖା ଯାଉଛି । ଯଦିଓ କିଛି ସ୍ୱେଚ୍ଛାସେବୀ ସଂସ୍ଥା ଜୁଆଙ୍ଗମାନଙ୍କର 'ମଣ୍ଡଘର

ସଂସ୍କୃତି' ପ୍ରତି ବିପଦ ସୃଷ୍ଟି କରିଛନ୍ତି. ସେଥିପ୍ରତି ସରକାର ଦୃଷ୍ଟି ଦେବା ଜରୁରୀ ହୋଇପଡିଛି ।

ପ୍ରାଚୀନ କାଳରୁ ନିଆଁକୁ ସାଇତି ରଖିବାର ପରଂପରା ଶିକ୍ଷା କରିପାରିଥିଲେ ଏହି ପୁରାତନ ବନବାସୀ ଜୁଆଙ୍ଗମାନେ । ଏଣୁ ମଣ୍ଡଘରେ ଜୁଆଙ୍ଗମାନେ ନିୟମିତ କାଠ ଢାଳି ନିଆଁକୁ ବର୍ଷତମାମ୍ ସଂରକ୍ଷଣ କରିଆସୁଥିଲେ । ମାତ୍ର. ଆଜି କୌଣସି ଜୁଆଙ୍ଗ ମଣ୍ଡଘରେ ଅଖଣ୍ଡ ଅଗ୍ନି ଦେଖିବାକୁ ମିଳୁନାହିଁ । ମଣ୍ଡଘରେ ଜଳୁଥିବା କାଠର ପାଉଁଶକୁ ସଂଗ୍ରହ କରି ସେମାନେ ପୋଡୁ ଚାଷରେ ବ୍ୟବହାର ମଧ୍ୟ କରୁଥିଲେ । ଏହି ପୋଡୁଚାଷ ମାଧ୍ୟମରେ ସେମାନଙ୍କ ଜୀବନଜୀବିକା ନିର୍ବାହ ହେଉଥିଲା । ଆଜି ସରକାର ଟଙ୍କାଏରେ କିଲେ ଚାଉଳ. ମାଗଣା ମୋବାଇଲ୍. ମାଗଣା ସାଇକେଲ୍. ମାଗଣା ଔଷଧ. ମାଗଣା ପୁସ୍ତକ. ମାଗଣା ପୋଷାକ. ଗୁଣ୍ଠେଦୁଇଗୁଣ୍ଠ ଜଙ୍ଗଲଜମି ପଟା ଦେଇ ଜୁଆଙ୍ଗମାନଙ୍କୁ ଅଳସୁଆ କରିଦେଇଛନ୍ତି । ଏହା ଫଳରେ ଦିନେ ଜୁଆଙ୍ଗମାନେ ଏ ସମଗ୍ର ବଣମୂଲକର ମାଲିକ ଥିଲେ. ତାହା ସେମାନେ ଭୁଲି ଯାଇଛନ୍ତି ।



ମଣ୍ଡଘରେ ଲେଖକ ଜୁଆଙ୍ଗମାନଙ୍କ ପାରଂପରିକ ଧୂଆଁପତ୍ର ଟାଣିବାର ମଜା ନେଉଛନ୍ତି ।

ଅତୀତରେ ଜୁଆଙ୍ଗମାନଙ୍କ ସାମାଜିକ ଜୀବନ ଖୁବ୍ ସମୃଦ୍ଧ ଥିଲା । ଜୁଆଙ୍ଗମାନଙ୍କ 'ଗ୍ରାମ୍ୟ ସଂଗଠନ' ଖୁବ୍ ଉନ୍ନତମାନର ଥିଲା । ଆଜି କିନ୍ତୁ ଜୁଆଙ୍ଗମାନଙ୍କ ଗ୍ରାମ୍ୟ ପ୍ରାଶାସନିକ ବ୍ୟବସ୍ଥାରେ ବହୁ ପରିବର୍ତ୍ତନ ଘଟିଛି । ଜୁଆଙ୍ଗମାନଙ୍କ ପାରଂପରିକ ଗାଁ ମୁଖିଆ 'ପଧାନ'ଙ୍କ ସ୍ଥାନରେ ଏବେ ପଞ୍ଚାୟତିରାଜ ବ୍ୟବସ୍ଥାରେ ନିର୍ବାଚିତ ଲୋକପ୍ରତିନିଧି ଓ୍ୱାର୍ଡମେମ୍ବରମାନେ ଗାଁର ଭଲମନ୍ଦ ବୁଝୁଛନ୍ତି । ପୂର୍ବେ ପିଢ ସର୍ଦ୍ଦାରମାନେ ଆନ୍ତଃଗ୍ରାମ ବିବାଦର ସମାଧାନ କରୁଥିଲେ । ଗାଁ ଗାଁ ମଧ୍ୟରେ ଲାଗିଥିବା କଳହକୁ ପିଢ ସର୍ଦ୍ଦାରମାନେ ପିଢ ବୈଠକ ଡାକି ଏହାର ଆଶୁ ସମାଧାନ କରିପାରୁଥିଲେ । ମାତ୍ର, ଆଜି ପିଢ ସର୍ଦ୍ଦାରମାନଙ୍କର ପ୍ରାସଙ୍ଗିକତା ଆଉ ଅନୁଭବ କରି ହେଉନାହିଁ । ସେମାନଙ୍କ ସ୍ଥାନ ପଞ୍ଚାୟତର ସରପଞ୍ଚମାନେ ଗ୍ରହଣ କରିଛନ୍ତି । ଅତୀତରେ ନ୍ୟାୟନିଶାପ ପାଇଁ ଆଦୌ ଥାନା, ହାଜତକୁ ଯାଉ ନଥିବା ଜୁଆଙ୍ଗମାନେ ଏବେ ଥାନା, କୋର୍ଟ, କଚେରୀକୁ ଯିବା ଆରଂଭ କଲେଣି । 'ମଣ୍ଡଘର' ଓ 'ବାରଭାଇ' ଉଚିତ୍ ନ୍ୟାୟ ପ୍ରଦାନ କରିପାରିବେ ବୋଲି ଜୁଆଙ୍ଗମାନଙ୍କର ଆଉ ହୃଦ୍‌ବୋଧ ହେଉନି ।

ଅତୀତରେ 'ମଣ୍ଡଘର'ଟିରେ ଗାଁର ସମସ୍ତ ଅବିବାହିତ ଯୁବକ ରାତିରେ ଏକତ୍ର ଶୟନ କରୁଥିଲେ ଏବଂ ଦିନର ଅଧିକାଂଶ ସମୟ ଏହିଠାରେ କାଟୁଥିଲେ । ମଣ୍ଡଘରର କାନ୍ଥରେ ମାଳମାଳ ଚାଙ୍ଗୁ ଟଙ୍ଗା ଯାଉଥିଲା । କାନ୍ଥରେ ଗୟଳ ଓ ସମ୍ବର ଶିଙ୍ଗ ପୋତାଯାଇ କାନ୍ଥକୁ ଆକର୍ଷଣୀୟ କରାଯାଇ ପାରୁଥିଲା । ଯୁବକମାନେ ମଣ୍ଡଘର କାନ୍ଥରୁ ଚାଙ୍ଗୁ ବାହାର କରି ଅବିବାହିତା ଯୁବତୀମାନଙ୍କ ସହିତ ନାଚଗୀତରେ ମସ୍‌ଗୁଲ୍ ହୋଇପଡୁଥିଲେ । ଅବସର ବିନୋଦନ କେନ୍ଦ୍ର ଭାବେ ମଣ୍ଡଘରଟି ଏକ ଅଲଗା ପରିଚୟ ସୃଷ୍ଟି କରିପାରିଥିଲା । ମାତ୍ର ଆଜି ଯୁବକମାନଙ୍କ ପାଇଁ ଏହି ମଣ୍ଡଘରଟି ଏକ ନିରୋଳା ଅବସର ବିନୋଦନ କେନ୍ଦ୍ରର ମାନ୍ୟତା ହରାଇ ସାରିଛି । ଗାଁର ଯୁବକମାନେ ନିଜନିଜ ଘରେ ରେଡ଼ିଓ, ଟିଭି କିମ୍ବା ମୋବାଇଲ୍ ଫୋନ୍ ଏବଂ ଅନ୍ୟାନ୍ୟ ଯାନ୍ତ୍ରିକ ବ୍ୟବସ୍ଥା ସହାୟତାରେ ଆଧୁନିକ ହିନ୍ଦୀ ଚଳଚ୍ଚିତ୍ର ଗୀତ ଓ ମ୍ୟୁଜିକ୍ ଶୁଣି ଦିନ କଟାଇ ଦେଉଛନ୍ତି । ମାତ୍ର ଚାଙ୍ଗୁ ନାଚ, ବିବାହ ଓ ପର୍ବପର୍ବାଣିରେ ବୋଲାଯାଉଥିବା ଗୀତକୁ ସେମାନେ ବିସ୍ମରି ଯାଇଛନ୍ତି । ଏହା ଚିନ୍ତାଜନକ ।

ଅତୀତରେ ମଣ୍ଡଘର ଭାଡ଼ି ଉପରେ ବସ୍ତାବସ୍ତା ଧାନ, ଚାଉଳ, କାଙ୍ଗୁ, ଗଙ୍ଗେଇ, ଜୁଆଣି, ସୁତୁରି ଆଦି ସାଇତା ହୋଇ ରହୁଥିଲା । ଜୁଆଙ୍ଗମାନଙ୍କ



▶ **ମଣ୍ଡଘରେ ଲେଖକ ଜୁଆଙ୍ଗମାନଙ୍କ ପାରଂପରିକ ଧୂଆଁପତ୍ର ଟାଣିବାର ମଜା ନେଉଛନ୍ତି ।**

ଦୁର୍ଦ୍ଦିନରେ ଏହା ଖୁବ୍ ଉପଯୋଗୀ ସାବ୍ୟସ୍ତ ହେଉଥିଲା । ମଣ୍ଡଘରଟିରେ ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର, କୃଷି ଓ ଶିକାର ଉପକରଣ ସାଙ୍ଗକୁ 'ଗାଁ ପାଣ୍ଠି' ମାଧ୍ୟମରେ ପ୍ରଚୁର ପରିମାଣର ଶସ୍ୟ ମହଜୁଦ୍ ହୋଇ ରହୁଥିଲା । ଗାଁ ଲୋକଙ୍କ ଭଲମନ୍ଦ ଓ ବିପଦଆପଦରେ 'ଗାଁ ପାଣ୍ଠି' ବେଶ୍ ସହାୟକ ହୋଇପାରୁଥିଲା । କେବେକେମିତି ବହିରାଗତ ଅତିଥି ଗାଁକୁ ଆସିଲେ ସେମାନଙ୍କୁ ଏହି ମଣ୍ଡଘରେ ହିଁ ଆଶ୍ରୟ ନେବାକୁ ପଡୁଥିଲା ।

ଜୁଆଙ୍ଗମାନେ ବାରମାସରେ ତେର ପର୍ବ ପାଳନ କରିଥା'ନ୍ତି । ନାଚଗୀତ କରି, ପର୍ବପର୍ବାଣି, ଉତ୍ସବ ମନେଇ ଜୀବନକୁ ଉପଭୋଗ କରିବାର କଳା ଜୁଆଙ୍ଗମାନଙ୍କଠାରୁ ଆଉ କିଏ ଅଧିକ ଜାଣନ୍ତି? ତେବେ ମିଛ ଆଧୁନିକତାର ଆଳରେ ଆଜିର ନବ୍ୟ ଜୁଆଙ୍ଗ ଯୁବସମାଜ ପର୍ବପର୍ବାଣିମାନଙ୍କଠାରୁ ଦୂରେଇଯିବା ସେମାନଙ୍କର ସଂସ୍କୃତି ଓ ପରଂପରା ପ୍ରତି ଏକ ପ୍ରକାଣ୍ଡ ଆହ୍ୱାନ ସୃଷ୍ଟି କରିଛି । ଆଜିର ଦିନରେ ବହୁ ପର୍ବପର୍ବାଣି ଜୁଆଙ୍ଗ ସମାଜରୁ ସବୁଦିନ ପାଇଁ ହଜିଯିବାକୁ ବସିଥିବାବେଳେ ଆଉ କିଛି ପର୍ବ ଯଥାତଥା ପାଳନ ହେଉଛି । ଏହି ପର୍ବପର୍ବାଣି

ପାଳନ ବିଧିରେ ଅନେକ ପରିବର୍ତ୍ତନ ମଧ୍ୟ ଦେଖା ଦେଇଛି । ପୂର୍ବକାଳରେ ଜୁଆଙ୍ଗମାନଙ୍କ ଅଧିକାଂଶ ପର୍ବପର୍ବାଣିରେ ମଇଁଷି (ପୋଢ) ବଳି ପଡୁଥିଲା । ଆଜି କିନ୍ତୁ ମଇଁଷି ବଳି ପ୍ରଥା ପ୍ରାୟ ବନ୍ଦ ହୋଇଯାଇଛି କହିଲେ ଠିକ୍ ହେବ । ଅତୀତରେ ଜୁଆଙ୍ଗମାନଙ୍କର ଏକ ନିର୍ଦ୍ଦିଷ୍ଟ ପୂଜା ସମୟରେ ନାଗମ୍ (ପୂଜକ) ନିଜର ଅଙ୍ଗପ୍ରତ୍ୟଙ୍ଗ (ହାତ, ଗୋଡ, ଆଖି, ନାକ କିମ୍ବା କାନ) ମଧ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଦାନ କରୁଥିଲେ । ପୂଜାବେଳେ ଏହି ଅଙ୍ଗଦାନ ଖୁବ୍ ମର୍ମନ୍ତୁଦ ମନେ ହେଉଥିଲେ ମଧ୍ୟ ସେମାନଙ୍କର ଦେବତାଙ୍କ ପ୍ରତି ଥିବା ଗଭୀର ବିଶ୍ୱାସର ସୂଚନା ଦେଇଥାଏ । ପୂର୍ବକାଳରେ ପାଳନ ହେଉଥିବା ପର୍ବପର୍ବାଣି ଓ ସଂପ୍ରତି ପାଳନ କରାଯାଉଥିବା ପର୍ବପର୍ବାଣି ମଧ୍ୟରେ ବହୁତ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି । ବର୍ତ୍ତମାନ ପାଳନ କରାଯାଉଥିବା ପର୍ବପର୍ବାଣିମାନଙ୍କରେ ରୀତି, ନୀତି, ପରଂପରା ଅନେକ ମାତ୍ରାରେ ବ୍ୟାହତ ହୋଇଛି ।

ଏହି ଅଧ୍ୟୟନରେ ଜୁଆଙ୍ଗମାନଙ୍କର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନ ସଂପର୍କରେ ସମ୍ୟକ ଧାରଣା ପ୍ରଦାନ କରାଯାଇଥିବାବେଳେ ସେମାନଙ୍କ ପର୍ବପର୍ବାଣିମାନଙ୍କୁ ନେଇ ଏକ ସବିଶେଷ ବର୍ଣ୍ଣନା ସଂଭବ ହୋଇଛି । ଏହାବ୍ୟତୀତ ସେମାନଙ୍କର ଚିତ୍ରକଳା, ପ୍ରଥା, ପରଂପରା, ସଂସ୍କୃତି, ଧର୍ମଧାରଣା, ଲୋକବିଶ୍ୱାସ, ନାଚଗୀତ, ଢଗଢମାଳି, ପହଳି (ପ୍ରହେଳିକା) ଓ ଅନ୍ୟାନ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ଦିଗ ସଂପର୍କରେ ଏହି ଅଧ୍ୟୟନରେ ଆଲୋକପାତ କରାଯାଇଛି । ଗୁପ୍ତଗଙ୍ଗା ଗ୍ରାମର ଯୁବତୀ ଶାନ୍ତିଲତା ଜୁଆଙ୍ଗ, କୁନ୍ତଳା ଜୁଆଙ୍ଗ, ବାୟାପଣ୍ଡାଦର ଗାଁର ଜାଇ ଜୁଆଙ୍ଗ, କଦଳୀବାଡିର ବାସନ୍ତୀ ଜୁଆଙ୍ଗ, ଏଜୁକେଶନ୍ କଂପ୍ଲେକ୍ସର ଶିକ୍ଷକ ରାମଚନ୍ଦ୍ର ଜୁଆଙ୍ଗ ଏବଂ ବାହ୍ମଗଡ଼ ଗ୍ରାମର ଶ୍ରୀଧର ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ ଆଦିଙ୍କଠାରୁ ଜୁଆଙ୍ଗ ପହଳିଗୁଡିକ ସଂଗ୍ରହ କଲାବେଳର ଅନୁଭୂତି ବେଶ୍ ନିଆରା । ଏହି ପହଳିଗୁଡିକ ସଂଗ୍ରହ କଲାବେଳେ ଏବଂ ତା' ଅର୍ଥ ବୁଝିଲାବେଳେ ସେଇ ଜୁଆଙ୍ଗ ଯୁବକ, ଯୁବତୀମାନେ ହସିହସି ଗଡିଯାଉଥିଲେ ଏବଂ ମୁଁ ବି ସେମାନଙ୍କ ସହ ହସିହସି ବେଦମ୍ ହୋଇଯାଉଥିଲି । ବେଶ୍ ଆନନ୍ଦଦାୟକ ଥିଲା ସେହି ଜୁଆଙ୍ଗ ଯୁବକ, ଯୁବତୀମାନଙ୍କଠାରୁ ପହଳିଗୁଡିକ ସଂଗ୍ରହ କଲାବେଳର ମୁହୂର୍ତ୍ତ । ଇସ୍, ସେ ଅନୁଭୂତିଗୁଡିକ ମୋ' ଭିତରେ ସବୁଦିନ ସାଇତି ହୋଇ ରହନ୍ତା କି?

ଜୁଆଙ୍ଗମାନଙ୍କର ଲୋକସାହିତ୍ୟ ଖୁବ୍ ସମୃଦ୍ଧ । ଆକର୍ଷଣୀୟ ଲୋକଗୀତ, ଲୋକଗପ, ଢଗଢମାଳି ଓ ପହଳି ଜୁଆଙ୍ଗ ଲୋକସାହିତ୍ୟକୁ ଋଦ୍ଧିମନ୍ତ କରିପାରିଛି ।

ଜୁଆଙ୍ଗମାନଙ୍କ ଚିତ୍ରକଳା ଅନ୍ୟ ଆଦିବାସୀ ଚିତ୍ରକଳାଠାରୁ କୌଣସି ଗୁଣରେ କମ୍ ନୁହେଁ । ଜୁଆଙ୍ଗମାନଙ୍କ ପାନିଆ ଗଠନ ଶୈଳୀ ହିଁ ସେମାନଙ୍କ ସମୃଦ୍ଧ ଚିତ୍ରକଳାର ଏକ ଉଜ୍ଜ୍ୱଳ ଉଦାହରଣ । ସେମାନେ କାଠ, ବାଉଁଶ ଏବଂ ଶିଙ୍ଗରେ ନାନା ପ୍ରକାର କଳାତ୍ମକ ପାନିଆ ପ୍ରସ୍ତୁତ କରିଥା'ନ୍ତି । ଜୁଆଙ୍ଗମାନଙ୍କର ଏହି ପାରଂପରିକ ପାନିଆ ରାଜ୍ୟ ତଥା ରାଜ୍ୟ ବାହାରର ବଜାରରେ ଏକ ନିଆରା ଭାଉ ଦାବି କରିଥା'ନ୍ତି । ପାନିଆଗୁଡିକର ଗଠନ ଶୈଳୀକୁ ଲକ୍ଷ୍ୟ କଲେ ଜୁଆଙ୍ଗମାନଙ୍କର କଳାତ୍ମକ ଦିଗ ପ୍ରତି ସଚେତନ ହେବାକୁ ପଡିଥାଏ । ଏହି ପାନିଆଗୁଡିକ ବିଭିନ୍ନ ରୂପରେ ପ୍ରସ୍ତୁତ ହୋଇଥାଏ । କାଠ ବା ବାଉଁଶ ନିର୍ମିତ ଏହି ପାନିଆଗୁଡିକରେ ନାନା ପ୍ରକାର କ୍ଷୁଦ୍ରଚିତ୍ର *(miniature)* ଖୋଦିତ ହୋଇଥାଏ କିମ୍ବା ଅଙ୍କିତ ହୋଇଥାଏ । ଜଙ୍ଗଲକୁ ଶିକାର କରି ଯାଉଥିବା ମଣିଷର ଚିତ୍ର, ଗଧ କିମ୍ବା ପଶୁ ଉପରେ ବସିଥିବା ମଣିଷର ଚିତ୍ର, ଡାଳି, ଲତା, ଛକି, ଠିକିରି, ମଣିଷ, ପଶୁପକ୍ଷୀଙ୍କର ରେଖାଚିତ୍ର ଲୁହାର ତାମ୍ପଣ କିମ୍ବା ଅନ୍ୟାନ୍ୟ ଖୋଦେଇକାରୀ ଯନ୍ତ ଦ୍ୱାରା ଅଙ୍କନ



ଆମ୍ବନୂଆ ପର୍ବ ପାଳନ ଅବସରରେ ଉପରରଡୁଆ ଗ୍ରାମର ଯୁବତୀମାନଙ୍କ ସହ ଲେଖକ

କରାଯାଇଥାଏ । ସୂକ୍ଷ୍ମ ଖୋଦନ କଳା ଏହି ଜୁଆଙ୍ଗମାନଙ୍କୁ ଅନ୍ୟମାନଙ୍କଠାରୁ ଭିନ୍ନ କରିଥାଏ । ସେହିଭଳି ବାଉଁଶ ନିର୍ମିତ 'ବଂଶୀ' ଉପରେ ମଧ୍ୟ ଜୁଆଙ୍ଗମାନେ ନାନା ପ୍ରକାର ଖୋଦନ ଚିତ୍ରକଳାର ସ୍ପର୍ଶ ଦେଇଥାନ୍ତି । ସେମାନେ ମାଟି ହାଣ୍ଡିରେ ନାନା ପ୍ରକାର ଚିତ୍ର ଆଙ୍କିଥାନ୍ତି । କ୍ଷୁଦ୍ର ନାସଦାନିରେ ମଧ୍ୟ ଅନୁରୂପ ଚିତ୍ରକଳା ଦେଖିବାକୁ ମିଳିଥାଏ ।

ଜୁଆଙ୍ଗମାନଙ୍କ ସାଂସ୍କୃତିକ ଜୀବନଧାରା ପ୍ରକୃତି ସହିତ ଓତଃପ୍ରୋତ ଭାବେ ଜଡ଼ିତ । ସେମାନେ ଅରଣ୍ୟ, ବୃକ୍ଷ, ଜଙ୍ଗଲ, ପାହାଡ, ନଦୀ, ଝରଣା, ସୂର୍ଯ୍ୟ, ପୃଥିବୀ ଆଦି ପ୍ରାକୃତିକ ବସ୍ତୁକୁ ଦେବତା ରୂପେ ପୂଜା କରନ୍ତି । ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ସେମାନଙ୍କ ଦେବଦେବୀ ସର୍ବଦା ଅରଣ୍ୟ, ପାହାଡ, ଝରଣା ଓ ନଦୀନାଳରେ ଅବସ୍ଥାନ କରନ୍ତି ।

ଜୁଆଙ୍ଗମାନେ ବାର ମାସରେ ତେର ପର୍ବ ପାଳନ କରିଥାନ୍ତି । 'ପର୍ବପର୍ବାଣି' ସେମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନକୁ ଖୁବ୍ ଋଦ୍ଧିମନ୍ତ କରିଥାଏ । ସଂସ୍କୃତ ଶବ୍ଦ 'ପବମ୍' ଅପଭ୍ରଂଶ ହୋଇ କାଳକ୍ରମେ ଓଡ଼ିଆ ଶବ୍ଦ 'ପର୍ବ' ସୃଷ୍ଟି ହୋଇଛି । ସେହିପରି 'ପବମ୍' ଶବ୍ଦରୁ ଜୁଆଙ୍ଗମାନଙ୍କ 'ଅବ' ଶବ୍ଦଟି ମଧ୍ୟ ସୃଷ୍ଟି ହୋଇଥାଇପାରେ ବୋଲି ଅନେକ ମତବ୍ୟକ୍ତ କରନ୍ତି । ଜୁଆଙ୍ଗମାନେ 'ପର୍ବ'କୁ ତାଙ୍କ ନିଜ ଭାଷାରେ 'ଅବ' ବୋଲି କହିଥା'ନ୍ତି । ଶ୍ରଦ୍ଧା, ଆନନ୍ଦ ଓ ଭକ୍ତି ଭାବନା ଜାଗ୍ରତ କରାଇବା ଏହି ପର୍ବପର୍ବାଣିମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବାବେଳେ ଜୁଆଙ୍ଗମାନଙ୍କର ସାମାଜିକ, ସାଂସ୍କୃତିକ ଓ ଗୋଷ୍ଠୀ ଜୀବନ ଏହା ମାଧ୍ୟମରେ ଅଧିକ ବଳିଷ୍ଠ ହୋଇଥାଏ । ଜୁଆଙ୍ଗମାନଙ୍କର ଏହିସବୁ ପର୍ବପର୍ବାଣି କେବେଠାରୁ ପାଳିତ ହୋଇଆସୁଛି ତାହାର ନିର୍ଦ୍ଦିଷ୍ଟ କିଛି ଅତୀତ ନଥିଲେ ମଧ୍ୟ ସେମାନେ ବୈତରଣୀ ନଦୀର ଉପତ୍ତି ସ୍ଥଳ ଗୋନାସିକା ଅଞ୍ଚଳରେ ବସତି ସ୍ଥାପନ କରିବା ଦିନଠୁଁ ଏହିସବୁ ପର୍ବ ପାଳିତ ହୋଇ ଆସୁଛି ବୋଲି କୁହାଯାଇପାରେ ।

ଧାର୍ମିକ-ସାମାଜିକ-ସାଂସ୍କୃତିକ ପୃଷ୍ଠଭୂମିରେ ପର୍ବପର୍ବାଣି, ଯାନିଯାତରା ଏବଂ ଓଷାବ୍ରତର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପର୍ବପର୍ବାଣିରେ ଜୁଆଙ୍ଗମାନଙ୍କର ସୁଖଦୁଃଖ, ହସକାନ୍ଦ, ଆଶାନିରାଶା ପ୍ରତିଫଳିତ ହୋଇଥାଏ । ମନର ଦୁଃଖକୁ ଲାଘବ କରିବା ପାଇଁ, ଯନ୍ତ୍ରଣାରୁ ମୁକ୍ତି ପାଇଁ ଜୁଆଙ୍ଗମାନେ ପର୍ବପର୍ବାଣିର ଆୟୋଜନ କରିଥା'ନ୍ତି । ପର୍ବପର୍ବାଣି, ଓଷାବ୍ରତ ଜୁଆଙ୍ଗ ସଂସ୍କୃତି ଓ ପରଂପରାକୁ ଅଧିକ ସମୃଦ୍ଧ କରିଥାଏ । ଏହା ମାଧ୍ୟମରେ ଜନଜୀବନର ଚାଲିଚଳଣି, ରୀତିନୀତି,



▶ ଜୁଆଙ୍ଗମାନଙ୍କ ଗହଣରେ ମଣ୍ଡଘରେ ଲେଖକ

ବିଶ୍ୱାସର ବାସ୍ତବ ପ୍ରତିଫଳନ ଘଟିଥାଏ । ଜୁଆଙ୍ଗମାନେ ସେମାନଙ୍କର ନିଜ ଘର, ବାଡି, ଗାଁ, ଫସଲ, ଗୃହପାଳିତ ପଶୁ, ପକ୍ଷୀ, ଚାଷଜମି, ତଇଳାର ସୁରକ୍ଷା ନିମନ୍ତେ ଏବଂ ନିଜ ପିଲାମାନଙ୍କୁ ରୋଗବଇରାଗ କବଳରୁ ମୁକ୍ତ କରିବା ତଥା ଭଲ ଫସଲ ହେବା ଉଦ୍ଦେଶ୍ୟରେ ନାନା ପ୍ରକାର ପର୍ବପର୍ବାଣିର ଆୟୋଜନ କରିଥା'ନ୍ତି । ଜୁଆଙ୍ଗ ସମାଜରେ ଅନେକ ପର୍ବପର୍ବାଣି ରହିଛି । ସେଥିମଧ୍ୟରୁ ଅଧିକାଂଶ ଶାସ୍ତ୍ରସମ୍ମତ ଏବଂ ଏହା ଜୁଆଙ୍ଗମାନଙ୍କ ଧର୍ମବିଶ୍ୱାସକୁ ଅଧିକ ଉଜ୍ଜୀବିତ କରିଥାଏ । ଜୁଆଙ୍ଗ ସମାଜରେ ଏହି ପର୍ବଗୁଡିକ ବ୍ୟାପକ ଭାବେ ଏବଂ ବିଧିମୁତାବକ ପାଳିତ ହୋଇଥାଏ । ଜୁଆଙ୍ଗମାନଙ୍କ ଧର୍ମଭାବନା ଭିତରକୁ ଏହି ପର୍ବପର୍ବାଣିଗୁଡିକ ଗଭୀର ଭାବେ ପ୍ରବେଶ କରିଛି । ଏହି ପର୍ବଗୁଡିକ ନିହାତି ପାଳନ କରାଯିବ ଏବଂ ପାଳନ କରା ନଗଲେ ଦେବଦେବୀ କୋପ କରିବେ ବୋଲି ଜୁଆଙ୍ଗମାନଙ୍କ ମଧ୍ୟରେ ଗଭୀର ବିଶ୍ୱାସ ରହିଛି । ଜୁଆଙ୍ଗମାନଙ୍କ ପର୍ବପର୍ବାଣିଗୁଡିକୁ ମୁଖ୍ୟତଃ ୬ ଭାଗରେ ବିଭକ୍ତ କରାଯାଇପାରେ-

୧. କୃଷିଭିତ୍ତିକ ପର୍ବ

୨. ପାରଂପରିକ ପର୍ବ

୩. ସାମାଜିକ ପର୍ବ

୪. ଶିକାରଭିତ୍ତିକ ପର୍ବ

୫. ରୋଗ ନିରାକରଣଭିତ୍ତିକ ପର୍ବ

୬. ଗ୍ରାମ ସଂସ୍କାର ପର୍ବ

ବର୍ଷର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ସମୟରେ ଜୁଆଙ୍ଗ ଗାଁରେ କିଛି ନା କିଛି ପର୍ବ ପାଳିତ ହୋଇଥାଏ । ଜୁଆଙ୍ଗମାନେ ମୁଖ୍ୟତଃ କୃଷି, ଶିକାର ଓ ପଶୁପାଳନକୁ ଭିତ୍ତି କରି ସେମାନଙ୍କ ଜୀବିକା ନିର୍ବାହ କରିଥା'ନ୍ତି । ଏଣୁ ସେମାନଙ୍କର ଅଧିକାଂଶ ପର୍ବପର୍ବାଣି କୃଷିଭିତ୍ତିକ ହୋଇଥାଏ । 'ତଇଳା' (ପାହାଡିଆ ଉଚ୍ଚ ଚାଷ ଜମି)ରେ ଭଲ ଫସଲ ହେଉ କି ଫସଲର ସୁରକ୍ଷା ପାଇଁ ସେମାନେ ନାନା ପ୍ରକାର ପର୍ବ ପାଳନ କରିଥା'ନ୍ତି । ସେହିଭଳି ସେମାନଙ୍କ ଗୃହପାଳିତ ପଶୁପକ୍ଷୀଙ୍କ ସୁରକ୍ଷା ଏବଂ ନିଜ ସନ୍ତାନସନ୍ତତିଙ୍କ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନ କାମନା ଉଦ୍ଦେଶ୍ୟରେ ନାନା ପର୍ବ ପାଳିତ ହୋଇଥାଏ । ବର୍ଷକରେ ଥରେ ଜୁଆଙ୍ଗମାନେ ନିଜ ଗ୍ରାମକୁ ସଂସ୍କାର କରିଥାନ୍ତି । ଏହି ଉଦ୍ଦେଶ୍ୟରେ ପିତୃପୁରୁଷ ଏବଂ ଅସନ୍ତୁଷ୍ଟ ପୂର୍ବପୁରୁଷଙ୍କ ଆତ୍ମାଙ୍କୁ ମଦ ଓ କୁକୁଡା ଦେଇ ସନ୍ତୁଷ୍ଟ କରାଯାଇଥାଏ । ପୂର୍ବେ ପ୍ରତ୍ୟେକ ଜୁଆଙ୍ଗ 'ଅଖାଣି ପର୍ବ' (ଶିକାର ଯାତ୍ରା)ଟିକୁ ଧୂମ୍‌ଧାମ୍‌ରେ ପାଳନ କରୁଥିଲେ । ଜଙ୍ଗଲରୁ ଭଲ ଶିକାର ମିଳିବା ଏବଂ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲକୁ ଯାଉଥିବାରୁ ସେଠାରେ ନିଜର ସୁରକ୍ଷା ଉଦ୍ଦେଶ୍ୟରେ ଏହି ଶିକାର ପର୍ବ ପାଳିତ ହେଉଥିଲା । ଜୁଆଙ୍ଗମାନେ ନିଜ ବାଡିବଗିଚା ଓ ତଇଳାରେ ଚାଷ କରିଥିବା ପ୍ରତ୍ୟକ ଶସ୍ୟ, ପନିପରିବା ଓ ଫଳମୂଳକୁ ନୂଆକରି ଖାଇଥାନ୍ତି । ପ୍ରତ୍ୟକ ଶସ୍ୟ, ଫଳ, ପନିପରିବାକୁ ସେମାନେ ପ୍ରଥମେ ନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିବା ପରେ ନିଜେ ଭକ୍ଷଣ କରିଥା'ନ୍ତି । ଏହି କ୍ରମରେ ସେମାନେ ଧାନ ନୂଆଖିଆ, ଆମ୍ବ ନୂଆଖିଆ, ରୁମା ନୂଆଖିଆ, ଶାଗ ନୂଆଖିଆ, କୁସୁମ ନୂଆଖିଆ ଭଳି ଅନେକ ପର୍ବପର୍ବାଣି ପାଳନ କରିଥା'ନ୍ତି । ଜୁଆଙ୍ଗମାନେ ବସବାସ କରୁଥିବା ନିଜ ଗ୍ରାମ, ତଇଳା ଓ ସର୍ବୋପରି ନିଜ ପିଢର ସୁରକ୍ଷା ନିମନ୍ତେ 'ପିଢ ପୂଜା'ର ଆୟୋଜନ କରିଥା'ନ୍ତି । 'ପିଢପୂଜା'ଟି ତନ୍ତ୍ରମତେ ଅନୁଷ୍ଠିତ ହୋଇଥାଏ । ଗ୍ରାମର ଗୁଣିଆ (ରାଉଳିଆ) ଦ୍ୱାରା ଏହି ପୂଜା ପାଳିତ ହୋଇଥାଏ । ଏହାବ୍ୟତୀତ ଜୁଆଙ୍ଗମାନେ ମକର ପର୍ବ, ରଜପର୍ବ,

ଗହ୍ମାପୂର୍ଣ୍ଣିମା, ରକ୍ଷାବନ୍ଧନ ଉତ୍ସବ, ଲକ୍ଷ୍ମୀପୂଜା, ବିଷୁବ ସଂକ୍ରାନ୍ତି, ମହାଶିବରାତ୍ରୀ ଭଳି ଅନେକ ପର୍ବପର୍ବାଣି ପାଳନ କରିଥାନ୍ତି ।

ଡିସେମ୍ବର-ଜାନୁୟାରୀ ମାସରେ ଜୁଆଙ୍ଗମାନେ **ପୁଷ୍ ପୁନେଇଁ (ମାଘ ପୋଡି)** ପର୍ବ ପାଳନ କରୁଥିବାବେଳେ ମାର୍ଚ୍ଚ-ଏପ୍ରିଲ ମାସ ବେଳକୁ **'ଆମ୍ ନୂଆଖିଆ'** ପର୍ବ ପାଳିତ ହୋଇଥାଏ । ସେହିଭଳି ଏପ୍ରିଲ୍-ମେ ମାସ ବେଳକୁ ଜୁଆଙ୍ଗମାନେ **ଶିକାରଯାତ୍ରା (ଅଖାଣିପର୍ବ)** ପାଳନ କରୁଥିବାବେଳେ ମେ ମାସରେ ସେମାନେ **ତିର୍ତିୟା (ଅକ୍ଷୟ ତୃତୀୟା)** ବା ମଞ୍ଜି ବୁଣା ପର୍ବ ପାଳନ କରିଥାନ୍ତି । ପ୍ରତିବର୍ଷ ଜୁନ୍ ମାସ ବେଳକୁ ଜୁଆଙ୍ଗମାନେ **ରଜ ପର୍ବ**କୁ ବେଶ୍ ଧୁମ୍‌ଧାମ୍‌ରେ ପାଳନ କରିଥାନ୍ତି । ଜୁନ୍-ଜୁଲାଇ ମାସ ବେଳକୁ ଜୁଆଙ୍ଗମାନେ **'ଅଷାଢୀ ପର୍ବ'** ବା **'ବାଙ୍ଗୁର୍ ଅବ' (କୁସୁମ ନୂଆଖିଆ)** ପାଳନ କରୁଥିବାବେଳେ ଜୁଲାଇ-ଅଗଷ୍ଟ ମାସରେ **'ପିଢପୂଜା'** ଓ **ଗହ୍ମାପୂର୍ଣ୍ଣିମା** ଭଳି ପର୍ବ ପାଳନ କରିଥାନ୍ତି । ଭଲ ଫସଲ ଏବଂ ଡଙ୍ଗରର ସୁରକ୍ଷା ପାଇଁ ଜୁଆଙ୍ଗମାନେ ପ୍ରତିବର୍ଷ **'ପିଢ ପୂଜା'** କରିଥା'ନ୍ତି । ଅଗଷ୍ଟ-ସେପ୍ଟେମ୍ବର ମାସରେ ଜୁଆଙ୍ଗମାନେ **'ଧାନ ନୂଆଖିଆ'** ଏବଂ ପରେପରେ **'ଗୁମା ପର୍ବ'** ପାଳନ



▶ **ଜୁଆଙ୍ଗମାନଙ୍କ ଗହଣରେ ମଣ୍ଡଘରେ ଲେଖକ**

କରିଥା'ନ୍ତି । ତଇଳାରେ ଅମଳ ହେଉଥିବା ପ୍ରତ୍ୟକ ଖାଦ୍ୟଶସ୍ୟକୁ ନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିବା ପରେ ଯାଇ ଜୁଆଙ୍ଗମାନେ ଖାଇବା ଆରଂଭ କରନ୍ତି । ଏହାକୁ 'ନୂଆଖିଆ' କହନ୍ତି । ଡିସେମ୍ବର-ଜାନୁୟାରୀ ମାସବେଳକୁ ଜୁଆଙ୍ଗମାନେ **'ଗୁଣ୍ଡଦିଆ ପର୍ବ'** ଓ **ଗୁରୁବାର ଓଷା** ପାଳନ କରନ୍ତି । ଏହା ବ୍ୟତୀତ ଜୁଆଙ୍ଗମାନେ ବର୍ଷର ଅନ୍ୟାନ୍ୟ ସମୟରେ ବହୁ ପର୍ବ ପାଳନ କରନ୍ତି । ଜୁଆଙ୍ଗମାନେ ଅକ୍ଟୋବର ମାସ ବେଳକୁ **ଦଶହରା ପୂଜା** ପାଳନ ଅବସରରେ ଶାରଦୀୟ ଦେବୀ ଦୂର୍ଗାଙ୍କୁ ଆବାହନ କରିଥା'ନ୍ତି । ସେହିଭଳି ଜୁଆଙ୍ଗମାନେ ଜାନୁୟାରୀ ମାସରେ **ମକର ପର୍ବ** ମଧ୍ୟ ପାଳନ କରିଥା'ନ୍ତି । ଏବେଏବେ ଜୁଆଙ୍ଗମାନେ ବହୁ ହିନ୍ଦୁ ଦେବଦେବୀମାନଙ୍କୁ ପୂଜା ଆରଂଭ କଲେଣି । ସେମାନେ ଲକ୍ଷ୍ମୀ, ସରସ୍ୱତୀ, ଗଣେଷ, କାର୍ତ୍ତୀକେୟ, ଶିବ, ବିଷ୍ଣୁଙ୍କ ଭଳି ବହୁ ହିନ୍ଦୁ ଦେବଦେବୀଙ୍କୁ ପୂଜା କରୁଥିବାର ଦେଖାଯାଏ ।

ଗାଁକୁ ବିପଦଆପଦ ପଡିବା ସୂଚନା ମିଳିଲେ ଜୁଆଙ୍ଗମାନେ ସ୍ୱର୍ଗୀୟ ବସ୍ତୁମାନଙ୍କୁ ପୂଜା କରିଥା'ନ୍ତି । **ଧରମ୍ ଦେବତା** (ସୂର୍ଯ୍ୟ) ହେଉଛନ୍ତି ଜୁଆଙ୍ଗମାନଙ୍କର ଅଗ୍ରପୂଜ୍ୟ ଦେବତା । ଜୁଆଙ୍ଗମାନେ ନାନା ପ୍ରକାର ଗ୍ରହପୂଜା ସାଙ୍ଗକୁ ନଦୀ, ଝରଣା, ପାହାଡ ଓ ଜଙ୍ଗଲ ଦେବଦେବୀଙ୍କର ଉପାସନା କରିଥା'ନ୍ତି । **ବସୁମତିମାତା** (ପୃଥିବୀ ମାତା) *(earth goddess)* ହେଉଛନ୍ତି ଜୁଆଙ୍ଗ ପୂଜିତ ଅନ୍ୟ ପ୍ରମୁଖ ଦେବୀ । ବସୁମତିମାତା ଧରମ୍ ଦେବତାଙ୍କ ପତ୍ନୀ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଧରମ୍ ଦେବତା ଓ ବସୁମତି ମାତାଙ୍କୁ ପ୍ରାର୍ଥନା ନ କରି ଜୁଆଙ୍ଗମାନେ କୌଣସି ଶୁଭ କାର୍ଯ୍ୟ ଆରଂଭ କରିପାରନ୍ତି ନାହିଁ । ପ୍ରତି ଜୁଆଙ୍ଗ ଗାଁରେ ଜଣେ ଗ୍ରାମ ଦେବୀ ପୂଜା ପାଇଥାନ୍ତି, ସେମାନଙ୍କୁ 'ଗ୍ରାମଶିରି' *(village deity)* କୁହାଯାଇଥାଏ । ଗାଁ ମୁଣ୍ଡରେ କିମ୍ବା ଗ୍ରାମ ମଧ୍ୟ ଭାଗରେ ମଜାଙ୍ଗ ସମ୍ମୁଖରେ ଏକ ଗଛମୂଳରେ ଲମ୍ବା ଓ ମୁନିଆ ପଥରରେ ଗ୍ରାମଶିରିଙ୍କ ପ୍ରତିମା କଳ୍ପିତ ହୋଇଥାଏ । ସାଧାରଣତଃ, ଗାଁର **ମଜାଙ୍ଗ** ବା **ମଣ୍ଡଘର** *(Juang youth dormitory)* ସମ୍ମୁଖରେ ଗ୍ରାମଶିରି ପୂଜିତ ହୋଇଥାନ୍ତି । ଗ୍ରାମଶିରି ହେଉଛନ୍ତି ଜୁଆଙ୍ଗମାନଙ୍କ ଗ୍ରାମଦେବୀ ଏବଂ ସେ ଜୁଆଙ୍ଗମାନଙ୍କୁ ସକଳ ବିପଦଆପଦ ଏବଂ ରୋଗବଇରାଗରୁ ରକ୍ଷା କରିଥାନ୍ତି ।ଗାଁର ଆଉ ଜଣେ ପ୍ରମୁଖ ଦେବତା ହେଉଛନ୍ତି **ଥାନପତି** *(village deity)*। ଥାନପତି ଗାଁ ସନ୍ନିକଟ ପାହାଡରେ ପୂଜା



▶ **ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ଗହଣରେ ମଣ୍ଡଘରେ ସାମ୍ନା ସଦର ଦାଣ୍ଡରେ ଚାଙ୍ଗୁ ନୃତ୍ୟରେ ମଗ୍ନ ଲେଖକ**

ପାଇଥାନ୍ତି । ଥାନପତିଙ୍କର କୌଣସି କଳ୍ପିତ ମୂର୍ତ୍ତି ନଥାଏ । ବିଭିନ୍ନ ଗ୍ରାମର ଥାନପତିଙ୍କ ନାମ ଭିନ୍ନ ହୋଇଥାଏ । **ଭୀମାବଡ଼ମା** ଏବଂ **କମ୍ପୁରୀ (କାମ୍ପୁଣୀ)** ହେଉଛନ୍ତି ଅନ୍ୟ ଦୁଇ ଗ୍ରାମ୍ୟ ଦେବଦେବୀ । ଏମାନେ ହେଉଛନ୍ତି 'ଚାଙ୍ଗୁ ଦେବଦେବୀ' ଏବଂ ଯୁବକମାନଙ୍କ ଦ୍ୱାରା ମଜାଙ୍ଗରେ ପୂଜା ପାଇଥାନ୍ତି । ଭୀମାବଡ଼ମା ଏବଂ କମ୍ପୁରୀ ହେଉଛନ୍ତି ସଂପର୍କରେ ପତି-ପତ୍ନୀ । ଏହି ଦୁଇ ଦେବଦେବୀଙ୍କ ଆତ୍ମା ଚାଙ୍ଗୁ ମଧ୍ୟରେ ଥାଆନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଆମ୍ବ ନୂଆଖିଆ ପର୍ବ ସମୟରେ ଅବିବାହିତ ଜୁଆଙ୍ଗ କଙ୍ଗେର୍, ସେଲାନ୍ (ଯୁବକ, ଯୁବତୀ)ମାନେ ଏହି ଦେବଦେବୀଙ୍କୁ ପୂଜା କରିଥାନ୍ତି । ଭୀମାବଡ଼ମା ଏବଂ କମ୍ପୁରୀ ଠାକୁର ଠାକୁରାଣୀ ଅବିବାହିତ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କର ସ୍ୱାସ୍ଥ୍ୟର ସୁରକ୍ଷା କରିଥା'ନ୍ତି । ଜୁଆଙ୍ଗଙ୍କ ବାଦ୍ୟ **'ଚାଙ୍ଗୁ'**ରୁ ଉତ୍ତମ ଶବ୍ଦ ନିର୍ଗତ ହେବାରେ ଏହି ଦୁଇ ଠାକୁର ଠାକୁରାଣୀ ସହାୟକ ହୋଇଥା'ନ୍ତି । ଯଦି କୌଣସି କାରଣରୁ **ଭୀମାବଡ଼ମା** ଏବଂ **କମ୍ପୁରୀ** ଠାକୁର ଠାକୁରାଣୀ କୋପ କରିଥା'ନ୍ତି ତେବେ ଚାଙ୍ଗୁରୁ ଭଲ ଶବ୍ଦ ବାହାରି ନଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଯେତେ

ଜୋର୍‌ରେ ଚାଙ୍ଗୁ ପିଟିଲେ ମଧ୍ୟ ଶବ୍ଦ ନିର୍ଗତ ହୋଇନଥାଏ । ବିବାହ ଉତ୍ସବ ସମୟରେ ଚାଙ୍ଗୁ ନୃତ୍ୟ ଓ ଗୀତ ପ୍ରତିଯୋଗିତାବେଳେ ଗାଁର କଙ୍ଗେର୍, ସେଲାନ୍‌ମାନେ ଏହି ଦେବଦେବୀଙ୍କୁ ପୂଜା କରିବା ସହିତ କୁକୁଡା ଭୋଗ ଲାଗି କରିଥା'ନ୍ତି । ଏହି ଦେବତା ଓ ଦେବୀଙ୍କୁ ସନ୍ତୁଷ୍ଟ କରିପାରିଲେ ଚାଙ୍ଗୁ ନୃତ୍ୟଗୀତରେ ସଫଳତା ମିଳେ ଏବଂ ଯୁବକ, ଯୁବତୀଙ୍କୁ କୌଣସି ରୋଗବଇରାଗ ହୁଏନାହିଁ ।

ଜୁଆଙ୍ଗମାନଙ୍କ ବିଶ୍ୱାସ, ସେମାନଙ୍କ ଦେବଦେବୀମାନେ ନିକଟସ୍ଥ ପାହାଡ, ଜଙ୍ଗଲ, ନଦୀ ଝରଣାରେ ଅବସ୍ଥାପିତ ହୋଇଥାନ୍ତି । ଜୁଆଙ୍ଗ ପିଢ ଅଞ୍ଚଳରେ ଥିବା ମାଲ୍ୟଗିରି, ଗନ୍ଧମାର୍ଦ୍ଦନ, ଭୀମଗିରି, ଗୁପ୍ତଗଙ୍ଗା, ରାମଗିରି ଆଦି ପାହାଡପର୍ବତରେ ସେମାନଙ୍କ ଠାକୁର, ଠାକୁରାଣୀମାନେ ବାସ କରନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେହିଭଳି ସ୍ଥାନୀୟ ଜଙ୍ଗଲ ଓ ପାହାଡର ନାମାନୁସାରେ ଜୁଆଙ୍ଗମାନଙ୍କ ବହୁ ଦେବଦେବୀ ପୂଜା ପାଇଆସୁଛନ୍ତି । ସାଧାରଣତଃ, ଏହିସବୁ ଦେବଦେବୀଙ୍କ ନାମ ସହିତ **'ପାଟ'** ଶବ୍ଦଟି ସଂଲଗ୍ନ ହୋଇଥାଏ । ଏହିସବୁ ନଦୀ ଓ ପାହାଡର ଦେବଦେବୀମାନେ ହେଲେ ଗୁଟିପାଟ, ରଙ୍ଗାପାଟ, କଳାପାଟ, ବୈତରଣୀପାଟ, କୁଟେଇଶୁଣି, କେନ୍ଦେଇଶୁଣି, ନୂଆ ଠାକୁରାଣୀ, ଦୁଆରଶୁଣୀ, ବାଉଁଶତଳିଆ, ଗଂଗାପାଟ, ବିଷ୍ଣୁପାଟ, ସାରୁପାଟ, ମୁଚୁରି ଠାକୁରାଣୀ, କଟା ମୁଣ୍ଡିଆ ଠାକୁରାଣୀ, ବନ୍ଦିରିମୂଳିଆ ପ୍ରମୁଖ । ଜୁଆଙ୍ଗମାନଙ୍କ ମଧ୍ୟରେ ଆଉ ଏକ ବିଶ୍ୱାସ ରହିଛି, ନଦୀ ଦେବଦେବୀମାନେ *(river deities)* ସେମାନଙ୍କୁ ବିପଦ ଆପଦରେ ଉଦ୍ଧାର କରୁଥିବାବେଳେ ଝରଣା ଠାକୁର, ଠାକୁରାଣୀ *(spring deities)* ସେମାନଙ୍କୁ ସବୁବେଳେ ବିପଦରେ ପକେଇଥାନ୍ତି । ପର୍ବପର୍ବାଣିରେ ଜୁଆଙ୍ଗମାନଙ୍କ ପୂଜା ସାମଗ୍ରୀ ମଧ୍ୟରେ ଅରୁଆ ଚାଉଳ, ଧାନ, ଫୁଲ, ହଳଦି, ସିନ୍ଦୁର, ଧୂପ, ଦୀପ, ଦୁଧ ଓ ଗୁଡ ଆଦି ବ୍ୟବହୃତ ହୋଇଥାଏ ।

କେନ୍ଦୁଝରରେ ମୋର ରହଣୀକାଳ ମଧ୍ୟରେ ଦୀର୍ଘ ଚାରିବର୍ଷରୁ ଊର୍ଦ୍ଧ୍ୱ ସମୟ ମୁଁ ଜୁଆଙ୍ଗମାନଙ୍କ ସହ ବିତେଇବାର ସୌଭାଗ୍ୟ ଲାଭକରିପାରିଛି । ଅନେକ ଶୀତୁଆ ରାତି ଓ କାକରଭିଜା ସକାଳ ମୁଁ ଜୁଆଙ୍ଗ ଗାଁରେ କଟେଇଛି । ଝିପିଝିପି ବର୍ଷାରେ ଜୁଆଙ୍ଗମାନଙ୍କ ସହ ତଇଳାରେ ଭିଜିଛି ଏବଂ ସେମାନଙ୍କ ଚାଷବାସ କିପରି ଚାଲିଛି ତାହା ଅନୁଧ୍ୟାନ କରିଛି । ଆମ୍ବ ନୂଆ ପର୍ବରେ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ସହ ହାତରେ ଚାଙ୍ଗୁ ଧରି ନାଚିଛି, ଗୀତ ଗାଇଛି ଓ ହସଖୁସି କରିଛି । ଶୀତୁଆ ହାତଥରା ସକାଳରେ ଜୁଆଙ୍ଗମାନଙ୍କ ସହ ମଣ୍ଡଘରେ ବସି

ଧୂଆଁପତ୍ର ଟାଣିଛି ଓ ପର୍ବପର୍ବାଣିରେ ସେମାନଙ୍କ 'ଜୁରିପକା' (ସମୂହ ମଦ୍ୟପାନ) କାର୍ଯ୍ୟକ୍ରମରେ ସାମିଲ୍ ହୋଇଛି । ମହୁଲି ପିଇଛି, ମାତାଲ୍ ହୋଇଛି । ସର୍ବୋପରି ଜୁଆଙ୍ଗମାନଙ୍କୁ ନେଇ ମୁଁ ଅନେକ ବିରଳ ଅନୁଭୂତି ହାସଲ କରିଛି । ଏହି ଅନୁଭୂତିଗୁଡିକ ହିଁ ମୋର ଏକାନ୍ତ ଓ ନିଜସ୍ୱ ।

ଏହି ଗବେଷଣା ଗ୍ରନ୍ଥଟି ପ୍ରକାଶ ପାଇବା ଅବସରରେ ପ୍ରଥମେ ମୁଁ ମୋ' ପତ୍ନୀ ପ୍ରଜ୍ଞାଙ୍କ ନିକଟରେ ଋଣୀ ରହିବି । କାରଣ ଜୁଆଙ୍ଗମାନଙ୍କୁ ନେଇ ଦେଖାଦେଇଥିବା ମୋ'ର ସମସ୍ତ ପାଗଳାମୀକୁ ସେ ନିରବରେ ବରଦାସ୍ତ ଓ ସମର୍ଥନ କରିଛନ୍ତି । 'ସମ୍ବାଦ'ର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକ ମହୋଦୟ ମୋତେ 'ସମ୍ବାଦ'ର କେନ୍ଦୁଝର ବ୍ୟୁରୋ ମୁଖ୍ୟ ଭାବେ କାର୍ଯ୍ୟ କରିବାର ସୁଯୋଗ ପ୍ରଦାନ କରିଥିବାରୁ ମୁଁ ଜୁଆଙ୍ଗମାନଙ୍କ ସଂପର୍କରେ ବିଶେଷ ଅଭିଜ୍ଞତା ହାସଲ କରିପାରିଛି । ଏଣୁ ଶ୍ରୀ ପଟ୍ଟନାୟକଙ୍କ ନିକଟରେ ମୁଁ ବିଶେଷ କୃତଜ୍ଞ । ଏହି ପାଣ୍ଡୁଲିପିଟି ସଂପୂର୍ଣ୍ଣ ପ୍ରସ୍ତୁତ ହୋଇ ସାରିଲାପରେ ମୁଁ ଏହାକୁ ବରିଷ୍ଠ ଜନଜାତି ଗବେଷକ ପ୍ରଫେସର କୃଷ୍ଣ କୁମାର ମହାନ୍ତିଙ୍କୁ ଦେଖାଇଥିଲି । ପ୍ରଫେସର ମହାନ୍ତି



➢ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ଗହଣରେ ମଣ୍ଡଘରେ ସାମ୍ନା ସଦର ଦାଣ୍ଡରେ ଚାଙ୍ଗୁ ନୃତ୍ୟରେ ମଗ୍ନ ଲେଖକ

ବନ୍ଧୁ ଶ୍ରମ ଶ୍ରାଦ୍ଧ କରି ପୁସ୍ତକଟିର ତ୍ରୁଟିଶୂନ୍ୟତା ଉପରେ ଧ୍ୟାନ ଦେଇଥିବାରୁ ତାଙ୍କ ନିକଟରେ ମୁଁ ଋଣୀ । ଏହି କାମଟି ପାଇଁ ଅନ୍ୟମାନଙ୍କ ମଧ୍ୟରେ ଭୁବନେଶ୍ୱରସ୍ଥିତ ତଫସିଲଭୁକ୍ତ ଜାତି, ଜନଜାତି ଗବେଷଣା ପ୍ରଶିକ୍ଷଣ ପ୍ରତିଷ୍ଠାନର ଲାଇବ୍ରେରିଆନ୍ ଓ ଗବେଷଣା ସଂକ୍ରାନ୍ତ ପରାମର୍ଶଦାତା ମୋହିତ୍ କୁମାର ସାମନ୍ତରାୟ, ସାମ୍ବାଦିକ ବନ୍ଧୁ ପ୍ରଦୀପ ମହାନ୍ତି (ମାନୁ), 'କେନ୍ଦୁଝର ନାଗରିକ ମଞ୍ଚ'ର ସଭାପତି କିରଣ ଶଂକର ସାହୁ, ଓଡ଼ିଆ ଭାଷା ସାହିତ୍ୟର ବିଶିଷ୍ଟ ଗବେଷକ ପ୍ରଫେସର ଡ. ବାଉରୀବନ୍ଧୁ କର, ଓଡ଼ିଆ ଗଦ୍ୟ ସାହିତ୍ୟର ଅନ୍ୟତମ ବିଦ୍ଧାଣୀ ଡ. ବିଜୟାନନ୍ଦ ସିଂ, ଲୋକପ୍ରିୟ ସାହିତ୍ୟ ପତ୍ରିକା 'ପଶ୍ଚିମା'ର ସଂପାଦକ ତଥା ବଡ଼ଭାଇ ଅଶୋକ ମହାନ୍ତି, ପ୍ରିୟ କୋରାପୁଟିଆ କବି ତଥା ଅଗ୍ରଜ ପ୍ରଦୀପ ମିଶ୍ର, କୋରାପୁଟ ଆଦିବାସୀ ସଂଗ୍ରହାଳୟର ନିର୍ଦ୍ଦେଶକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଶାବର ଶ୍ରୀକ୍ଷେତ୍ର ସମାଚାର' ପତ୍ରିକାର ସଂପାଦକ ଗବେଷକ ଉମାକାନ୍ତ ଦାଶଙ୍କ ପ୍ରେରଣା ମୋତେ ଏହି କାମ କରିବାକୁ ବଳ ଯୋଗେଇଛି । ତଫସିଲଭୁକ୍ତ ଜାତି ଓ ଜନଜାତି ଉନ୍ନୟନ ବିଭାଗର କମିଶନର ତଥା ଶାସନ ସଚିବ ସନ୍ତୋଷ ଷଡଙ୍ଗୀ, ବିଶିଷ୍ଟ ଗବେଷକ ପ୍ରଫେସର ଖଗେଶ୍ୱର ମହାପାତ୍ର, ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଆଧୁନିକ ଭାରତୀୟ ଭାଷା ସାହିତ୍ୟ ଅଧ୍ୟୟନ ବିଭାଗର ପ୍ରଫେସର ଡ. ପ୍ରକାଶ ପଟ୍ଟନାୟକଙ୍କ ଉତ୍ସାହ ମୋତେ ବେଶ୍ ସହାୟକ ହୋଇଛି । ଗୋନାସିକା ଏଜୁକେଶନ୍ କଂପ୍ଲେକ୍ସର ଶିକ୍ଷକ ଶ୍ରୀକାନ୍ତ ଜୁଆଙ୍ଗ, ରାମଚନ୍ଦ୍ର ଜୁଆଙ୍ଗ, ରବୀନ୍ଦ୍ର କୁମାର ବେହେରା, ଗୋନାସିକା 'ବନବାସୀ ଚେତନା ମଣ୍ଡଳ'ର ସଂପାଦକ ବୀରବର ନାୟକ ଏବଂ ଉପରରତୁଆଁ ଗାଁର ଯୁବକ ବଙ୍କାଳି ଜୁଆଙ୍ଗ, ବେନୁ ଜୁଆଙ୍ଗ, ବିନୋଦ ଜୁଆଙ୍ଗ ଏବଂ ପ୍ରାଣବଲ୍ଲଭ ଘଣା ପ୍ରମୁଖ ମୋତେ ବିଶେଷ ସହାୟତା ପ୍ରଦାନ କରିଛନ୍ତି । ଏହା ସାଙ୍ଗକୁ ଯେଉଁଯେଉଁ ଗ୍ରାମରେ ମୁଁ ମୋ' ଗବେଷଣା କାର୍ଯ୍ୟ କରିବାର ସୁଯୋଗ ପାଇଛି ସେହିସବୁ ଗ୍ରାମର ଜୁଆଙ୍ଗମାନଙ୍କ ଅକୁଣ୍ଠ ସହଯୋଗ ପାଇଁ ମୁଁ କୃତଜ୍ଞ । ସେମାନେ ମୋତେ ଖୁବ୍ ବରଦାସ୍ତ କରିଛନ୍ତି ଏବଂ ତଥ୍ୟ ପ୍ରଦାନରେ ସହାୟତା କରିଛନ୍ତି । ଏହା ମୋ' ପାଇଁ ଖୁବ୍ ବଡ଼ ଆଶ୍ୱାସନା । ଏହି ବହିଟି ବାବଦରେ ନିଜସ୍ୱ ମତାମତ ରଖିବାକୁ ବିଶିଷ୍ଟ କବି (ଆଦିବାସୀ ସାହିତ୍ୟରେ ରୁଚି ରଖିଥିବା) ଡ. ସୀତାକାନ୍ତ ମହାପାତ୍ରଙ୍କୁ ଅନୁରୋଧ କରିଥିଲି । ମାତ୍ର, ଏଥିରେ ସମୟ ନଷ୍ଟ କରିବା ତାଙ୍କର ଉଚିତ୍ ହେବନି ବୋଲି କହି ମତାମତ ଲେଖିବାକୁ ମନା କରିଦେଇଥିଲେ । ତାଙ୍କର ଏହି ଅନାଗ୍ରହ, ହେୟପଣ



➢ 'ଆମ୍ବ ନୂଆ' ପାଳନ ଅବସରରେ ଜୁରିପକା (ସମୂହ ମଦ୍ୟପାନ) କାର୍ଯ୍ୟକ୍ରମରେ ଲେଖକ

ଓ ବ୍ୟସ୍ତତା ନିକଟରେ ମୁଁ ଚିର କୃତଜ୍ଞ । ଏହି ବହିଟି ପ୍ରସ୍ତୁତ କଲାବେଳେ ଆଉ ଏକ ତିକ୍ତ ଅନୁଭୂତି ହାସଲ କରିଛି । ପାଣ୍ଡୁଲିପିଟି ପ୍ରସ୍ତୁତ ହୋଇଗଲା ପରେ ଏହାକୁ ଭୁବନେଶ୍ୱରସ୍ଥିତ 'ତଫସିଲଭୁକ୍ତ ଜାତି, ଜନଜାତି ଗବେଷଣା ପ୍ରଶିକ୍ଷଣ ପ୍ରତିଷ୍ଠାନ'ର ନିର୍ଦ୍ଦେଶକ ଡ. ଅଖିଳ ବିହାରୀ ଓତାଙ୍କୁ ଦେଖାଇ ତାଙ୍କଠାରୁ ଏକ ଲିଖିତ ଅଭିମତ ସଂଗ୍ରହ କରିବାକୁ ଅନୁରୋଧ କରିଥିଲି । ସେ ଖୁବ୍ ଆଗ୍ରହର ସହ ପାଣ୍ଡୁଲିପିଟିକୁ ମୋ' ପାଖରୁ ନେଇ ମୋତେ ସପ୍ତାହେ ମଧ୍ୟରେ ଲେଖି ଦେଇଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ସେପରି ସେ ଆଉ କରି ନଥିଲେ । ମତାମତ ତ ଦୂର କଥା । ସେ ଭଦ୍ରବ୍ୟକ୍ତିଜଣକ ମୋ' ମୂଳ ପାଣ୍ଡୁଲିପିଟିକୁ ଦୀର୍ଘ ଛଅ ମାସ କାଳ ନିଜ ପାଖରେ ରଖିବା ପରେ ମୋତେ ଆଉ ଫେରାଇବାର ନାଁ ଧରି ନଥିଲେ । ପାଣ୍ଡୁଲିପିଟିକୁ ଆଣିବା ପାଇଁ ମୁଁ ବହୁବାର ଭୁବନେଶ୍ୱର ଗଲି, ମାତ୍ର ତାଙ୍କ ସହ କୌଣସି ପ୍ରକାରେ ସାକ୍ଷାତ ସଂଭବ ହୋଇପାରିଲା ନାହିଁ । ଏ ନେଇ ମୁଁ ତାଙ୍କୁ ବହୁବାର ଟେଲିଫୋନ୍ କଲି, ମାତ୍ର ସେ ମୋ' ଫୋନ୍ ଆଉ ଗ୍ରହଣ କଲେନାହିଁ । ଏହିଭଳି ଭାବେ ଦୀର୍ଘ ଛଅ ମାସ ବିତି ଯାଇଥିଲା । ଶେଷରେ



ଜୁଆଙ୍ଗ ଯୁବତୀଙ୍କ ସହ ଲେଖକ

ବହୁ କଷ୍ଟରେ ତାଙ୍କ ସହ ଯୋଗାଯୋଗ ସଂଭବ ହେଲା ଏବଂ ଅତି ବିକଳ ହୋଇ ମୁଁ ମୋ' ପାଣ୍ଡୁଲିପିଟିକୁ ଫେରାଇବାକୁ ତାଙ୍କୁ ଅନୁରୋଧ କଲି । ମାତ୍ର ଦୁର୍ଭାଗ୍ୟ ସେତେବେଳକୁ ମୁଁ ସେ ମୂଳ ପାଣ୍ଡୁଲିପିଟି ଫେରି ପାଇବାର ଆଶା ହରେଇ ବସିଥିଲି । 'ହଜିଯାଇଛି' ବୋଲି ଅତି ସହଜ ଉତ୍ତରଟିଏ ତାଙ୍କଠୁ ମିଳିଥିଲା । 'ପାଣ୍ଡୁଲିପି'ଟି ହଜି ଯାଇଛି ବୋଲି ମୂଳରୁ ତ କହିପାରିଥା'ନ୍ତେ; ସେ ମୋତେ ଛଅ ମାସ ଧରି ଏଭଳି ଦଉଡାଇଲେ କାହିଁକି? ଡ. ଓତାଙ୍କର ଏଭଳି ବ୍ୟବହାର ମୋତେ ଖୁବ୍ ମର୍ମାହତ କରିଥିଲା । 'କାହିଁକି ଏଭଳି ଘଟିଲା' ଭାବିଭାବି ମୁଁ ସପ୍ତାହେ କାଳ ଦୁଃଖ ପାଇଥିଲି । ସେତେବେଳକୁ ମୋ'ର ମୋହଭଙ୍ଗ ହୋଇ ପାରିଥିଲା । ମୁଖବନ୍ଧ ଲେଖିବା ଆଳରେ ବହିଟିରେ ବଡ଼ବଡ଼ିଆଙ୍କ 'ମୋହର' ବାଜିବା ନିଶା ମୁଣ୍ଡରୁ ଉତୁରି ଯାଇଥିଲା । ମୋ' କଂପ୍ୟୁଟରରେ ଏହାର 'ସଫ୍ଟ କପି' ଥିଲାବୋଲି ମୁଁ ବଞ୍ଚିଗଲି । ଛାଡ ସେସବୁ ଦୁଃଖ । ମୁଁ ଗୋଟିଏ ଭଲ ଓ ମହତ୍ କାମ କରିବାକୁ ଯାଉଥିବାରୁ ସେସବୁ ଛୋଟଛୋଟ ଦୁଃଖ, ତିକ୍ତତା ଓ ବାଧାବିଘ୍ନକୁ ଭୁଲି ପୁନର୍ବାର ବହି ପ୍ରତକ୍ଷନ କାମରେ ଲାଗିଥିଲି । ଗ୍ରନ୍ଥଟିକୁ ପ୍ରସ୍ତୁତ କଲାବେଳେ ବହୁ ସତର୍କତା ଅବଲମ୍ବନ କରିଛି । ଏହା ସତ୍ତ୍ୱେ ଯଦି କିଛି ତ୍ରୁଟି ରହିଯାଇଥାଏ ତେବେ ମୁଁ କ୍ଷମାପ୍ରାର୍ଥୀ । ରହିଲି । ବେଶି କହିଲିଣି ।

-ରଞ୍ଜନ ପ୍ରଧାନ

# ବହିକୁ ନେଇ କିଛି ବିଶେଷ ମତ

"'ନୃତତ୍ତ୍ୱ' ଭଳି ଏକ କଠିନ ଓ ଶାଣିତ ବିଷୟବସ୍ତୁକୁ ରଂଜନ ପ୍ରଧାନ ଖୁବ୍ ସରଳ ଭାଷାରେ ବୁଝାଇ ପାରିଛନ୍ତି ।"

ତତ୍ତ୍ୱବିଦ୍‌ମାନଙ୍କ ମତରେ 'ଆଦିବାସୀ' ଶବ୍ଦଟି କେବଳ ନୃତତ୍ତ୍ୱ ବିଷୟବସ୍ତୁ ଆଧାରିତ । ଏହାକୁ 'ନୃତତ୍ତ୍ୱ' ବିଷୟବସ୍ତୁ କହି ଏଥିରେ ସାହିତ୍ୟ ଓ ସୌନ୍ଦର୍ଯ୍ୟର ମୂଲ୍ୟବୋଧ ନାହିଁ ବୋଲି ତଥାକଥିତ ନୃତତ୍ତ୍ୱ ବିଶେଷଜ୍ଞମାନେ ଧରି ନେଇଥା'ନ୍ତି । ମାତ୍ର ଆମ ସମୟର ଜଣେ ପ୍ରଖ୍ୟାତ ଯୁବ ପ୍ରତିଭା ତଥା ସାହିତ୍ୟିକ ଶ୍ରୀ ରଂଜନ ପ୍ରଧାନଙ୍କ ଭଳି ଅଣ-ନୃବିଜ୍ଞାନୀ ଏହି ଆଦିବାସୀଙ୍କ ପ୍ରତି ଆକୃଷ୍ଟ ହେବା ସହିତ ସେମାନଙ୍କୁ ଲୋକଲୋଚନକୁ ଆଣିବାରେ ବ୍ରତୀ ହୋଇଛନ୍ତି । 'ନୃତତ୍ତ୍ୱ' ଭଳି ଏକ କଠିନ ଓ ଶାଣିତ ବିଷୟବସ୍ତୁକୁ ସେ ଖୁବ୍ ସରଳ ଭାଷାରେ ବୁଝାଇ ପାରିଛନ୍ତି । ଭାଷାର ଛନ୍ଦମୟତା ଓ କାବ୍ୟ କାରିଗରି ହିଁ ତାଙ୍କର ବିଶେଷତ୍ୱ । ଶ୍ରୀ ପ୍ରଧାନ ପେଶାରେ ଜଣେ ସାମ୍ବାଦିକ ହୋଇଥିବାରୁ ସେ ଏହି ଆଦିବାସୀ ପୁରପଲ୍ଲୀରେ ବୁଲିବୁଲି ଖୋଜିଛନ୍ତି ସୌନ୍ଦର୍ଯ୍ୟବୋଧ ଓ ସେମାନଙ୍କ ଆତ୍ମୀୟତା । ଆଦିବାସୀଙ୍କ ବିଭିନ୍ନ ପ୍ରସଙ୍ଗକୁ ବେଶ୍ ସାବଲୀଳ ଓ ସରଳ ଭାଷାରେ ଉପସ୍ଥାପନ କରି ସେ ଓଡ଼ିଆ ପାଠକ ମହଲରେ ବେଶ୍ ଲୋକପ୍ରିୟ ହୋଇପାରିଛନ୍ତି । ଆଦିବାସୀ ଜନଜୀବନକୁ ନେଇ ସେ କେତୋଟି

ବହୁମୂଲ୍ୟ ଗ୍ରନ୍ଥ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଲେଖି ସାରିଲେଣି । **Tales from hill and jungle**, 'ପରଜା ଜୀବନ ଓ ସଂସ୍କୃତି', 'ଆଦିବାସୀ ନାଚ ଓ ଗୀତ', 'ଡୁମା ଦେବତା', 'ବଣ ଡ଼ଙ୍ଗରର ଗପ', ଆଦି ତାଙ୍କର କିଛି ଲୋକପ୍ରିୟ ଆଦିବାସୀ ସାହିତ୍ୟ ଓ ଗବେଷଣା ଗ୍ରନ୍ଥ । ଏବେ ଆଉ ଏକ ଗବେଷଣାଧର୍ମୀ ଓ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣଭିତ୍ତିକ ଗ୍ରନ୍ଥ 'ଜୁଆଙ୍ଗ ପର୍ବପର୍ବାଣି' ପ୍ରସ୍ତୁତ କରିଛନ୍ତି । ପାଞ୍ଚୋଟି ପରିଚ୍ଛେଦରେ ସଂଗଠିତ ଏହି ଗ୍ରନ୍ଥରେ ଜୁଆଙ୍ଗ ଜାତିର ଏକ ସଂପୂର୍ଣ୍ଣ ଚିତ୍ର ପ୍ରଦାନ କରାଯାଇଥିବାବେଳେ ଶେଷ ପରିଚ୍ଛେଦରେ ଜୁଆଙ୍ଗ ଭାଷାର ଏକ ଶବ୍ଦ ସଂଭାର ଆଲୋଚନା କରାଯାଇଛି । ଆଦିବାସୀ ସଂସ୍କୃତି ସଂପର୍କରେ କୌତୁହଳୀ ସାଧାରଣ ଲୋକେ ଏହି ଗ୍ରନ୍ଥରୁ ବିଶ୍ୱର ଅନ୍ୟତମ ଅନନ୍ୟ ପୁରାତନ ଜନଜାତିର ପରିଚୟ ପାଇପାରିବେ ।

ବିଗତ ଶତାବ୍ଦୀରେ ଜଣେ ଓଡ଼ିଆ ସାହିତ୍ୟିକ ଏହି ଅଖ୍ୟାତ ବନବାସୀ ସମାଜର ଏକ ଚିତ୍ର କବିତା ମାଧ୍ୟମରେ ଚିତ୍ରଣ କରିଥିଲେ । ଶ୍ରୀ ରଂଜନ ପ୍ରଧାନଙ୍କ ଗ୍ରନ୍ଥର ଉପୋଦ୍‌ଘାତରେ ସେହି କବିତା 'ପାତୁଆ ପାତୁଇ' ଏବଂ ତା'ର ରଚୟିତା ବ୍ୟାସକବି ଫକୀର ମୋହନ ଏକାନ୍ତ ସ୍ମରଣୀୟ । ଫକୀର ମୋହନ ସେନାପତି ପ୍ରଧାନତଃ ଉପନ୍ୟାସକାର ଭାବରେ ସୁଖ୍ୟାତ ହେଲେ ହେଁ ସେ କେତେଗୁଡିଏ କବିତା ଲେଖିଛନ୍ତି, ଯାହା କି ତାଙ୍କର ଏକାନ୍ତ ବ୍ୟକ୍ତିଗତ ଚିନ୍ତା-ଭାବନା, ଅନୁଭବ-ଉପଲବ୍‌ଧି ଓ ସୁଖ-ଦୁଃଖର ଅଭିବ୍ୟକ୍ତି । ତାଙ୍କର ଗୋଟିଏ କବିତା ସଂକଳନର ନାମ 'ଅବସର ବାସରେ' (୧୯୦୮) ଏବଂ ସେଥିରୁ ସଂକଳିତ ଗୋଟିଏ କବିତାର ନାମ 'ପାତୁଆ ପାତୁଇ' । ଏହି କବିତାର ନାମରୁ କୌଣସି ବିଷୟବସ୍ତୁଗତ ସୂଚନା ମିଳେନାହିଁ । କିନ୍ତୁ କବିତାଟି ପଢିଲେ ପତ୍ର ପରିଧାନ କରୁଥିବା ଦୁଇଟି ନାରୀ ପୁରୁଷଙ୍କ ଜୀବନ ଚିତ୍ର ଉଦ୍‌ଭାସିତ ହୋଇଥାଏ ।

ନାହିଁ ଧର୍ମାଧର୍ମ ଜ୍ଞାନ ଭୂତ ଭବିଷ୍ୟତ
ପ୍ରକୃତି ଚାଳିତ କାର୍ଯ୍ୟ କରନ୍ତି ସମସ୍ତ
ସଭ୍ୟତା ସୌଭାଗ୍ୟ ବିଦ୍ୟା ବିଳାସ ବାସନା
ସ୍ୱଭାବର ଶିଶୁଗଣେ କିଛି ନାହିଁ ଜଣା

ନାହିଁ ଲୋଡା ସେ ସଭ୍ୟତା କି ହେବ ସେ ଜ୍ଞାନେ
ଦେବାକୁ ଯଦ୍ୟପି ହେବ କଷ୍ଟ ପର ପ୍ରାଣେ
ଯେ ବିଦ୍ୟା ସଭ୍ୟତା କ୍ଷଣଭଙ୍ଗୁର ଜୀବନ
କଳୁଷିତ କରେ, କିବା ତହିଁ ପ୍ରୟୋଜନ?

ବରଂଚ ପାତୁଆ ବେଶେ ଭ୍ରମିବା ବନରେ
ଉଚିତ, କଳୁଷ ପ୍ରାଣେ ସଭ୍ୟ ସମାଜରେ
ଅନୁଚିତ ବାସ ଯାହା ନରକ ଆକର !
ପାତୁଆ ଜୀବନ ବହୁଗୁଣେ ଶ୍ରେଷ୍ଠତର ।

ଫକୀର ମୋହନ କେନ୍ଦୁଝରରେ ୧୮୯୦-୯୧ ସମୟରେ ରାଜାଙ୍କର ମେନେଜର ଭାବେ କାର୍ଯ୍ୟ କରୁଥିଲେ । ପ୍ରାଶାସନିକ ସମସ୍ୟା ସହିତ ଧରଣୀଧର ଭୂୟାଁ ମେଳି ତାଙ୍କୁ ହୁଏତ କେନ୍ଦୁଝରର ଜନସାଧାରଣଙ୍କ ନିକଟବର୍ତ୍ତୀ ହେବାକୁ ଯଥେଷ୍ଟ ଅବସର ଦେଇ ନଥିଲା । ତଥାପି ଫକୀର ମୋହନଙ୍କ ଭଳି ଲୋକ-ନୃତତ୍ତ୍ୱ ଅନୁସନ୍ଧାନୀ ବ୍ୟକ୍ତି ପକ୍ଷରେ କେନ୍ଦୁଝରର ଏକ ବିଶିଷ୍ଟ ଜନଗୋଷ୍ଠୀ ନିଶ୍ଚୟ ଅବଜ୍ଞାତ ନଥିଲେ । ଏହି ଜନଗୋଷ୍ଠୀ ଆଜି ଆମ ନିକଟରେ 'ଜୁଆଙ୍ଗ' ଆଦିବାସୀ ଗୋଷ୍ଠୀ ଭାବେ ଚିହ୍ନିତ । ଫକୀର ମୋହନଙ୍କ ସମୟରେ କେନ୍ଦୁଝରରେ ସେମାନେ କେତେ ବହିର୍ଜଗତରେ ପରିଚିତ ଥିଲେ ଏବଂ କେଉଁ ନାମରେ ଲୋକେ ତାଙ୍କୁ ଆଖ୍ୟାତ କରୁଥିଲେ, ଫକୀର ମୋହନଙ୍କ କବିତାଟି ପଢିଲେ ସନ୍ଦିହାନ ହେବାକୁ ପଡେ । କାରଣ ଫକୀର ମୋହନ ତାଙ୍କ କବିତାରେ ବର୍ଣ୍ଣିତ ନରନାରୀ ଦୁହିଁଙ୍କୁ ଜୁଆଙ୍ଗ ଦଂପତି ବୋଲି ପରିଚିତ ନ କରାଇ ଅନ୍ୟଥା 'ପାତୁଆ-ପାତୁଈ' ବୋଲି ବର୍ଣ୍ଣନାତ୍ମକ ନାମ ଦେଇ ନଥା'ନ୍ତେ । ତେବେ ଯାହା ହେଉନା କାହିଁକି, ଉନ୍ନବିଂଶ ଶତାବ୍ଦୀର ଶେଷାବଧି କେନ୍ଦୁଝର ଅରଣ୍ୟରେ ଜୁଆଙ୍ଗ ଆଦିବାସୀ ନାରୀ ପୁରୁଷ ଯେ ଗଛଲତାର ପତ୍ରକୁ ପରିଧାନ ଭାବେ ବ୍ୟବହାର କରି ଚଳପ୍ରଚଳ ହେଉଥିଲେ ଏହା ଏକ ବିଶେଷ ନୃ-ତାତ୍ତ୍ୱିକ ତଥ୍ୟ ।

ଜୁଆଙ୍ଗ ଏକ ଆକର୍ଷଣୀୟ ଆଦିବାସୀ ସମାଜ । ଲୋକଗୁଡିକ ଖର୍ବକାୟ, ବଳିଷ୍ଠ, ଗୌରବର୍ଣ୍ଣ ଏବଂ ସ୍ୱାଧୀନଚେତା । ପାହାଡ ଉପରୁ ଜଙ୍ଗଲ କାଟି ଏମାନେ କିଛିକିଛି ଚାଷ କରନ୍ତି । ଅନ୍ୟଥା ଜଙ୍ଗଲର ଫଳମୂଳ ଉପରେ ଖାଦ୍ୟ ପାଇଁ ନିର୍ଭର କରନ୍ତି । ଜୁଆଙ୍ଗ ଗାଁଗୁଡିକ ଛୋଟଛୋଟ । ପ୍ରତି ଗାଁର କେନ୍ଦ୍ରରେ ଥାଏ 'ମଣ୍ଡଘର' ଏବଂ ତା'ଠୁ ଟିକେ ଦୂରରେ ଅବିବାହିତ ଝିଅମାନଙ୍କର 'ବସାଘର' । ମଣ୍ଡଘରର ଭୂମିକା 'ଭାଗବତ ଟୁଙ୍ଗୀ' ସହ କେତେକାଂଶରେ ତୁଳନୀୟ । ଗାଁର ଭଲମନ୍ଦ, ପର୍ବପର୍ବାଣି, ସଭାସମିତି ଇତ୍ୟାଦି ସବୁକିଛି ଏଠାରେ ସଂପାଦିତ ହୋଇଥାଏ । ମଣ୍ଡଘରର ମଝି ଅଗଣାରେ ଅଲିଭା ଜୁଇ ସଦାସର୍ବଦା ଜଳୁଥାଏ । କାନ୍ଥରେ ଖଞ୍ଜା ଯାଇଥିବା ହରିଣ, ଗୟଳ ଶିଂଗରେ ଗୋଟିଗୋଟି ଚାଙ୍ଗୁ ଝୁଲୁଥାଏ ।

ଜୁଆଙ୍ଗମାନଙ୍କର ସାମାଜିକ, ସାଂସ୍କୃତିକ ସଂଗଠନ ବହୁ ଭାବରେ ସ୍ୱତନ୍ତ୍ର । ସେମାନେ ନିଜସ୍ୱ ଭାଷା ବ୍ୟବହାର କରନ୍ତି । ନିଜ ଗାଁର ପୁଅଝିଅଙ୍କ ମଧ୍ୟରେ ବିବାହ ହୁଏନାହିଁ । ବିବାହ ପରେ ପୁଅ-ବୋହୂ ସ୍ୱତନ୍ତ୍ର ପରିବାର ଗଠନ କରନ୍ତି । ଛାଡପତ୍ର ଏବଂ ବିଧବା ବିବାହ ପ୍ରଚଳିତ ଅଛି ।

ସେମାନଙ୍କର ପ୍ରଧାନ ଦେବଦେବୀ ଧରମ୍ ଦେଓତା (ସୂର୍ଯ୍ୟ), ବସୁମତିମାତା ଏବଂ ଗ୍ରାମଶିରୀ। ଗାଁର ଭଲମନ୍ଦ ବୁଝିବାକୁ ଜଣେ ଥା'ନ୍ତି 'ପଧାନ' ଏବଂ ତାଙ୍କ ସହକାରୀଙ୍କୁ କୁହାଯାଏ 'ଡାଙ୍ଗୁଆ'।

ସଂପ୍ରତି ଫକୀର ମୋହନଙ୍କ କାଳର ପାତୁଆ-ପାତୁଇମାନେ ନିଜର ଆଦିମ ଅବସ୍ଥାରୁ ଅଗ୍ରସର ହେଉଛନ୍ତି। ଜୁଆଙ୍ଗ ଗୋଷ୍ଠୀର ସାମଗ୍ରିକ ଉନ୍ନତି ପାଇଁ ଏକ ସ୍ୱତନ୍ତ୍ର 'ଜୁଆଙ୍ଗ ଉନ୍ନୟନ' ଅଣୁ ଯୋଜନା ଗୋନାସିକାଠାରେ କାର୍ଯ୍ୟକାରୀ ହେଉଅଛି। ଦୂରବର୍ତ୍ତୀ ଗ୍ରାମଗୁଡିକ ତଥାପି ଅବହେଳିତ ହୋଇଥିଲେ ହେଁ ନିକଟବର୍ତ୍ତୀ ଗୋନାସିକା, କଦଳୀବାଡି, ବୈତରଣୀ, ଗୁପ୍ତଗଙ୍ଗା ପ୍ରଭୃତି ଗ୍ରାମଗୁଡିକର ତୁଳନାତ୍ମକ ଭାବେ ବିକାଶ ହେଲାଣି। ଶିକ୍ଷାର ବିସ୍ତାର କ୍ରମଶଃ ଦେଖା ଗଲାଣି। ଏସବୁ ପରିବର୍ତ୍ତନ ଲକ୍ଷ୍ୟ କରି କୁହାଯାଇପାରେ ଯେ, ଫକୀର ମୋହନଙ୍କ ଯୁଗର ଜୁଆଙ୍ଗ ସମାଜ ବର୍ତ୍ତମାନ ପ୍ରଗତିପଥର ଯାତ୍ରୀ। ଆଜି ଫକୀର ମୋହନଙ୍କ ଉତ୍ତରାଧିକାରୀ ଶ୍ରୀମାନ୍ ରଂଜନ ପ୍ରଧାନ ସେହି ଜୁଆଙ୍ଗମାନଙ୍କୁ ଆକଳନ କରିଛନ୍ତି। ସେମାନଙ୍କ ଚିତ୍ର ଓ ଚରିତ୍ର ସଂପର୍କରେ ଅଧ୍ୟୟନ କରିଛନ୍ତି।

ମୋ' ବିଚାରରେ ଏହିପରିକା କର୍ତ୍ତବ୍ୟବୋଧରୁ ଶ୍ରୀ ପ୍ରଧାନ ଜୁଆଙ୍ଗ ଉନ୍ମୁଖ ହୋଇଛନ୍ତି ତଥା ଆଦିବାସୀଙ୍କ ପ୍ରତି ମାନବୀୟ ମନସ୍କ ହୋଇ ନିୟମିତ ଅଧ୍ୟୟନ କରିଚାଲିଛନ୍ତି। ତାଙ୍କର ଏହି ଅଭିଲିପ୍‌ସା ସାର୍ଥକ ହେଉ। ଏତିକି ମୋ'ର ଶୁଭକାମନା।

**ପ୍ରଫେସର ଡ. ଖଗେଶ୍ୱର ମହାପାତ୍ର**

**ଅବସରପ୍ରାପ୍ତ ପ୍ରଫେସର, 'ବିଶ୍ୱଭାରତୀ', ଶାନ୍ତିନିକେତନ।**

**ପୂର୍ବତନ ନିର୍ଦ୍ଦେଶକ, 'ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଏବଂ ପ୍ରଶିକ୍ଷଣ ପ୍ରତିଷ୍ଠାନ' ତଥା 'ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ', ଭୁବନେଶ୍ୱର।**

**“ବହିଟି ଖୁବ୍ ମୂଲ୍ୟବାନ୍ ଓ ଗବେଷକଙ୍କ ପାଇଁ ସହାୟକ ହେବ”**

ଶ୍ରଦ୍ଧେୟ ଶ୍ରୀଯୁକ୍ତ ରଂଜନ ପ୍ରଧାନଙ୍କ ରଚିତ ଜୁଆଙ୍ଗ ପର୍ବପର୍ବାଣି ପୁସ୍ତକଟିର ପାଣ୍ଡୁଲିପି ପାଠ କରି ବିଶେଷ ଆନନ୍ଦିତ ହେଲି । ତାଙ୍କ ରଚନାର ସରଳ, ସାବଲୀଳ ତଥା ବୋଧଗମ୍ୟ ଶୈଳୀ, ବିଷୟବସ୍ତୁର ସଠିକ୍ ଅବଧାରଣା ଓ ସେଗୁଡିକର ବାସ୍ତବ ଉପସ୍ଥାପନ, ଭାଷାର ପ୍ରବହମାନ ଲାଳିତ୍ୟ ଏବଂ ଜୀବନଦର୍ଶନର ସମ୍ୟକ ପରିପ୍ରକାଶ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏହି ପୁସ୍ତକଟି ଜୁଆଙ୍ଗପ୍ରେମୀ ପାଠକମାନଙ୍କ ଦ୍ୱାରା ଆଦୃତ ହେବ, ମୋର ଆଶା ଓ ବିଶ୍ୱାସ । ପାଠକେ ଏହି ପୁସ୍ତକରୁ ଜୁଆଙ୍ଗମାନଙ୍କ ସଂପର୍କରେ ବହୁ ତଥ୍ୟ ହାସଲ କରିପାରିବେ । ବହିଟି ଖୁବ୍ ମୂଲ୍ୟବାନ୍ ଏବଂ ଗବେଷକଙ୍କ ପାଇଁ ସହାୟକ ହୋଇପାରିବ ।

ଆମ ରାଜ୍ୟରେ ଜୁଆଙ୍ଗମାନେ ଏକ ପୁରାତନ ଅନୁସୂଚିତ ଜନଜାତି ଭାବରେ ପରିଚିତ । ତାଙ୍କ ଭାଷାରେ ଜୁଆଙ୍ଗ ଶବ୍ଦର ଅର୍ଥ ‘ମଣିଷ’ । ସେମାନେ ଏଇ ମାଟିର ମଣିଷ । ପାହାଡ, ପର୍ବତ, ଜଙ୍ଗଲ, ନଦୀ, ନାଳ, ଝରଣା ଥିବା ପ୍ରାକୃତିକ ପରିବେଶରେ ସେମାନେ ଯୁଗଯୁଗ ଧରି ବାସ କରିଆସୁଛନ୍ତି । କେନ୍ଦୁଝର ଜିଲ୍ଲାର ଗୋନାସିକା ପାର୍ବତ୍ୟ ଅଞ୍ଚଳ ସେମାନଙ୍କ ମୂଳ ବାସସ୍ଥଳି ରୂପେ ବିବେଚିତ ହୋଇଥାଏ । ବାଂଶପାଳ, ହରିଚନ୍ଦନପୁର, ତେଲକୋଇ ଓ ଘଟଗାଁ ବ୍ଲକ୍ ଅଞ୍ଚଳରେ ବସବାସ କରୁଥିବା ଜୁଆଙ୍ଗମାନେ ମୂଳବାସିନ୍ଦା ବା ‘ଥାନିଆ’ ଭାବରେ ପରିଚିତ । କାଳକ୍ରମେ ଯେଉଁ ଜୁଆଙ୍ଗ ଲୋକମାନେ ଢେଙ୍କାନାଳ ଓ ଅନୁଗୁଳ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ଯାଇ ବାସ କରୁଛନ୍ତି ସେମାନଙ୍କୁ ‘ଭାଗୁଡିଆ’ କୁହାଯାଏ । ପ୍ରଜାତିତତ୍ତ୍ୱବିତ୍‌ମାନଙ୍କ ନିର୍ଦ୍ଧାରଣ ଅନୁଯାୟୀ, ସେମାନେ ପ୍ରୋଟୋ-ଅଷ୍ଟ୍ରାଲଏଡ୍ ପ୍ରଜାତିର ଅନ୍ତର୍ଭୁକ୍ତ । ଭାଷାତତ୍ତ୍ୱବିତ୍‌ମାନଙ୍କ ମତାନୁଯାୟୀ, ଜୁଆଙ୍ଗମାନେ ଅଷ୍ଟ୍ରୋ-ଏସିଆଟିକ୍ (ମୁଣ୍ଡାରି) ଭାଷାଭାଷୀ ଅଧିବାସୀ । ଜୁଆଙ୍ଗ ଏକ ଲିପିବିହୀନ କଥିତ ଭାଷା ଓ ଏହାର ନିଜସ୍ୱ ଲିପି ଆବିଷ୍କୃତ ହୋଇନାହିଁ । ପ୍ରାକ୍-କୃଷିଭିତ୍ତିକ ଅର୍ଥନୀତି, ନିମ୍ନ ସାକ୍ଷରତା ହାର, ଜନସଂଖ୍ୟାର

ନ୍ୟୁନ ବୃଦ୍ଧିହାର ଇତ୍ୟାଦି ବିଷୟକୁ ଦୃଷ୍ଟିରେ ରଖି ଆମ ରାଜ୍ୟରେ ଯେଉଁ ୧୩ଗୋଟି ଅନୁସୂଚିତ ଜନଜାତି ଗୋଷ୍ଠୀ ପୁରାତନ ଓ ଅନଗ୍ରସର ରୂପେ ନିର୍ଦ୍ଧାରିତ ହୋଇଛନ୍ତି ସେମାନଙ୍କ ମଧ୍ୟରେ ଜୁଆଙ୍ଗ ଅନ୍ୟତମ । ସେମାନଙ୍କ ସାମଗ୍ରିକ ବିକାଶ ବା ଉନ୍ନୟନ ନିମନ୍ତେ କେନ୍ଦ୍ର ସରକାରଙ୍କ ଶତପ୍ରତିଶତ ଅନୁଦାନରେ ୧୯୭୮ ମସିହାରୁ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ନାମକ ଅଣୁ-ପ୍ରକଳ୍ପ କାର୍ଯ୍ୟକାରୀ ହେଉଅଛି । ଏହା ଫଳରେ ସେମାନଙ୍କ ଜୀବନଶୈଳୀରେ ପରିବର୍ତ୍ତନ ପରିଲକ୍ଷିତ ହେଉଅଛି ।

ଉକ୍ତ ପୁସ୍ତକଟିର ଅନ୍ୟ ଏକ ଉଲ୍ଲେଖନୀୟ ବିଶେଷତ୍ୱ ହେଉଛି ଯେ, ଜୁଆଙ୍ଗମାନଙ୍କ ପର୍ବପର୍ବାଣି ମୁଖ୍ୟ ଉପଜୀବ୍ୟ ବିଷୟ ହୋଇଥିଲେ ମଧ୍ୟ ସେମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନଧାରାର ଏକ ସାମଗ୍ରିକ ବିବରଣୀ ଉପସ୍ଥାପିତ ହୋଇଅଛି । ଏହା ପୁସ୍ତକ ରଚୟିତାଙ୍କ ଏକ ବାସ୍ତବଧର୍ମୀ, ବିଶ୍ଳେଷଣାତ୍ମକ ନୃତାତ୍ତ୍ୱିକ ଚିନ୍ତାଧାରାର ପରିଚାୟକ । କାରଣ ପର୍ବପର୍ବାଣିଗୁଡିକ ଆଲୋଚନା କରିବା ସମୟରେ ସେଗୁଡିକ ପାଳନ କରୁଥିବା ଲୋକମାନଙ୍କ ବାସସ୍ଥଳୀ, ପରିବେଶ, ସମାଜ, ସଂସ୍କୃତି, ଅର୍ଥନୈତିକ, ରାଜନୈତିକ, ଧର୍ମୀୟ ଅବବୋଧ ଇତ୍ୟାଦି ବିଷୟରେ ଅବଗତ ହେଲେ ଏକ ବାସ୍ତବ ଚିତ୍ର ମିଳିଥାଏ । ଯଥାର୍ଥରେ, ସାମାଜିକ ଜୀବନରେ ପରିବାର, କ୍ଲାନ୍ ବ୍ୟବସ୍ଥା, ଜନ୍ମ, ବିବାହ, ମୃତ୍ୟୁ, ସଂପର୍କିତ କର୍ମକର୍ମାଣି ଇତ୍ୟାଦି; ଅର୍ଥନୈତିକ କ୍ଷେତ୍ରରେ ଖାଦ୍ୟ-ସଂଗ୍ରହ, ଖାଦ୍ୟ ଉତ୍ପାଦନ ପ୍ରଭୃତି; ପଞ୍ଚାୟତିରାଜ ବ୍ୟବସ୍ଥାର ପ୍ରଚଳନର ଅବ୍ୟବହିତ ପୂର୍ବରୁ ସେମାନଙ୍କ ରାଜନୈତିକ ଓ ପ୍ରାଶାସନିକ ବ୍ୟବସ୍ଥା ଅନ୍ତର୍ଗତ ପୂର୍ବତନ କର୍ମକର୍ତ୍ତା ଓ ସେମାନଙ୍କ ଭୂମିକା ଇତ୍ୟାଦି ଏବଂ ଧର୍ମୀୟ କ୍ଷେତ୍ରରେ ଧର୍ମବିଶ୍ୱାସ, କର୍ମକର୍ମାଣି, ଧର୍ମୀୟ କର୍ମକର୍ତ୍ତା ଇତ୍ୟାଦି ଆଲୋଚିତ ହୋଇଅଛି । ଏତଦ୍‌ବ୍ୟତୀତ ସେମାନଙ୍କ ସଂସ୍କୃତିର ପରିଚାୟକ ନୃତ୍ୟ, ଗୀତ, ବାଦ୍ୟଯନ୍ତ୍ରର ବ୍ୟବହାର, ଚିତ୍ରକଳା, ପ୍ରହେଳିକା ଓ ଢଗଢମାଳି ପ୍ରଭୃତିର ବର୍ଣ୍ଣନା ଅତୀବ ମର୍ମସ୍ପର୍ଶୀ । ନୂଆଖିଆ, ପୂଜା, ପର୍ବପର୍ବାଣି ବିଷୟର ବର୍ଣ୍ଣନରୁ ପାଠକ ବହୁ ମୂଲ୍ୟବାନ ତଥ୍ୟ ପାଇପାରିବେ ।

ଆମ ଦେଶ ଏକ ପୁରାତନ ସଭ୍ୟତା ଓ ସଂସ୍କୃତିର ପରିଚାୟକ । ପୁନଶ୍ଚ ଏହା ଏକ ବହୁ-ପ୍ରଜାତିକ, ବହୁ ସଂସ୍କୃତିବିଶିଷ୍ଟ, ବହୁ ଭାଷିକ ଓ ବହୁ ଧର୍ମୀୟ ଦେଶ ରୂପେ ବିବେଚିତ । ସମଗ୍ର ଦେଶରେ ସ୍ଥୂଳତଃ ତିନିଗୋଟି ଲୋକ-ସାଂସ୍କୃତିକ ବିନ୍ୟାସ ଦେଖାଯାଏ, ଯଥା- ୧) ଲୋକ-ସମାଜ (ଅନୁସୂଚିତ ଜନଜାତି), ୨) କୃଷିଜୀବି (ଗ୍ରାମ୍ୟ ଜାତି) ସମାଜ ଏବଂ ୩) ପୌର (ନଗର) ସମାଜ । ଉପରୋକ୍ତ ତିନିଗୋଟି ବିନ୍ୟାସରେ ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ଦେଖାଯାଉଥିଲେ ମଧ୍ୟ ପରସ୍ପର ନିବିଡ଼ ଭାବରେ ସଂପର୍କିତ ଓ ନିର୍ଭରଶୀଳ । ଏହାକୁ ଅନ୍ୟ ଅର୍ଥରେ ଲୋକ-ପୌର ନିରବିଛିନ୍ନତା କୁହାଯାଏ । ଆଦିବାସୀ ବା ଅନୁସୂଚିତ ଜନଜାତି ଲୋକମାନେ ସରଳ ଲୋକ-ସମାଜ ଗଠନ କରିଥା'ନ୍ତି । ଗ୍ରାମାଞ୍ଚଳରେ ମୁଖ୍ୟତଃ ବିଭିନ୍ନ ଜାତିର କୃଷିଜୀବି ଲୋକମାନେ ବାସ କରନ୍ତି । ନଗର ବା ପୌର

ଅଞ୍ଚଳରେ ବାସ କରୁଥିବା ଲୋକମାନେ ଅପେକ୍ଷାକୃତ ଜଟିଳ ସମାଜ ଗଠନ କରିଥା'ନ୍ତି । ଉପରୋକ୍ତ ଦୃଷ୍ଟିକୋଣରୁ ଜୁଆଙ୍ଗମାନଙ୍କୁ ବିଚାରକୁ ନେଲେ ସେମାନେ ପ୍ରଥମୋକ୍ତ ବିନ୍ୟାସ । ୧) ଲୋକ-ସମାଜ ମଧ୍ୟରେ ଏକ ଅର୍ଥନୈତିକ ଦୃଷ୍ଟିରେ ଅନଗ୍ରସର ଗୋଷ୍ଠୀର ପରିଚାୟକ । ଅର୍ଥନୈତିକ ଦୃଷ୍ଟିରେ ଅନଗ୍ରସର ବା ପଛୁଆ ବର୍ଗ ହେଲେ ମଧ୍ୟ ଜୁଆଙ୍ଗ ସଂସ୍କୃତି ଅତ୍ୟନ୍ତ ବଳିଷ୍ଠ । ସେହି ସଂସ୍କୃତିକୁ ବିନିଯୋଗ କରି ବିଭିନ୍ନ କାଳରେ ବହୁ ଉତ୍‌ଥାନ ପତନ ସତ୍ତ୍ୱେ ସେମାନେ ଅଗ୍ରସର ହେଉଛନ୍ତି । ସେମାନେ ବାସ କରୁଥିବା ଅଞ୍ଚଳର ପରିବେଶ ଅନୁକୂଳ ହୋଇ ନଥିଲେ ମଧ୍ୟ ସେମାନଙ୍କ ଉଭୟ ଭୌତିକ ଓ ଅଣ-ଭୌତିକ ସଂସ୍କୃତି ଫଳରେ ତାହା ସହିତ ସମଯୋଜିତ ହୋଇ ଜୀବନ ନିର୍ବାହ କରୁଛନ୍ତି ।

ପରିଶେଷରେ ଏଠାରେ ଉଲ୍ଲେଖ କରିବା ସମୀଚୀନ ଯେ, ପୁସ୍ତକ ରଚୟିତା ଶ୍ରୀଯୁକ୍ତ ରଂଜନ ପ୍ରଧାନଙ୍କ ଆବେଗ ଓ ନିଷ୍ଠା ଫଳରେ ଉକ୍ତ ପୁସ୍ତକଟି ପ୍ରକାଶୋନ୍ମୁଖୀ ଏବଂ ଭବିଷ୍ୟତରେ ତାଙ୍କ ଲେଖନୀ ଚାଳନା ଫଳରେ ସେ ବହୁ ଉପାଦେୟ ପୁସ୍ତକ ପ୍ରକାଶ କରି ସୁନାମ ଅର୍ଜନ କରିବେ ।

**ପ୍ରଫେସର ଡ. କୃଷ୍ଣ କୁମାର ମହାନ୍ତି**
ଅବସରପ୍ରାପ୍ତ ପ୍ରଫେସର, ନୃତତ୍ତ୍ୱ ବିଭାଗ, ଖଲ୍ଲୀକୋଟ ମହାବିଦ୍ୟାଳୟ, ବ୍ରହ୍ମପୁର
ଏବଂ
ପୂର୍ବତନ ନିର୍ଦ୍ଦେଶକ, ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଏବଂ ପ୍ରଶିକ୍ଷଣ ପ୍ରତିଷ୍ଠାନ, ଭୁବନେଶ୍ୱର

## ରଂଜନ ପ୍ରଧାନଙ୍କ 'ଅଂଶଗ୍ରହଣ ଓ ଅନୁଧ୍ୟାନ' ଗବେଷଣା ପଦ୍ଧତି ଉଜ୍ଜ ମାନର ଓ ନିଆରା

ସାହିତ୍ୟିକ, ସାମ୍ବାଦିକ ଓ ଗବେଷକ ରଂଜନ ପ୍ରଧାନଙ୍କର 'ଜୁଆଙ୍ଗ ପର୍ବପର୍ବାଣି' ପୁସ୍ତକର ପାଣ୍ଡୁଲିପିଟି ପଢିଲାବେଳେ ମୁଁ ଭାବପ୍ରବଣ ହୋଇପଡିବା ସ୍ୱାଭାବିକ । ଏଥିରେ ଉଲ୍ଲେଖ ଥିବା ବିଭିନ୍ନ ଜୁଆଙ୍ଗ ଅଞ୍ଚଳରେ ଜୁଆଙ୍ଗ ଭାଷା ଗବେଷଣା ନିମନ୍ତେ ତଥ୍ୟ ସଂଗ୍ରହ ଉଦ୍ଦେଶ୍ୟରେ ୧୯୮୦-୮୩ ମସିହା ମଧ୍ୟରେ ମୁଁ ଅନେକଥର ବୁଲିଛି, କେତେ ଗାଁରେ ରହି ଜୁଆଙ୍ଗ ଲୋକଜୀବନ ସଂପର୍କରେ ଆସିବାର ସୁଯୋଗ ପାଇଛି । ବର୍ଷର ବିଭିନ୍ନ ସମୟରେ ରହୁଥିବାରୁ ମୋତେ ବିଭିନ୍ନ ପର୍ବପର୍ବାଣି କେବଳ ଦେଖିବା ନୁହେଁ, ସେଥିରେ ଅଂଶଗ୍ରହଣ କରିବାର ସୁଯୋଗ ମଧ୍ୟ ମିଳିଥିଲା । ସେତେବେଳେ ମୁଁ ଉପଲବ୍ଧି କରିଥିଲି- ଜୁଆଙ୍ଗ ସାମାଜିକ ଓ ସାଂସ୍କୃତିକ ଜୀବନ ଉପରେ ଜାଣିବାକୁ ହେଲେ କୌଣସି ଗ୍ରନ୍ଥ ପଢିବାର ଆବଶ୍ୟକତା ନଥିଲା, ଆବଶ୍ୟକ ଥିଲା କେବଳ ଜାଣିବାର ଆଗ୍ରହ, ପୃଥକ ମାନସିକତା, ଗବେଷଣାରେ ନିଷ୍ଠା ଓ ଅସୀମ ଧୈର୍ଯ୍ୟ, ଆଉ ଏକ ସ୍ୱତନ୍ତ୍ର ଗବେଷଣା କୌଶଳ *(research methodology)* । ମାତ୍ର ଏ ଦିଗରେ ସ୍ଥାନୀୟ ଗବେଷକ କେବେହେଲେ ଉତ୍ସାହ ଦେଖାଇଥିବାର ଉଦାହରଣ ନଥିଲା । ଆଉ ଯେଉଁମାନେ ବାହାରୁ ଆସିଥିଲେ ସେମାନେ ସ୍ୱଳ୍ପ ସମୟ ମଧ୍ୟରେ ଦୁଇଚାରିଟି ଗାଁ ବୁଲିଦେଲେ ପର୍ଯ୍ୟାପ୍ତ ତଥ୍ୟ ମିଳିଯାଏ ବୋଲି ମନେ କରୁଥିଲେ । ଏହାଛଡା ଯାହା ମୁଁ ସହଜରେ ଗ୍ରହଣ କରିପାରୁ ନଥିଲି, ତାହା ହେଲା ସେମାନଙ୍କର ତଥ୍ୟ ଉପସ୍ଥାପନର ଭାଷା ଓ ଶୈଳୀ । ଯାହା ଫଳରେ ସହଜରେ ଜାଣିବା ସଂଭବ ନୁହେଁ- ସେମାନେ ତଥ୍ୟ ପ୍ରଦାନ କରୁଥିଲେ କି ସାହିତ୍ୟ ରଚନା କରୁଥିଲେ, ଆଉ ସେଗୁଡିକ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଉଥିଲା ଓଡ଼ିଆ ଭାଷା ଓ ସାହିତ୍ୟ ପୃଷ୍ଠାରେ । ସେହିସବୁ ଗବେଷଣାରେ ବିଶେଷକରି 'ଅଂଶଗ୍ରହଣ ଓ ଅନୁଧ୍ୟାନ'ର ଘୋର ଅଭାବ ରହିଥିଲା ।

ଏହା ମଧ୍ୟରେ ତିନି ଦଶକ ବିତିଯାଇଛି । ଏ ଭିତରେ ପୂର୍ବ ଆଗ୍ରହ ନେଇ ମୁଁ ଅନେକଥର ଜୁଆଙ୍ଗ ଅଞ୍ଚଳ ବୁଲି ଦେଖିଛି । ସାତୋଟି ପାହାଡ ଡେଇଁ ମନଭଙ୍ଗା ପାହାଡ ଦେଇ ମୋତେ ଆଉ ଗୋନାସିକା ଯିବାକୁ ପଡୁନାହିଁ । ରାସ୍ତାଘାଟସବୁ ବଦଳି ଯାଇଛି । ପରିବର୍ତ୍ତନର ଧାରାରେ ଦେଖିଲେ

ଜୁଆଙ୍ଗ ସମାଜର ଏକ ମୁଖ୍ୟ ଅନୁଷ୍ଠାନ 'ମଜାଙ୍ଗ' ଏବେ ମଣ୍ଡଘର ଓ ପୁଣି କ୍ଲବ୍ ଘର ଭାବେ ଅନୁବାଦିତ ହୋଇସାରିଲାଣି । ହେଲେ ଜୁଆଙ୍ଗ ସମାଜ ସଂପର୍କରେ ଏଯାଏ ଆସି ନଥିବା କେନ୍ଦୁଝରର ଅନ୍ୟ ଗୋଷ୍ଠୀଙ୍କ ନିକଟରେ ଜୁଆଙ୍ଗମାନେ କେବଳ ଏକ ପ୍ରାଚୀନ ଆଦିବାସୀ ଗୋଷ୍ଠୀ ହୋଇ ରହିଯାଇଛନ୍ତି । ସେ ସମୟରେ ଜୁଆଙ୍ଗ ଓ ତଥାକଥିତ ସଭ୍ୟ ସମାଜ ମଧ୍ୟରେ ଯେତିକି ମାନସିକ ଦୂରତା ରହିଥିଲା ଆଜି ମଧ୍ୟ ସେତିକି ରହିଛି । ମାନସିକତାରେ କୌଣସି ପରିବର୍ତ୍ତନ ସଂଭବ ହୋଇନାହିଁ । ତେଣୁ ଜୁଆଙ୍ଗ ଭାଷା, ସମାଜ ଓ ସଂସ୍କୃତି ସଂପର୍କିୟ ଗବେଷଣା ଉଭୟ ଗୁଣାତ୍ମକ ଓ ସଂଖ୍ୟାତ୍ମକ ଦୃଷ୍ଟିରୁ ବୃଦ୍ଧି ପାଇପାରିନାହିଁ । ଏହାକୁ ପୃଷ୍ଠପଟରେ ରଖି ବିଚାର କଲାବେଳେ ଶ୍ରୀଯୁକ୍ତ ପ୍ରଧାନଙ୍କର ଜୁଆଙ୍ଗ ଜନଜାତିକୁ ପାଖରୁ ଥାଇ ଜାଣିବାର ଓ ଅନ୍ୟଙ୍କୁ ଜଣେଇବାର ପ୍ରଚେଷ୍ଟା ନୂତନ ଆଶା ଉଦ୍ରେକ କରିଥାଏ ।

କ୍ଷେତ୍ର ଅଧ୍ୟୟନ ଆଧାରରେ 'ଜୁଆଙ୍ଗ ପର୍ବପର୍ବାଣି'ର ପରିକଳ୍ପନା ପୂର୍ବରୁ ସମାନ ଧରଣର ଆଉ ତିନୋଟି ପୁସ୍ତକ ରଚନା କରିଛନ୍ତି ଶ୍ରୀଯୁକ୍ତ ପ୍ରଧାନ । ସେଥିମଧ୍ୟରୁ ଦୁଇଗୋଟି କୋରାପୁଟର ଜନଜାତି ସଂପର୍କରେ ସେ ଆସିବା ପରେ । ସମସ୍ତ ପୁସ୍ତକର ଗଠନ କୌଶଳ ପ୍ରାୟ ଏକାପରି ଏବଂ ବାହାରୁ ଏକ ଗବେଷଣା ଶୈଳୀର ପ୍ରୟୋଗର ସୂଚନା ମିଳୁଥିଲେ ହେଁ ତାଙ୍କର ପ୍ରତ୍ୟେକ ସୃଷ୍ଟିରେ ସେ କିଛି ନୂତନତା ଦେଖାଇବାର ପ୍ରୟାସ କରିଥା'ନ୍ତି । କିଂତୁ 'ଜୁଆଙ୍ଗ ପର୍ବପର୍ବାଣି'ର ପାଣ୍ଡୁଲିପିଟି ପଢି ମନେହେଲା ଯେପରି ତାଙ୍କର କ୍ଷେତ୍ର ଅଧ୍ୟୟନ ପଦ୍ଧତି ଏକ ସ୍ୱତନ୍ତ୍ର ରୀତିରେ ଆଗେଇ ଚାଲିଛି । ଫଳରେ 'ଜୁଆଙ୍ଗ ପର୍ବପର୍ବାଣି' ଏକ ଭିନ୍ନ ଧରଣର ପୁସ୍ତକ ଭାବରେ ଆତ୍ମପ୍ରକାଶ କରିବାକୁ ଯାଉଛି । ଏହି ରଚନାରେ ତଥ୍ୟ ସଂଗ୍ରହ, ଅନୁଧ୍ୟାନ, ପର୍ଯ୍ୟାଲୋଚନା ଓ ଉପସ୍ଥାପନ କୌଶଳ ଏକ ଭିନ୍ନ ଗବେଷଣା ଧାରାର ସୂଚନା ଦେଇଥାଏ । ପୁସ୍ତକଟିର ନାମକରଣ 'ଜୁଆଙ୍ଗ ପର୍ବପର୍ବାଣି' ହୋଇଥିବା ସତ୍ତ୍ୱେ ଏହା ବାସ୍ତବରେ ଜୁଆଙ୍ଗ ସାମାଜିକ ଜୀବନର ଏକ ନୃତାତ୍ତ୍ୱିକ ବା ସମାଜଭିତ୍ତିକ ଗବେଷଣାର ରୂପ ନେଇଛି । ଏହାଛଡା ସରଳ ଭାଷାର ବ୍ୟବହାର ଯୋଗୁଁ ପୁସ୍ତକଟି ସୁଖପାଠ୍ୟ ହୋଇପାରିବ ବୋଲି ଆଶା କରାଯାଏ ।

ପାଣ୍ଡୁଲିପିଟି ପଢିବା ପରେ ମୋର ମନେ ହୋଇଛି 'ଜୁଆଙ୍ଗ ପର୍ବପର୍ବାଣି' ଏକ ଭିନ୍ନ ଧରଣର ଗବେଷଣା ପୁସ୍ତକ ଭାବରେ ଓଡ଼ିଶାର ସାଧାରଣ ପାଠକଠାରୁ ଆରଂଭ କରି ଗବେଷକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଉପାଦେୟ ହୋଇପାରିବ । ପୁସ୍ତକଟିର ଆରଂଭ ହୋଇଛି ଅନ୍ୟ ଗବେଷକଙ୍କ ଦ୍ୱାରା ପ୍ରକାଶିତ ତଥ୍ୟକୁ ଆଧାର କରି । ପ୍ରକାଶିତ ପୁସ୍ତକ ସହିତ ସରକାରୀ ନଥିପତ୍ରକୁ ତନ୍ନତନ୍ନ କରି ଅନୁଧ୍ୟାନ କରିଛନ୍ତି ଗବେଷକ । ପରେପରେ ଅନ୍ୟ ଆଲୋଚକଙ୍କ ଟିପ୍ପଣୀ ଉପରେ ଆଉ ଅଧିକ ଗୁରୁତ୍ୱ ନ ଦେଇ ନିଜେ ହିଁ ତଥ୍ୟ ସଂଗ୍ରହ କରିଚାଲିଛନ୍ତି । ଏହି ପରିପ୍ରେକ୍ଷୀରେ ସେ ଅଗମ୍ୟ ଜୁଆଙ୍ଗ ଅଞ୍ଚଳ ବୁଲି ଦେଖିଛନ୍ତି, ବିଭିନ୍ନ ଜୁଆଙ୍ଗ ବ୍ୟକ୍ତିବିଶେଷଙ୍କ ସଂପର୍କରେ ଆସିଛନ୍ତି, ତାଙ୍କର ଧାର୍ମିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନର ବିଶେଷତ୍ୱକୁ ନିଜେହିଁ ଜାଣିବାକୁ ଚେଷ୍ଟା କରିଛନ୍ତି । ତାଙ୍କୁ ସବୁଠାରୁ ବେଶି ଆକୃଷ୍ଟ କରିପାରିଛି ଜୁଆଙ୍ଗମାନଙ୍କର ସାଂସ୍କୃତିକ ଜୀବନଧାରା । ନିକଟରେ ରହି ଏକ ଜନଜାତିର ବିଶ୍ୱାସବୋଧକୁ ଟିକିନିଖି ପରୀକ୍ଷା କରିବାକୁ ଯାଇ ସେ ବର୍ଷର ବିଭିନ୍ନ ସମୟରେ ଜୁଆଙ୍ଗ ସମାଜରେ ପାଳିତ ହେଉଥିବା ପର୍ବପର୍ବାଣିରେ କେବଳ ଉପସ୍ଥିତ ରହିନାହାନ୍ତି,

ବରଂ ସେଥିରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିଛନ୍ତି । ସେମାନଙ୍କ ସୁଖଦୁଃଖ, ଭଲମନ୍ଦରେ ସାମିଲ୍ ହୋଇଛନ୍ତି । ବାସ୍ତବରେ ଏହା ହିଁ ହେଉଛି ଜଣେ ସାର୍ଥକ ଜନଜାତି ଗବେଷକର ବିଶେଷତ୍ୱ । ଏହି ଧରଣର ଗବେଷକ ଅନ୍ୟମାନଙ୍କ ଦ୍ୱାରା ସଂଗୃହୀତ ତଥ୍ୟକୁ ଆଧାର ନ କରି **'ଅଂଶଗ୍ରହଣ ଓ ଅନୁଧ୍ୟାନ'** *(participation-observation)* ଉପରେ ଅଧିକ ବିଶ୍ୱାସ ରଖିଥା'ନ୍ତି । ଏ ପ୍ରକାରର ଅନୁଧ୍ୟାନ ପଦ୍ଧତିରେ ଗବେଷକଙ୍କର ମୌଳିକତା ସ୍ପଷ୍ଟ ବାରିହୋଇଯାଏ । ବାସ୍ତବରେ, ଏହି ଗ୍ରନ୍ଥଟିରେ ଏହି ଧରଣର ଗବେଷଣାର ବାସ୍ନା ସ୍ପଷ୍ଟ ବାରି ହୋଇପଡୁଛି ।

ବାସ୍ତବରେ ଜୁଆଙ୍ଗଙ୍କ ପର୍ବପର୍ବାଣିକୁ ସେମାନଙ୍କ ଜୀବନଧାରାଠାରୁ ପୃଥକ କରି ଦେଖିବା ସଂଭବ ନୁହେଁ । ବର୍ଷର ବିଭିନ୍ନ ସମୟରେ ପାଳିତ ହୋଇଆସୁଥିବା ପର୍ବପର୍ବାଣିଗୁଡିକୁ ଲେଖକ ବିଭାଗୀକରଣ କରିବାକୁ ଯାଇ ୬ଟି ମୁଖ୍ୟ ବିଭାଗରେ ବିଭକ୍ତ କରିଛନ୍ତି । ସେଥିରେ ପାରିବାରିକ ପର୍ବ ବୋଲି କିଛି ନାହିଁ । ସବୁକିଛି ସମାଜଭିତ୍ତିକ । ଏହା ହିଁ ପୃଥିବୀର ଯେକୌଣସି ଜନଜାତିର ବିଶେଷତ୍ୱ । ଜୀବନର ସମସ୍ତ ସୁଖଦୁଃଖକୁ ସେମାନେ ସମବେତ ଭାବରେ ଉପଭୋଗ କରିବାର ବାର୍ତ୍ତା ବାହାର ଦୁନିଆକୁ ଦେଖାଇ ଆସିଛନ୍ତି । ଏକଥା ଖୁବ୍ ସତର୍କତାର ସହିତ ଉପଲବ୍ଧି କରିଛନ୍ତି ଶ୍ରୀଯୁକ୍ତ ପ୍ରଧାନ । ସେଥିପାଇଁ ଜୁଆଙ୍ଗ ସମାଜ ଓ ସାଂସ୍କୃତିକ ଜୀବନର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ଏ ପୁସ୍ତକରେ । ଏବଂ ବିଭିନ୍ନ ପର୍ବପର୍ବାଣିର ନିଛକ ବର୍ଣ୍ଣନା ଦେଲାବେଳେ ପ୍ରଚଳିତ ସମାଜ ଜୀବନକୁ ଯୋଡିବାକୁ ଚେଷ୍ଟା କରିଛନ୍ତି । ଶ୍ରୀଯୁକ୍ତ ପ୍ରଧାନ ଦୀର୍ଘ ସମୟ ଧରି କେନ୍ଦୁଝରରେ ବୃତ୍ତିଗତ କାର୍ଯ୍ୟରେ ବ୍ୟସ୍ତରହିବା ସତ୍ତ୍ୱେ ଜୁଆଙ୍ଗମାନଙ୍କ ସଂପର୍କରେ ଅଧ୍ୟୟନ କରିବାର ସୁଯୋଗ ପ୍ରାପ୍ତ ହୋଇଛନ୍ତି ଏବଂ ଏକ ବହୁ ମୂଲ୍ୟ ଗ୍ରନ୍ଥ ଆମ ସମସ୍ତଙ୍କୁ ଭେଟି ଦେଇଛନ୍ତି । ଏହା ଏକ ସୁଖକର ସମ୍ବାଦ ।

ଏହି ଆଲୋଚନାର ବିଶେଷତ୍ୱ ହେଲା ଏହାର ଉପସ୍ଥାପନ ଶୈଳୀ । ପ୍ରତ୍ୟେକ ପର୍ବର ପୃଥକ ବର୍ଣ୍ଣନା ଦେଲାବେଳେ ଗବେଷକ ତିନୋଟି କଥା ଉପରେ ଗୁରୁତ୍ୱ ଦେବାପରି ମନେହୁଏ । ପ୍ରଥମତଃ କ୍ଷେତ୍ର ପରିଦର୍ଶନ ଉପରେ ନିଖୁଣ ତଥ୍ୟ ପ୍ରଦାନ, ଦ୍ୱିତୀୟରେ ନିଜର ଅଂଶଗ୍ରହଣ ଓ ଅନୁଭୂତି ଆଧାରରେ ପର୍ଯ୍ୟାଲୋଚନା ଏବଂ ତୃତୀୟରେ ଧାରା ବିବରଣୀ ଦେବାଭଳି ଭାଷା ଓ ଶୈଳୀର ପ୍ରୟୋଗ । ପୁସ୍ତକଟିକୁ ପଢିଲାବେଳେ ପାଠକେ ମନେକରିବେ ସତେଯେପରି ନିଜେ ଉପସ୍ଥିତ ଥାଇ ସବୁ ତଥ୍ୟ ପାଇପାରୁଛନ୍ତି । ତେଣୁ ଯେଉଁ 'ଗ୍ଲାମର ନଥିବା ନିରସିଆ' ବିଭାଗରେ ଲେଖକ କାମ କରିଥିବା କଥା ପୁସ୍ତକ ଆରଂଭରେ (ଉତ୍ସର୍ଗ ପୃଷ୍ଠାରେ) କହିଛନ୍ତି, ସେଥିରେ ମୁଁ ଏକମତ ହୋଇପାରୁନାହିଁ । ମୋର ଦୃଢ ବିଶ୍ୱାସ ଏ ପୁସ୍ତକଟି ପଢିଲାପରେ ପାଠକଟିଏ ଜୁଆଙ୍ଗ ଅଞ୍ଚଳ ବୁଲି ଦେଖିବାକୁ ଚିନ୍ତା କରିବ, ଗବେଷକ ଗବେଷଣାର ତଥ୍ୟ ସଂଗ୍ରହ ପାଇଁ ଆଉ କ୍ଷେତ୍ର ପରିଦର୍ଶନରେ ନ ଯାଇ ଏହି ପୁସ୍ତକକୁ ସହାୟକ ଗ୍ରନ୍ଥ ଭାବରେ ବ୍ୟବହାର କରିବାକୁ ସ୍ଥିର କରିବେ, ଆଉ ସେତେବେଳେ ଏ ମନ୍ତବ୍ୟର ସତ୍ୟତା ସ୍ପଷ୍ଟ ହୋଇଯିବ । ତାହା ହିଁ ହେବ ଲେଖକଙ୍କର ସବୁଠୁ ବଡ ସଫଳତା, ଆଉ ସମସ୍ତେ ସହଜରେ ଅନୁଭବ କରିବେ ଏ ବିଭାଗର ଗ୍ଲାମର କ'ଣ?

**ପ୍ରଫେସର ଡ. ପ୍ରକାଶ ପଟ୍ଟନାୟକ**
**ଆଧୁନିକ ଭାରତୀୟ ଭାଷା ଓ ସାହିତ୍ୟିକ ଅଧ୍ୟୟନ ବିଭାଗ**
**ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ-୧୧୦୦୦୭**

# ପ୍ରଥମ ପରିଚ୍ଛେଦ

## ପୁରାତନ ଜୁଆଙ୍ଗ ଜନଜାତି

ଓଡ଼ିଶାରେ ବସବାସ କରୁଥିବା ଆଦିବାସୀଙ୍କ ମଧ୍ୟରେ ଜୁଆଙ୍ଗମାନେ ହେଉଛନ୍ତି ଏକ ପୁରାତନ ଅନୁସୂଚିତ ଜନଜାତି । କେନ୍ଦ୍ର ସରକାର ଓଡ଼ିଶାରେ ମୋଟ ୬୨ ପ୍ରକାର ଜନଜାତିଙ୍କୁ ଚିହ୍ନଟ



ଧୂଆଁପତ୍ର ଟାଣୁଛନ୍ତି ଜଣେ ଜୁଆଙ୍ଗ



ଜୁଆଙ୍ଗ ବୃଦ୍ଧା

କରିଛନ୍ତି । ଅନ୍ୟ ସାଧାରଣ ଜନଜାତିଙ୍କ ତୁଳନାରେ ଆର୍ଥିକ କ୍ଷେତ୍ରରେ ଦୁର୍ବଳ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଗମନାଗମନ ଦୃଷ୍ଟିରୁ ଅପହଞ୍ଚ ଜଙ୍ଗଲ ଓ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା କିଛି ସ୍ୱତନ୍ତ୍ର ଶ୍ରେଣୀର ଆଦିବାସୀଙ୍କୁ କେନ୍ଦ୍ର ସରକାର 'ପୁରାତନ ଜନଜାତି' *(Particularly Vulnerable Tribal Group)* ଭାବେ ଘୋଷଣା କରିଛନ୍ତି । (ବି.ଦ୍ର. : ପୂର୍ବରୁ ଏହି ଜନଜାତି ଗୋଷ୍ଠୀକୁ

'ଆଦିମ ଜନଜାତି' *(Primitive Tribal Group)* ଭାବେ ସମ୍ବୋଧନ କରାଯାଉଥିଲା । ମାତ୍ର 'ଆଦିମ' ବା '*Primitive*' ଶବ୍ଦଟିକୁ ନେଇ ବିଭିନ୍ନ ମହଲରେ ଆପତ୍ତି ଉଠିବାରୁ ସରକାର ଏହି ଶବ୍ଦ ବଦଳରେ 'ପୁରାତନ' '*Particularly Vulnerable*' ଶବ୍ଦ ବ୍ୟବହାର କରି ଆସୁଛନ୍ତି ।) ସମଗ୍ର ଦେଶରେ ମୋଟ ୭୫ଟି ସ୍ୱତନ୍ତ୍ର ଅନଗ୍ରସର ଆଦିବାସୀ ଗୋଷ୍ଠୀକୁ 'ପୁରାତନ ଜନଜାତି' ଭାବେ ଘୋଷଣା କରାଯାଇଛି । ଏହା ମଧ୍ୟରୁ ଓଡ଼ିଶାର ୧୩ଟି ଗୋଷ୍ଠୀକୁ 'ପୁରାତନ ଜନଜାତି' ଭାବେ ଚିହ୍ନିତ କରାଯାଇଛି । ସେମାନେ ହେଉଛନ୍ତି;



ଜଣେ ଜୁଆଙ୍ଗ ମହିଳା ତା' ଶିଶୁକୁ ସ୍ତନ୍ୟପାନ କରାଉଛି ।

୧. ବିର୍‌ହର
୨. ବଣ୍ଡା
୩. ଚକୋଟିଆ ଭୁଞ୍ଜିଆ
୪. ଡିଡାୟୀ
୫. ଡ଼ଙ୍ଗରିଆ କନ୍ଧ
୬. ଜୁଆଙ୍ଗ
୭. ଖଡ଼ିଆ
୮. କୁଟିଆ କନ୍ଧ
୯. ଲାଞ୍ଜିଆ ସଉରା
୧୦. ଲୋଧା
୧୧. ମାଙ୍କିରଡ଼ିଆ
୧୨. ପାଉଡ଼ି ଭୂୟାଁ
୧୩. ସଉରା ।

ବିର୍‌ହର୍ ଆଦିମ ଜନଜାତି ବିଶେଷକରି ସମ୍ବଲପୁର ଜିଲ୍ଲାରେ ବସବାସ କରୁଥିବାବେଳେ ବଣ୍ଡା ଓ ଡିଡାୟୀ ଆଦିମ ଜନଜାତି ମାଲ୍‌କାନ୍‌ଗିରି ଜିଲ୍ଲାରେ ଦେଖା ଯାଆନ୍ତି । ସେହିଭଳି ଲୋଧା ଓ ମାଙ୍କିରଡିଆମାନେ ମୟୁରଭଞ୍ଜ ଜିଲ୍ଲାରେ ବସବାସ କରୁଥିବାବେଳେ ଡଙ୍ଗରିଆ କନ୍ଧ ରାୟଗଡା ଓ କଳାହାଣ୍ଡି ଜିଲ୍ଲାରେ ଦେଖାଯାଆନ୍ତି । ଚକୋଟିଆ ଭୁଞ୍ଜିଆମାନେ ନୂଆପଡା ଜିଲ୍ଲାରେ ଏବଂ ପାଉଡି ଭୂୟାଁ ଦେବଗଡ଼ ଓ କେନ୍ଦୁଝର ଜିଲ୍ଲାରେ କିଛିମାତ୍ରାରେ ଦେଖା ଯାଆନ୍ତି । ଜୁଆଙ୍ଗମାନେ କେନ୍ଦୁଝର ଜିଲ୍ଲାରେ ଦେଖିବାକୁ ମିଳନ୍ତି । ଜୁଆଙ୍ଗମାନେ କେନ୍ଦୁଝର ଜିଲ୍ଲାର ବାଂଶପାଳ, ହରିଚନ୍ଦନପୁର, ତେଲକୋଇ ଓ ଘଟଗାଁ ବ୍ଲକ୍‌ର ପାର୍ବତ୍ୟ ଅଞ୍ଚଳରେ ବସବାସ କରନ୍ତି । କେନ୍ଦୁଝରର ମୂଳ ଜୁଆଙ୍ଗମାନେ କିଛି ମାତ୍ରାରେ ଢେଙ୍କାନାଳ ଓ ଅନୁଗୁଳର ପାଲଲହଡା ଅଞ୍ଚଳକୁ ଚାଲିଯାଇ ସେଠାରେ ବସବାସ କରି ଆସୁଛନ୍ତି । କେନ୍ଦୁଝର ଜିଲ୍ଲାର ଗୋନାସିକା ପାର୍ବତ୍ୟ ଅଞ୍ଚଳକୁ ଜୁଆଙ୍ଗମାନଙ୍କର ମୂଳ ବାସସ୍ଥଳୀ ଭାବେ ଧରାଯାଏ । ଜୁଆଙ୍ଗମାନେ ଅତି ନମ୍ର ଓ ଲାଜକୁଳା ସ୍ୱଭାବର ଅଟନ୍ତି । ସେମାନେ ଖୁବ୍ ସରଳ ଓ ଅତିଥି ପରାୟଣ ।

'ଜୁଆଙ୍ଗ' ଶବ୍ଦଟିର ଅର୍ଥ ହେଉଛି 'ମଣିଷ' । ଲିପି ନଥିଲେ ମଧ୍ୟ ଜୁଆଙ୍ଗମାନଙ୍କର ଏକ ନିଜସ୍ୱ ଭାଷା ରହିଛି । ଜୁଆଙ୍ଗମାନଙ୍କର ଭାଷା 'ଆଷ୍ଟ୍ରୋ ଏସିଆଟିକ୍ ଭାଷା' ଅନ୍ତର୍ଗତ 'ଉତ୍ତର ମୁଣ୍ଡାରି ଭାଷା ଗୋଷ୍ଠୀ' ଅନ୍ତର୍ଭୁକ୍ତ । ଭୌଗୋଳିକ ଅବସ୍ଥିତିକୁ ଭିତ୍ତିକରି ଜୁଆଙ୍ଗମାନଙ୍କୁ ସାଧାରଣତଃ ଦୁଇଟି ଶ୍ରେଣୀଭୁକ୍ତ କରାଯାଇପାରେ । ତାହା ହେଲା–

୧) ଥାନିଆ

୨)ଭାଗୁଡିଆ ।

କେନ୍ଦୁଝରର ଗୋନାସିକା ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା ମୂଳ ଜୁଆଙ୍ଗମାନଙ୍କୁ **'ଥାନିଆ'** କୁହାଯାଉଥିବାବେଳେ କେନ୍ଦୁଝରରୁ ଚାଲିଯାଇ ଢେଙ୍କାନାଳ ଜିଲ୍ଲାରେ ବସବାସ କରୁଥିବା ଜୁଆଙ୍ଗମାନଙ୍କୁ **'ଭାଗୁଡିଆ'** କୁହାଯାଏ । କେନ୍ଦୁଝର ଜୁଆଙ୍ଗମାନଙ୍କୁ ମୂଳ ଜୁଆଙ୍ଗ ଭାବେ ବିବେଚନା କରାଯାଇଥାଏ । ଗୋନାସିକା ଅଞ୍ଚଳରୁ ଜୁଆଙ୍ଗମାନେ କାହିଁକି ଢେଙ୍କାନାଳ ଓ ପାଳଲହଡା ଅଞ୍ଚଳକୁ ଚାଲିଗଲେ


ଜୁଆଙ୍ଗ ବୃଦ୍ଧା

ସେଥିନେଇ ବହୁ ରୋଚକ କାହାଣୀମାନ ରହିଛି । ପ୍ରତିବର୍ଷ ଦଶହରା ଉପଲକ୍ଷେ ଦେବୀ ଦୂର୍ଗାଙ୍କ ନିକଟରେ ବଳି ପକେଇବା ପାଇଁ କେନ୍ଦୁଝର ରାଜା ଜୁଆଙ୍ଗ ଅଞ୍ଚଳରୁ ବହୁ ସଂଖ୍ୟାରେ ନବଜାତ ଶିଶୁମାନଙ୍କୁ ସଂଗ୍ରହ କରି ଆଣିଥାନ୍ତି । କେନ୍ଦୁଝର ରାଜାଙ୍କ କୋପ ଦୃଷ୍ଟିରୁ ନିଜର ନବଜାତ ସନ୍ତାନମାନଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ପଡ଼ୋଶୀ ଢେଙ୍କାନାଳ ଜିଲ୍ଲାର ଘଞ୍ଚ ଜଙ୍ଗଲକୁ ଚାଲି ଯାଇଥାଇ ପାରନ୍ତି ବୋଲି ପୁରୁଣାକାଳର ଲୋକଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ । ୧୮୯୧ ମସିହାରେ କେନ୍ଦୁଝର ରାଜାଙ୍କ ବିରୋଧରେ 'ଭୂୟାଁ ମେଳି' ମଧ୍ୟ ଜୁଆଙ୍ଗମାନଙ୍କର ସ୍ଥାନ ପରିବର୍ତ୍ତନର ଆଉ ଏକ କାରଣ ହୋଇପାରେ ବୋଲି କିଛି ବ୍ୟକ୍ତି ମତ ଦିଅନ୍ତି । ଧରଣୀଧର ଭୂୟାଁଙ୍କ ନେତୃତ୍ୱରେ ଚାଲିଥିବା ଭୂୟାଁ ମେଳିରେ ବହୁ ଆଦିବାସୀଙ୍କ ପ୍ରାଣ ଚାଲିଗଲା । ଧରଣୀଧର ଶେଷରେ ଜୁଆଙ୍ଗମାନଙ୍କୁ ବିଦ୍ରୋହରେ ସାମିଲ୍ ହେବା ପାଇଁ ବାଧ୍ୟ କରିବାରୁ ଅଧିକାଂଶ ସରଳ, ନିଷ୍କପଟ ଜୁଆଙ୍ଗ ଏହାକୁ ଗ୍ରହଣ କରି ନଥିଲେ । ସେମାନେ ଯୁଦ୍ଧରେ ସାମିଲ୍ ନ ହୋଇ ବରଂ ଢେଙ୍କାନାଳ ଜିଲ୍ଲାର ଘଞ୍ଚ ଅରଣ୍ୟ ମଧ୍ୟକୁ ଚାଲିଯାଇ ସେଠାରେ ବସବାସ ଆରମ୍ଭ କରିଥିଲେ । ଜୁଆଙ୍ଗମାନଙ୍କ ସ୍ଥାନ ପରିବର୍ତ୍ତନ ନେଇ *N.K. Bose* ଏକ ଉଦ୍ଭଟ ଲୋକକଥା ଉଲ୍ଲେଖ କରିଛନ୍ତି ।ଜୁଆଙ୍ଗମାନଙ୍କୁ ଜଣେ କ୍ରୁର ଅତ୍ୟାଚାରୀ ରାଜା ଶାସନ କରୁଥିଲେ । ସେହି ଅତ୍ୟାଚାରୀ ରାଜାଟି ଜଣେ ବିବାହିତ ଜୁଆଙ୍ଗ ଯୁବତୀ ସହିତ ପାପ ସଂପର୍କ ରକ୍ଷା କରିବାରୁ ଜୁଆଙ୍ଗମାନେ କ୍ରୋଧିତ ହୋଇ ତାଙ୍କୁ ହତ୍ୟା କରିଦେଲେ । ରାଜାଙ୍କୁ ହତ୍ୟା କରିବା ପରେ ତାଙ୍କ ମୁଣ୍ଡକୁ ଢେଙ୍କିରେ କୁଟି ଗୁଣ୍ଡ କରି ସେହି ରାଜାଙ୍କର ମାଂସକୁ ନିଜନିଜ ଭିତରେ ଭାଗବଣ୍ଟା କରି ନେଲେ । ଏହି ରାଜାଙ୍କ ମାଂସ ଖାଇବାକୁ ସମସ୍ତ ଜୁଆଙ୍ଗମାନଙ୍କୁ କୁହାଗଲା । ମାତ୍ର କିଛି ଜୁଆଙ୍ଗ ମଣିଷ ମାଂସ ଖାଇବାକୁ ମନା କରିଦେବା ସହିତ ସେମାନେ ସେ ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ଚାଲିଗଲେ । ସଂଭବତଃ ଏହି ଧରଣର ଜୁଆଙ୍ଗମାନେ କେନ୍ଦୁଝର ରାଜ୍ୟର ଗୋନାସିକା ଅଞ୍ଚଳ ପରିତ୍ୟାଗ କରି ତତ୍କାଳୀନ ଢେଙ୍କାନାଳ ରାଜ୍ୟର ଜଙ୍ଗଲ ମଧ୍ୟକୁ ପ୍ରବେଶ କରି ସେଠାରେ ବସବାସ ଆରଂଭ କରିଥାଇ ପାରନ୍ତି ।

*(N.K. Bose, Juang Association, Man in India, vol. IX (1929)*

ଏହି ପୁରାତନ ଜୁଆଙ୍ଗ ଜନଜାତିଙ୍କ ସଂପର୍କରେ ପ୍ରଥମେ କିଛି ବିଦେଶୀ ଗବେଷକମାନେ ଗବେଷଣା କରି ବହୁ ତଥ୍ୟ ଲୋକଲୋଚନକୁ ଆଣିବାରେ ସକ୍ଷମ ହୋଇଥିଲେ । ଜୁଆଙ୍ଗମାନଙ୍କୁ ନେଇ ଅତୀତରେ ବହୁ ସଂଖ୍ୟାରେ ବିଦେଶୀ ଗବେଷକମାନେ ବିଶେଷ ଭାବେ ଆକୃଷ୍ଟ ହୋଇପାରିଛନ୍ତି । *E.A. Samuells (1856), E.T. Dalton (1872), W.W. Hunter (1877), H.H. Rishley (1891), Vivial Meik (1931), Verier Elwin (1948), Mc. Dougal (1963)*ଙ୍କ ଭଳି କିଛି ବିଦେଶୀ ଲେଖକ ଓ ଗବେଷକ ଜୁଆଙ୍ଗମାନଙ୍କ ସଂପର୍କରେ

ଅନେକ କିଛି କାର୍ଯ୍ୟ କରିଛନ୍ତି । ଏହାପରେ ଅବଶ୍ୟ ଆଉ କିଛି ଭାରତୀୟ ଗବେଷକ ଜୁଆଙ୍ଗମାନଙ୍କୁ ନେଇ ଗବେଷଣା କରିଛନ୍ତି । ତେବେ *E.A. Samuells* ପ୍ରଥମେ ୧୮୫୬ ମସିହାରେ 'ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ' ପତ୍ରିକାରେ ଜୁଆଙ୍ଗମାନଙ୍କ ସଂପର୍କରେ ଏକ ଲେଖା ପ୍ରକାଶ କରି ଏ ଜନଜାତି ସଂପର୍କରେ ବହୁ ଲୁକ୍କାୟିତ ତଥ୍ୟ ଉନ୍ମୋଚନ କରିପାରିଥିଲେ । ଏହାପରେ ୧୮୭୨ ମସିହାରେ ଅନ୍ୟ ଜଣେ ଅଣଭାରତୀୟ ଜନଜାତି ଗବେଷକ ତଥା ତତ୍କାଳୀନ ଇଂରେଜ ସରକାରଙ୍କ ସେନାଧିକାରୀ *Colonel Dalton* ଜୁଆଙ୍ଗମାନଙ୍କ ସଂପର୍କରେ *Descriptive Ethnology of Bengal (Calcutta-1872)* ପତ୍ରିକାରେ ବହୁ ଲେଖା ପ୍ରକାଶ କରିଥିଲେ । ଏହା ସେତେବେଳେ ଜୁଆଙ୍ଗମାନଙ୍କ ସଂପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରଦାନ କରିବାରେ ସହାୟକ ହୋଇପାରିଥିଲା ।

କେନ୍ଦୁଝର ଜିଲ୍ଲାର ଗୋ-ନାସିକା ପାର୍ବତ୍ୟ ଅଞ୍ଚଳ ଜୁଆଙ୍ଗମାନଙ୍କ ସୃଷ୍ଟିର ମୂଳ ସ୍ଥାନ ବୋଲି ବିଶ୍ୱାସ କରାଯାଉଛି । ଜୁଆଙ୍ଗମାନେ ନିଜକୁ ଋଷିପୁତ୍ର ବୋଲି ଦାବି କରନ୍ତି । ଅପରପକ୍ଷେ, ଏହି ଗୋ-ନାସିକା ପର୍ବତଟି ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଅଟେ । ଏଣୁ ବୈତରଣୀ ନଦୀ ସହିତ ଜୁଆଙ୍ଗମାନଙ୍କର ସଂପର୍କ ବହୁ ପୁରୁଣା ବୋଲି ବିଶ୍ୱାସ କରାଯାଏ । କେନ୍ଦୁଝରର ଗୋନାସିକା ଜୁଆଙ୍ଗ ପିଢ ଅଞ୍ଚଳରେ ବହୁ ସଂଖ୍ୟାରେ ଜୁଆଙ୍ଗ ବସବାସ କରିଥାନ୍ତି । ମାତ୍ର, ପରବର୍ତ୍ତୀ ସମୟରେ ଏହି ଗୋନାସିକା ପାର୍ବତ୍ୟ ଅଞ୍ଚଳରୁ ଜୁଆଙ୍ଗମାନେ ଅନ୍ୟାନ୍ୟ ସ୍ଥାନକୁ ସ୍ଥାନାନ୍ତରିତ ହୋଇଛନ୍ତି ।ଜୁଆଙ୍ଗମାନଙ୍କ ତତ୍କାଳୀନ ରାଜନୈତିକ ବ୍ୟବସ୍ଥା ଅନୁସାରେ ମୋଟ ୬ଟି ପିଢ ରହିଛି । ପୂର୍ବେ ପ୍ରତି ପିଢରେ ଜଣେ ପିଢ ସର୍ଦ୍ଦାର ଥିଲେ । ସେ ପିଢର ମୁଖ୍ୟ ଭାବେ କାର୍ଯ୍ୟ କରିବା ସହିତ ଗ୍ରାମଗ୍ରାମ ମଧ୍ୟରେ ଥିବା ବିବାଦର ସମାଧାନ କରୁଥିଲେ । ଅତୀତରେ ଝାଡଖଣ୍ଡ ଜୁଆଙ୍ଗ ପିଢର ଜୁଆଙ୍ଗମାନେ ଅନ୍ୟ ପାଞ୍ଚଟି ପିଢର ଜୁଆଙ୍ଗମାନଙ୍କ ତୁଳନାରେ ଉଚ୍ଚ ଶ୍ରେଣୀର ବୋଲି ଗଣାଯାଉଥିଲେ । ଏହି ଝାଡଖଣ୍ଡି ଜୁଆଙ୍ଗମାନେ ମୁଖ୍ୟତଃ ଗୋନାସିକା ଓ ଗୁପ୍ତଗଙ୍ଗା ଅଞ୍ଚଳର ଉଚ୍ଚ ପାର୍ବତ୍ୟ ଉପତ୍ୟକାରେ ବସବାସ କରିଥାନ୍ତି ।ଅନ୍ୟ ଜୁଆଙ୍ଗମାନେ ବାଂଶପାଳ ବ୍ଲକ୍ ସମେତ ତେଲକୋଇ, ହରିଚନ୍ଦନପୁର ଓ ଘଟଗାଁର ପାହାଡିଆ ଓ ଜଙ୍ଗଲପୂର୍ଣ୍ଣ ଅଞ୍ଚଳରେ ବିକ୍ଷିପ୍ତ ହୋଇ ବସବାସ କରିଥାନ୍ତି ।

## ଜୁଆଙ୍ଗ ପତ୍ର ପୋଷାକ

*(leaf apron)*

ଜୁଆଙ୍ଗମାନଙ୍କ ଅତୀତ ବଡ଼ ରୋମାଞ୍ଚକର ଓ କୌତୁହଳପ୍ରଦାୟୀ । ଆଜିକୁ ମାତ୍ର ଶହେ କିମ୍ବା ଦୁଇ ଶହ ବର୍ଷ ତଳେ ଜୁଆଙ୍ଗମାନେ ଗଛପତ୍ର ଓ ଗଛଡ଼ାଳକୁ ଅଣ୍ଟାରେ ଗୁଡେଇ ପରିଧାନ କରୁଥିଲେ ।



▶ ଭେରିଅର୍ ଏଲ୍‌ୱିନ୍‌ଙ୍କ 'ନୋଟ୍‌ସ ଅନ୍ ଦି ଜୁଆଙ୍ଗ' (ମ୍ୟାନ୍ ଇନ୍ ଇଣ୍ଡିଆ', ୧୯୪୮) ପୁସ୍ତକରେ 'ପତ୍ର ପୋଷାକ' ପରିଧାନ କରିଥିବା ଏକ ଜୁଆଙ୍ଗ ଯୁବତୀର ଚିତ୍ର

ଜୁଆଙ୍ଗ ମହିଳାମାନେ ଅଣ୍ଟାର ତଳକୁ ସବୁଜ ତାଳପତ୍ରରେ ପ୍ରସ୍ତୁତ **'ପତ୍ର ପୋଷାକ'** *(leaf apron)* ପରିଧାନ କରୁଥିଲେ । ଜୁଆଙ୍ଗ ମହିଳାମାନେ ପରିଧାନ କରୁଥିବା ଏହି ପତ୍ର ପୋଷାକକୁ **'ପଟୁଆ' (ପାତୁଆ)** କୁହାଯାଉଥିଲା ବୋଲି ତତ୍କାଳୀନ ଜଣେ ବିଦେଶୀ ଗବେଷକ ତଥା ଇଂରେଜ ସେନାଧିକାରୀ *Colonel Dalton* ପ୍ରଥମେ ସୂଚନା ଦେଇଥିଲେ । *Colonel Dalton* ୧୮୬୬ ମସିହାରେ କିଛି ସରକାରୀ କାର୍ଯ୍ୟକ୍ରମର ତଦାରଖ କରିବା ଉଦ୍ଦେଶ୍ୟରେ କେନ୍ଦୁଝରକୁ ବୁଲି ଆସିଥିଲେ । କେନ୍ଦୁଝରଗଡ଼ ଓ ବଣେଇ ରାଜ୍ୟ ମଧ୍ୟରେ ସୀମାରେଖା ବିବାଦର ସମାଧାନ କରିବା ନେଇ ଡାଲ୍‌ଟନ୍ ସାହେବ କେନ୍ଦୁଝର ଆସିଥିବା ସମୟରେ ଜୁଆଙ୍ଗ ମହିଳାମାନେ ପତ୍ର ପୋଷାକ ପରିଧାନ କରୁଥିବାର ଜାଣିବାକୁ ପାଇଥିଲେ । ଏହାପରେ ୧୮୭୨ ମସିହାରେ *Colonel Dalton* ଜୁଆଙ୍ଗ ମହିଳାମାନଙ୍କ ଏହି ପତ୍ର ପୋଷାକ ପରିଧାନ ସଂପର୍କିତ କିଛି ଫଟୋଚିତ୍ର *Descriptive Ethnology of Bengal (Calcutta-1872)* ପତ୍ରିକାରେ ପ୍ରକାଶ କରିଥିଲେ । ଏହାପରେ ଜୁଆଙ୍ଗମାନଙ୍କ ଏହି ପତ୍ର ପୋଷାକ ସଂପର୍କରେ ସାଧାରଣ ଲୋକେ ଅନେକ ସୂଚନା ପ୍ରାପ୍ତ ହୋଇଥିଲେ । ଜୁଆଙ୍ଗ ରମଣୀମାନେ ଅଣ୍ଟା ତଳକୁ ଶାଳ, ଜାମୁ, କୁରେଇ, ମହୁଲ ଗଛର ଛୋଟଛୋଟ ଡ଼ାଳ ଓ ପତ୍ରକୁ ଦଉଡିରେ ଗୁଡେଇ ପିନ୍ଧୁଥିଲେ । ତାଳପତ୍ରଗୁଡିକ ଶୁଷ୍କ ଏବଂ ଅପରିଛନ୍ନ ହୋଇଯାଉଥିବାରୁ ପ୍ରତିଦିନ ଜୁଆଙ୍ଗ ଯୁବତୀମାନେ ପୋଷାକ ପରିବର୍ତ୍ତନ କରୁଥିଲେ । ଏହା ଫଳରେ ସେମାନଙ୍କର ପୋଷାକ ସର୍ବଦା ସବୁଜ ଓ ସତେଜ ରହିପାରୁଥିଲା । ଜୁଆଙ୍ଗ ମହିଳାମାନେ ଶରୀରର ଉପର ଅଂଶରେ କୌଣସି ପୋଷାକ ପରିଧାନ କରୁ ନଥିଲେ । ପୋଷାକ ପରିଧାନ କଲେ ସେମାନଙ୍କ ଉପରେ ଠାକୁରାଣୀ କୋପ କରିବେ ବୋଲି ଜୁଆଙ୍ଗ ମହିଳାମାନେ ବିଶ୍ୱାସ କରୁଥିଲେ । ଏଣୁ ସେମାନେ ଶରୀରକୁ ପୋଷାକ ଦ୍ୱାରା ସଂପୂର୍ଣ୍ଣ ଆବରଣ କରିବାକୁ ଉଚିତ୍ ମଣୁ ନଥିଲେ । ତେବେ ଶରୀରର ଉପର ଭାଗରେ ଜୁଆଙ୍ଗ ରମଣୀମାନେ ନାନା ପ୍ରକାର ମାଳି ପିନ୍ଧୁଥିଲେ । କାନରେ, ନାକରେ ଓ ଶରୀରର ଅନ୍ୟାନ୍ୟ ଅଙ୍ଗରେ ନାନା ପ୍ରକାର ଅଳଙ୍କାର ମଧ୍ୟ ପିନ୍ଧୁଥିଲେ । କେନ୍ଦୁଝର ଷ୍ଟେଟ୍‌ର ତତ୍କାଳୀନ ପ୍ରଶାସକ ସୁପରିଟେଣ୍ଡେଣ୍ଟ କ୍ୟାପ୍‌ଟେନ୍ ଜେ. ଜନ୍‌ଷ୍ଟନ୍‌ଙ୍କ ଉଦ୍ୟମରେ ଜୁଆଙ୍ଗମାନଙ୍କ ମଧ୍ୟରୁ ଏହି ପତ୍ର ପୋଷାକ ପରିଧାନ ବ୍ୟବସ୍ଥାକୁ ଉଚ୍ଛେଦ କରାଯାଇପାରିଥିଲା ।

*E.T. Dalton, Descriptive Ethnology of Bengal (Calcutta-1872) p.153*

ଏହି ପତ୍ରବସନା ଜୁଆଙ୍ଗ ମହିଳାଙ୍କ ସଂପର୍କରେ ବ୍ୟାସକବି ଫକୀର ମୋହନ ସେନାପତି ମଧ୍ୟ ତାଙ୍କର ବହୁ ଚର୍ଚ୍ଚିତ **'ଅବସର ବାସରେ'** (୧୯୦୮) କବିତା ସଂକଳନରେ ଉଲ୍ଲେଖ କରିଛନ୍ତି । ସେ ଏମାନଙ୍କୁ ନେଇ **'ପାତୁଆ ପାତୁଈ'** ନାମରେ ଏକ କବିତା ରଚନା କରି ସେମାନଙ୍କ ପତ୍ର ପରିଧାନ (ପତ୍ର ପୋଷାକ) ସଂପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରିପାରିଛନ୍ତି । ଫକୀର ମୋହନ ସେନାପତି

ସନ ୧୮୯୦-୯୧ ମଧ୍ୟରେ ଗୋଟିଏ ବର୍ଷ ପାଇଁ କେନ୍ଦୁଝର ରାଜାଙ୍କ ମ୍ୟାନେଜର ଭାବେ କାର୍ଯ୍ୟ କରିଥିଲେ । ଏହି ସମୟଟି ତାଙ୍କ ପାଇଁ ବେଶ୍ ଘଟଣାବହୁଳ ଥିଲା । ଧରଣୀଧରଙ୍କ 'ଭୂୟାଁ ମେଳି' ଦମନ ପାଇଁ ଫକୀର ମୋହନ କେନ୍ଦୁଝରରେ ବେଶ୍ ପରିଚିତ ହୋଇଥିଲେ । ଏହାବ୍ୟତୀତ ସେ ଆଦିବାସୀ ଜନଜୀବନ ସଂପର୍କରେ ମଧ୍ୟ ବିଶେଷ ଜ୍ଞାନ ହାସଲ କରିପାରିଥିଲେ । ଫକୀରମୋହନ ତତ୍କାଳୀନ ଜୁଆଙ୍ଗମାନଙ୍କ ସଂପର୍କରେ ଯାହା କିଛି ଅଭିଜ୍ଞତା ହାସଲ କରିଥିଲେ ତାହା ତାଙ୍କ ଏହି କବିତାଟିରୁ ଜଣାପଡିଥାଏ ।

ଜୁଆଙ୍ଗମାନଙ୍କ ଗାଁ କହିଲେ ଦୁଇ ଚାରୋଟି ପରିବାରକୁ ବୁଝାଉଥିଲା । ଜୁଆଙ୍ଗମାନେ ଅତୀତରେ ଏକ ଭ୍ରମଣକାରୀ ବା ଯାଯାବର ଶ୍ରେଣୀର ଜନଜାତି ଥିଲେ ଏଲ୍‌ୱିନ୍ ଉଲ୍ଲେଖ କରିଛନ୍ତି । ଖାଦ୍ୟ, ପାନୀୟ ଜଳ ଓ କୃଷି ଉପଯୋଗୀ ଜମି ଅନ୍ୱେଷଣରେ ସେମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନ ପରିବର୍ତ୍ତନ କରିଥାନ୍ତି ।ଗୋଟିଏ ସ୍ଥାନରେ ବେଶ୍ କିଛି ଦିନ ବସବାସ କରିବା ପରେ ସେଠାକାର ଚାଷଜମିର ଉର୍ବରତା ହ୍ରାସ ପାଇବା ଲକ୍ଷ୍ୟ କରି ସେମାନେ ତୁରନ୍ତ ସ୍ଥାନ ବଦଳେଇଥାନ୍ତି । ନୂଆ ସ୍ଥାନ ଅନ୍ୱେଷଣ କରିବା ପରେ ସେଠାରେ ତାଙ୍କର ପୂଜକ (ନାଗମ୍) ପୂଜାର୍ଚ୍ଚନା କରି ନୂତନ ବସତି ସ୍ଥାପନ କରନ୍ତି । ମାତ୍ର, ବର୍ତ୍ତମାନ ସମୟରେ ଜୁଆଙ୍ଗମାନେ ଆଉ ଯାଯାବର ହୋଇ ନାହାନ୍ତି । ସେମାନେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥାୟୀ ଭାବେ ଗାଁ ସ୍ଥାପନ କରି ରହି ଆସୁଛନ୍ତି । ଜୁଆଙ୍ଗମାନେ ଖୁବ୍ ଛୋଟ ଛୋଟ ଘର ନିର୍ମାଣ କରୁଥିଲେ । ଜୁଆଙ୍ଗମାନଙ୍କର କୁଡ଼ିଆକୁ ପୃଥିବୀର ସବୁଠୁ ଛୋଟ ଆବାସିକସ୍ଥଳୀ ବୋଲି *Colonel Dalton* ବର୍ଣ୍ଣନା କରିଛନ୍ତି ।

## ଗୋନାସିକା ଓ ଋଷିପୁତ୍ର ଜୁଆଙ୍ଗ

ଜୁଆଙ୍ଗମାନେ ନିଜକୁ 'ଋଷିପୁତ୍ର' ଭାବେ ଘୋଷଣା କରିଥାନ୍ତି । ଏ ପୃଥିବୀ ପୃଷ୍ଠରେ ପ୍ରଥମେ ଜୁଆଙ୍ଗମାନଙ୍କର ଆବିର୍ଭାବ ଘଟିଥିଲା ବୋଲି ସେମାନଙ୍କର ବିଶ୍ୱାସ । ଋଷିପୁତ୍ର ହୋଇଥିବାରୁ ଜୁଆଙ୍ଗମାନେ ନିଜକୁ ଶୁଦ୍ଧ ପବିତ୍ର ବୋଲି ଭାବିଥାନ୍ତି । ପୃଥିବୀ ସର୍ଜନା ଓ ମଣିଷମାନଙ୍କ ସୃଷ୍ଟିକୁ ନେଇ ଜୁଆଙ୍ଗମାନଙ୍କର ଅନେକ ଲୋକକାହାଣୀ ଓ ଲୋକବିଶ୍ୱାସ ରହିଛି । ଜୁଆଙ୍ଗମାନଙ୍କ ବିଶ୍ୱାସ ଅନୁସାରେ, ଧରମ୍ ଦେବତା (ସୂର୍ଯ୍ୟଦେବତା) ପ୍ରଥମେ ଏ ପୃଥିବୀକୁ ସୃଷ୍ଟି କରିଛନ୍ତି ଏବଂ ପୃଥିବୀକୁ ସୃଷ୍ଟି କରିବା ପରେ ଧରମ୍ ଦେବତା ପ୍ରଥମ ଦଂପତି ଋଷି ଓ ଋଷିଣୀଙ୍କୁ ସୃଷ୍ଟି କଲେ । ଆଉ ଏ ସମସ୍ତ ଜୁଆଙ୍ଗମାନେ ହେଉଛନ୍ତି ଏହି ଋଷି-ଋଷିଣୀଙ୍କ ବଂଶଧର । ଏହି ଋଷି ଓ ଋଷିଣୀ ଦଂପତି ଗୋନାସିକା ପାର୍ବତ୍ୟ ଅଞ୍ଚଳର ଏକ ଛୋଟ ପାହାଡ଼ '**ଋଷିଟାଙ୍ଗର**'ରେ ବାସ କରୁଥିଲେ । ସେତେବେଳକୁ ସମଗ୍ର ପୃଥିବୀ ଜଳମଗ୍ନ ଥିଲା । ଧରମ୍ ଦେବତା ପୃଥିବୀକୁ କଠିନ କରିବାକୁ ଇଛା କଲେ । ଋଷି

ପୁତ୍ରର ରକ୍ତରେ ପୃଥିବୀ କଠିନ ହୋଇପାରିବ ବୋଲି ଧରମ୍ ଦେବତା ଜାଣିବାକୁ ପାଇଲେ । ଏଣୁ ଧରମ୍ ଦେବତା ରଷି ଓ ରଷିଣୀକୁ ଏକ ପୁତ୍ର ସନ୍ତାନ ଜନ୍ମ ଦେବାକୁ ନିର୍ଦ୍ଦେଶ ଦେଲେ । ଧରମ୍ ଦେବତାଙ୍କ ନିର୍ଦ୍ଦେଶମତେ ରଷି ଏକ ପୁତ୍ର ସନ୍ତାନ ଜନ୍ମ ଦେଲେ । ତେବେ ପୁତ୍ରକୁ ମାରି ରକ୍ତ ବାହାର କରିବାକୁ ରଷି ଅନିଚ୍ଛା ପ୍ରକାଶ କରିବାରୁ ଧରମ୍ ଦେବତା ଏକ ବାଘ ସୃଷ୍ଟି କଲେ । ମାତ୍ର, ଧନୁର୍ଦ୍ଧର



ବୈତରଣୀର ଉତ୍ପତ୍ତି ସ୍ଥଳ: ଜୁଆଙ୍ଗମାନଙ୍କ ଆଦିଭୂମି ଗୋନାସିକା



ଗୋନାସିକାର ବୈତରଣୀ ମାତା

ଋଷିପୁତ୍ର ଏତେ ଶକ୍ତିଶାଳି ଥିଲା ଯେ, ବାଘ ତାକୁ ଭୟ କରୁଥିଲା । ଏହା ଜାଣିପାରି ଧରମ୍ ଦେବତା ପୁତ୍ରକୁ ନିରସ୍ତ୍ର ଅବସ୍ଥାରେ ଝରଣାରେ ଗାଧୋଇବାକୁ ଋଷିଙ୍କୁ ନିର୍ଦ୍ଦେଶ ଦେଲେ । ଋଷିର କଥା ମାନି ପୁତ୍ର ବିନା ଧନୁଶରରେ ଝରଣାରେ ଗାଧାଉଥିବାବେଳେ ବାଘ ଆସି ତାଙ୍କୁ ମାରିଦେଲା । ଋଷି ପୁତ୍ର ମରିଗଲା ପରେ ତାର ମାଂସ ଓ ରକ୍ତକୁ ପୃଥିବୀର ବିଭିନ୍ନ ଭାଗରେ ସିଞ୍ଚନ କରାଯିବା ପରେ ପୃଥିବୀ କଠିନ ରୂପ ଧାରଣ କଲା । ଏଭଳି ଭାବେ ଆଜିର ଏହି ପୃଥିବୀ ସୃଷ୍ଟି ହୋଇଛି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ପୃଥିବୀ ସୃଷ୍ଟିକୁ ନେଇ ଆଉ ଏକ ଜୁଆଙ୍ଗ କାହାଣୀ ରହିଛି । ଦିନେ ଋଷି ଗୋନାସିକା ନିକଟସ୍ଥ 'ଋଷିଟାଙ୍ଗର'ରେ ତପସ୍ୟାରେ ମଗ୍ନ ଥିଲେ । ଏହି ସମୟରେ ଏକ ଅସୁର କନ୍ୟା ସୁନ୍ଦରୀ ନାରୀ ରୂପ ଧାରଣ କରି ଋଷିଙ୍କୁ ବିବାହ କରିବାକୁ ବାଧ୍ୟ କଲା । ପରେ ଋଷି ଓ ଅସୁର କନ୍ୟା ମଧ୍ୟରେ ବିବାହ ଅନୁଷ୍ଠିତ ହେଲା ଏବଂ ସେମାନଙ୍କ ଗର୍ଭରୁ ସାତୋଟି ପୁତ୍ର ଓ ସାତ କନ୍ୟା ଜାତ ହେଲେ । ଏହି ଋଷି ପୁତ୍ର ଓ କନ୍ୟାମାନେ ହେଉଛନ୍ତି ଜୁଆଙ୍ଗମାନଙ୍କର ପୂର୍ବଜ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେତେବେଳକୁ ଗୋନାସିକା ବ୍ୟତୀତ ସମଗ୍ର ପୃଥିବୀ ଜଳମଗ୍ନ ଥିଲା । ଧରମ୍ ଦେବତା ପୃଥିବୀକୁ କଠିନ ଓ ସମତଳ କରିବାକୁ ଇଛା କରି ଏକ ଗାଈକୁ ହତ୍ୟା କରି ତାର ରକ୍ତ ସିଞ୍ଚନ କରିବାକୁ ଋଷିଙ୍କୁ ନିର୍ଦ୍ଦେଶ ଦେଲେ । ଧରମ୍ ଦେବତା କଥା ମାନି ଋଷି ଏକ ଗାଈକୁ ହତ୍ୟା କରି ତାର ରକ୍ତକୁ ଜଳରେ ସିଞ୍ଚନ କରିବା ପରେ ପୃଥିବୀ କଠିନ ରୂପ ଧାରଣ କଲା । ଏହାପରେ ଋଷି ମୃତ ଗାଈର ମୁଣ୍ଡକୁ ନିକଟସ୍ଥ ପାହାଡରେ ପୋତିଦେଲେ । ମାତ୍ର, ଆଶ୍ଚର୍ଯ୍ୟ ସେଇ ମୃତ ଗାଈ ମୁଣ୍ଡରେ ଥିବା ଦୁଇ ନାକପୁଡାରୁ ରକ୍ତ ବଦଳରେ ପାଣି ବହିବାକୁ ଲାଗିଲା । ଏହି ଗାଈ ନାକରୁ ପ୍ରବାହିତ ହେଉଥିବା ଜଳରାଶୀରୁ ବୈତରଣୀ ନଦୀ ସୃଷ୍ଟି ହୋଇଛି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

*('Notes on the Juang' Man in India V. Elwin-1948)*

## ଜୁଆଙ୍ଗଙ୍କ 'ଗୋତ୍ର' (କ୍ଲାନ୍)

*(clans of the juang)*

ଜୁଆଙ୍ଗମାନଙ୍କର ନିଜନିଜର ସ୍ୱତନ୍ତ୍ର ଗୋତ୍ର ରହିଛି । ଜୁଆଙ୍ଗ ସମାଜରେ ବିଭିନ୍ନ ପ୍ରକାର ଗୋତ୍ର ଦୃଷ୍ଟିଗୋଚର ହୁଏ । ବୃକ୍ଷ, ଜୀବଜନ୍ତୁ, ପାହାଡ, ଝରଣା, ମହାଜାଗତିକ ବସ୍ତୁ ଅନୁସାରେ ଜୁଆଙ୍ଗମାନଙ୍କର ଗୋତ୍ର ସୃଷ୍ଟି ହୋଇଛି । ଗୋତ୍ର ଅନୁସାରେ ଜୁଆଙ୍ଗମାନଙ୍କର ନାମକରଣ ହୋଇଥାଏ । ଉଦାହରଣସ୍ୱରୂପ ଟାଙ୍ଗରପଡିଆ ଜୁଆଙ୍ଗମାନଙ୍କର ଗୋତ୍ର ହେଉଛି ଟାଙ୍ଗର (ଏକ

ପଥର) । ଏଣୁ ଏହି ପଥର (ଟାଙ୍ଗର) ନାମାନୁସାରେ ଏମାନଙ୍କର ନାମକରଣ କରାଯାଇଛି । ଜୁଆଙ୍ଗମାନେ ବାଘ, ଭାଲୁ, ଛେଳି, କୁକୁର, ନାଗ, ମାଛ, କଇଁଛ, ଏଣ୍ଡୁଅ, ଗୁଣ୍ଡୁଚିମୂଷା ଆଦି ଜୀବଜନ୍ତୁ, ସୂର୍ଯ୍ୟ, ଚନ୍ଦ୍ର ଆଦି ମହାଜାଗତିକ ବସ୍ତୁ, ଜଡ଼ାଗଛ, ଶାଳ, ମହୁଲ ଭଳି ନାନା ପ୍ରକାର ବୃକ୍ଷ, ବିଭିନ୍ନ ପ୍ରକାର ଫୁଲ ଓ ବିଭିନ୍ନ ପକ୍ଷୀ, ପାହାଡ, ପର୍ବତଙ୍କୁ ନିଜ ଗୋଷ୍ଠୀର ଗୋତ୍ର ବା ସନ୍ତକ ଭାବେ ଗ୍ରହଣ କରିଥାନ୍ତି । ଏମାନେ ନିଜ ଗୋତ୍ରର ଜୀବଜନ୍ତୁଙ୍କୁ ଆଘାତ ନକରି ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଗୋତ୍ର ବା ସନ୍ତକ ଅନୁସାରେ ଜୁଆଙ୍ଗମାନେ ବିଭାଜିତ ହୋଇ ବସତି ସ୍ଥାପନ କରିଥାନ୍ତି । ସମଗୋତ୍ରୀ ଜୁଆଙ୍ଗ ମଧ୍ୟରେ ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇ ନଥାଏ ।

## ଜୁଆଙ୍ଗମାନଙ୍କ ବାସସ୍ଥଳୀ

*(habitat)*

ଜୁଆଙ୍ଗମାନଙ୍କର ଜୀବନଶୈଳୀ ସରଳ ଓ ନିରାଡମ୍ବର । ଜୁଆଙ୍ଗମାନେ ସାଧାରଣତଃ ପାହାଡ ଓ ଜଙ୍ଗଲପୂର୍ଣ୍ଣ ଅଞ୍ଚଳରେ ବସବାସ କରିଥାନ୍ତି । ସେମାନେ ସମତଳ ଭୂମି ଅପେକ୍ଷା ପାହାଡର ଶୀର୍ଷ ଦେଶ କିମ୍ବା ଢାଲୁରେ ରହିବାକୁ ପସନ୍ଦ କରିଥାନ୍ତି । ଝରଣା କିମ୍ବା ଜଳଉତ୍ସ ଥିବା ପାହାଡିଆ



▶ ଜୁଆଙ୍ଗ ଘର



**ଜଣେ ଜୁଆଙ୍ଗ ମହିଳା ତା' ନିଜ ଘର ମଧ୍ୟରେ ବସି ଜଙ୍ଗଲୀ କୋଳି ଖାଉଛି**

ଅଞ୍ଚଳକୁ ଜୁଆଙ୍ଗମାନେ ନିଜର ଆବାସିକ ସ୍ଥଳି ଭାବେ ଚୟନ କରିଥାନ୍ତି । ପୂର୍ବେ ଜୁଆଙ୍ଗମାନେ ଯାଯାବର ପ୍ରକୃତିର ଥିଲେ । ଖାଦ୍ୟ ଓ ଚାଷ ଜମିର ଅନ୍ୱେଷଣରେ ଏମାନେ ସ୍ଥାନ ପରିବର୍ତ୍ତନ କରୁଥିଲେ । ମାତ୍ର, ଏବେ ଏମାନେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥାୟୀ ଭାବେ ବସତି ସ୍ଥାପନ କରି ରହି ଆସୁଛନ୍ତି । ସମାନ ଗୋତ୍ରର କିଛି ଜୁଆଙ୍ଗ ଗୋଟିଏ ଗ୍ରାମରେ ଏକତ୍ର ବାସ କରିଥାନ୍ତି । ଅତୀତରେ ଚାରି ପାଞ୍ଚୋଟି ଘରକୁ ନେଇ ଏକ ଜୁଆଙ୍ଗ ବସତି ଗଢି ଉଠିଥିଲା । ମାତ୍ର, ଏବେ ଜୁଆଙ୍ଗମାନଙ୍କ ଗାଁର କଳେବର ବୃଦ୍ଧି ପାଇଛି । ଗୋଟିଏ ଗୋଟିଏ ଜୁଆଙ୍ଗ ଗାଁରେ ଦଶରୁ କୋଡିଏ ପରିବାର ବାସ କରୁଛନ୍ତି । ଅତୀତରେ ଜୁଆଙ୍ଗମାନଙ୍କର ଘରଗୁଡିକ ଏକ ନିର୍ଦ୍ଦିଷ୍ଟ ଦିଗକୁ ମୁହଁ କରି ରହିଥିବାର ଦେଖାଯାଉ ନଥିଲା । ଏଣୁ ଗାଁରେ ଦାଣ୍ଡର ଅବସ୍ଥିତି ପ୍ରାୟ ନଥିଲା କହିଲେ ଚଳେ । ମାତ୍ର, ଏବେ ଧାଡିଧାଡି ହୋଇ ଘରଗୁଡିକ ନିର୍ମାଣ କରାଯାଇଥିବା ଦେଖାଯାଏ । ମାଟି ଓ କାଠରେ ଛୋଟଛୋଟ କୁଡିଆ ନିର୍ମାଣ କରି ଜୁଆଙ୍ଗମାନେ ସେଥିରେ ଆଶ୍ରୟ ନେଇଥାନ୍ତି । ଜୁଆଙ୍ଗମାନେ କାଠ ଏବଂ ବାଉଁଶକୁ ଭୂମିରେ ପୋତି କାଂଥ ନିର୍ମାଣ କରନ୍ତି ଏବଂ ପରେ ସେଥିରେ ମାଟି ଓ ଗୋବର ମିଶା

କାଦୁଅ ବୋଳି ଘର ନିର୍ମାଣ କରନ୍ତି । ଘରଗୁଡିକର କାନ୍ଥରେ ଝରକା ନଥାଏ । କେବଳ ସମ୍ମୁଖ ଭାଗରେ ଗୋଟିଏ ଦରଜା ଥାଏ ।

ଜୁଆଙ୍ଗମାନଙ୍କର ଗୃହଗୁଡିକ ଖୁବ୍ ଛୋଟ ଏବଂ ଏକକ କୋଠରୀବିଶିଷ୍ଟ ଅଟେ । ଜୁଆଙ୍ଗମାନଙ୍କର ଏହି ଝାଟିମାଟିର ନିର୍ମିତ ଏକକ ଘରକୁ ମୁଖ୍ୟତଃ ଚାରିଗୋଟି ଭାଗରେ ବିଭକ୍ତ କରାଯାଇପାରେ ।

୧. ଭଣ୍ଡାର ଘର *(store room)*

୨. ଶୋଇବା ଘର *(bedroom)*

୩. ବସାଉଠା ସ୍ଥାନ *(drawing room)*

୪. ରୋଷେଇ ଘର *(kitchen room)*

ସବୁଠୁ ମଜାର କଥା ହେଉଛି, ଗୋଟିଏ ମାତ୍ର ଘରକୁ ଚାରି ଭାଗରେ ବିଭକ୍ତ କରି ଜୁଆଙ୍ଗମାନେ ସେଇଠି ଶୋଇବାଠାରୁ ଆରଂଭ କରି ଚୂଲି ଜାଳିବା, ରୋଷେଇ କରିବା, ଖାଇବା, ପରିବା କାଟିବା, ବେସରବାଟିବା, ଖାଦ୍ୟଶସ୍ୟ ଗଛିତ ରଖିବା ଆଦି ଯାବତୀୟ କାର୍ଯ୍ୟ କରିଥାନ୍ତି । ଏଥିପାଇଁ ସ୍ୱତନ୍ତ୍ର ଭାବେ ଚାରୋଟି ବଖରା ନିର୍ମିତ ହୋଇ ନଥାଏ । ଘରଟିର ଗୋଟିଏ ଭାଗରେ କାଠ, ବାଉଁଶ ନିର୍ମିତ ଏକ ଭାଡି ନିର୍ମିତ ହୋଇଥାଏ, ଯେଉଁଥିରେ ଧାନ, ସୋରିଷ, ମକା, ମାଣ୍ଡିଆ, ବାଜରା, ରାଶି ଆଦି ଶସ୍ୟ ଗଚ୍ଛିତ ରହିଥାଏ । ଘରଟିର ଏହି ସ୍ଥାନ ହିଁ ଭଣ୍ଡାର ଘର । ଘରଟିର ଅନ୍ୟ ଏକ ଭାଗରେ ଚୂଲି ପରାଯାଇଥାଏ । ସେଠାରେ ହାଣ୍ଡି, ମାଠିଆ ଓ ବାସନକୁସନ ରହିଥାଏ । ଘରର



ଜୁଆଙ୍ଗ ଘରର ଭିତର ଦୃଶ୍ୟ



ଏକ ଜୁଆଙ୍ଗ ଗାଁର ଦୃଶ୍ୟ

ଏହି ଅଂଶଟିକୁ ରୋଷେଇ ଘର ବୋଲି ଧରାଯାଇଥାଏ । ଘରଟିର ମଧ୍ୟ ଭାଗ ଶୟନ ସ୍ଥଳ ଏବଂ ବସାଉଠା ସ୍ଥଳ ଭାବେ ବ୍ୟବହାର କରାଯାଇଥାଏ । ମୁଖ୍ୟ ଘରର ସମ୍ମୁଖରେ କିମ୍ବା କୌଣସି ଏକ ପାର୍ଶ୍ୱରେ ଘୁଷୁରିମାନଙ୍କ ରହିବା ପାଇଁ ଏକ ଛୋଟ ଘୁଷୁରି ଘର, ଛେଳି, ମେଣ୍ଢା ଓ ଗୋରୁମାନଙ୍କ ପାଇଁ ଗୁହାଳ ନିର୍ମିତ ହୋଇଥାଏ । କୁକୁଡା, ବତକ ଆଦି ଗୃହପାଳିତ ପକ୍ଷୀଙ୍କ ପାଇଁ ଛୋଟଛୋଟ ଘର ମଧ୍ୟ ନିର୍ମିତ ହୋଇଥାଏ ।

ଗାଁର ଠିକ୍ କେନ୍ଦ୍ର ଭାଗରେ ମଣ୍ଡଘର ବା ମଜାଙ୍ଗ *(youth dormitory)* ରହିଥାଏ । ମଣ୍ଡଘରଟି ଗାଁର ସାଧାରଣ ଜୁଆଙ୍ଗ ବାସଗୃହ ଅପେକ୍ଷା ବଡ଼ ଆକାରର ହୋଇଥାଏ । ଜୁଆଙ୍ଗ ଗାଁମାନଙ୍କରେ ଜୁଆଙ୍ଗମାନଙ୍କ ସମେତ ଅନ୍ୟ ସଂପ୍ରଦାୟର ଲୋକ ମଧ୍ୟ ବସବାସ କରୁଥିବାର ଦେଖାଯାଏ । ଜୁଆଙ୍ଗମାନଙ୍କ ସହିତ ଗଉଡ, ତେଲି, ପାଣ ଓ ଅନ୍ୟାନ୍ୟ ସାଧାରଣ ବର୍ଗର ଲୋକେ ମଧ୍ୟ ବସବାସ କରି ଆସୁଛନ୍ତି । ଅଧିକାଂଶ ଜୁଆଙ୍ଗ ଗ୍ରାମଗୁଡିକ ଏକଗୋତ୍ରୀ ବା ସମଗୋତ୍ରୀ । ଏଣୁ ଗୋଟିଏ ଗାଁର ସମାନ ଗୋତ୍ରୀଙ୍କ ମଧ୍ୟରେ ବିବାହ ସଂଭବ ହୋଇ ନଥାଏ ।

ଅତୀତରେ ଜୁଆଙ୍ଗମାନେ ବାରମ୍ବାର ସ୍ଥାନ ପରିବର୍ତ୍ତନ କରିବାରେ ଖୁବ୍ ଅଭ୍ୟସ୍ତ ଥିଲେ । ଗୋଟିଏ ଗ୍ରାମରେ ବହୁଦିନ ଧରି ରହିଲେ ଶୁଭଙ୍କର ନୁହେଁ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରୁଥିଲେ । ପୋଡୁଚାଷକରି 'ତଇଳା'ର ଉର୍ବରତା ହ୍ରାସ ପାଇଯିବା, ଫସଲ ଅମଳ ଭଲ ନ ହେବା, ନାନା ପ୍ରକାର ରୋଗବଇରାଗ ମାଡି ଆସିବା, ଜଙ୍ଗଲୀ ହିଂସ୍ରଜନ୍ତୁ ଭୟ କିମ୍ବା ଅନ୍ୟାନ୍ୟ କାରଣରୁ ଜୁଆଙ୍ଗମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନ ପରିବର୍ତ୍ତନ କରିଥାନ୍ତି । ଏଣୁ ପ୍ରତି ଚାରି, ପାଞ୍ଚ ବର୍ଷ ବ୍ୟବଧାନରେ ସେମାନେ ନୂତନ ସ୍ଥାନ ଅନ୍ୱେଷଣ କରି ସେଠାରେ ବସବାସ ଆରମ୍ଭ କରୁଥିଲେ । ଗାଁର ମଣ୍ଡଘରେ ବସି ଗାଁ ପଧାନ, ବୁଇତା (ନାଗମ୍) ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ନୂତନ ସ୍ଥାନ ପରିବର୍ତ୍ତନର ନିଷ୍ପତ୍ତି ନେଉଥିଲେ ।



ଏକ ଜୁଆଙ୍ଗ ଗାଁର ଦୃଶ୍ୟ

## ଜୁଆଙ୍ଗ ଜନସଂଖ୍ୟା

*(population)*

ଜୁଆଙ୍ଗମାନେ ବିଶେଷକରି ଓଡ଼ିଶାର କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାରେ ଦେଖିବାକୁ ମିଳନ୍ତି । ଏହାବ୍ୟତୀତ ରାଜ୍ୟର ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ କିଛି ସଂଖ୍ୟାରେ ଜୁଆଙ୍ଗମାନେ ଦୃଷ୍ଟିଗୋଚର ହୋଇଥାନ୍ତି । ବିଭିନ୍ନ ବର୍ଷର ଜୁଆଙ୍ଗ ଜନସଂଖ୍ୟାକୁ ଲକ୍ଷ୍ୟ କଲେ କେବେକେବେ ସେମାନଙ୍କ ସଂଖ୍ୟା ଅହେତୁକ ଭାବେ ହ୍ରାସ ପାଇଥିବା ଜଣାଯାଏ । ୧୮୯୧ ମସିହାରେ ସେମାନଙ୍କ ସଂଖ୍ୟା ମାତ୍ର ୯,୧୭୩ ଥିବାବେଳେ ୧୯୧୧ ମସିହାରେ ଏହା ବୃଦ୍ଧି ପାଇ ୧୨,୮୨୩ ହୋଇଥିଲା । ମାତ୍ର, ୧୯୨୧ ମସିହାରେ ଏହା ହ୍ରାସ ପାଇ ୧୦,୪୫୪ରେ ପହଞ୍ଚିଥିଲା । ସେହିଭଳି ୧୯୨୧ ମସିହା ପରଠାରୁ ଜୁଆଙ୍ଗ ଜନସଂଖ୍ୟା ନିୟମିତ ଭାବେ ବୃଦ୍ଧି ପାଇଥିବା ଲକ୍ଷ୍ୟ କରାଯାଇଥିଲା । ୧୯୪୧ ମସିହାରେ ଏହା ବୃଦ୍ଧି ପାଇ ୧୭,୦୩୨ରେ ପହଞ୍ଚିଥିଲା । ମାତ୍ର, ଆଶ୍ଚର୍ଯ୍ୟଜନକ ଭାବେ ପରବର୍ତ୍ତୀ ଜନଗଣନା ରିପୋର୍ଟ ଅନୁସାରେ ୧୯୫୧ ମସିହାରେ ସେମାନଙ୍କ ସଂଖ୍ୟା ପୁଣି ହ୍ରାସ ପାଇ ୧୨,୫୫୯ ହୋଇଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ସେମାନଙ୍କ ସଂଖ୍ୟା ଏକ ନିର୍ଦ୍ଦିଷ୍ଟ ଓ ସ୍ୱଳ୍ପ ହାରରେ ବୃଦ୍ଧି ପାଇବାରେ ଲାଗିଛି । ତେବେ ଅନ୍ୟ ସଂପ୍ରଦାୟର ଜନସଂଖ୍ୟା ବୃଦ୍ଧିର ହାର ତୁଳନାରେ ଜୁଆଙ୍ଗ ଜନସଂଖ୍ୟା ବୃଦ୍ଧିର ହାର ନୈରାଶ୍ୟଜନକ । ନିମ୍ନରେ ବିଭିନ୍ନ ବର୍ଷର ଜନଗଣନା ରିପୋର୍ଟ ଅନୁସାରେ ଜୁଆଙ୍ଗ ଜନସଂଖ୍ୟାର ଏକ ଚିତ୍ର ଦିଆଗଲା ।

| ବର୍ଷ | ଜୁଆଙ୍ଗ ଜନସଂଖ୍ୟା |
|---|---|
| ୧୮୯୧ | ୦୯,୧୭୩ |
| ୧୯୦୧ | ୧୧,୧୫୯ |
| ୧୯୧୧ | ୧୨,୮୨୩ |
| ୧୯୨୧ | ୧୦,୪୫୪ |
| ୧୯୩୧ | ୧୫,୦୨୪ |
| ୧୯୪୧ | ୧୭,୦୩୨ |
| ୧୯୫୧ | ୧୨,୫୫୯ |
| ୧୯୬୧ | ୨୧,୮୯୦ |
| ୧୯୭୧ | ୨୪,୩୨୯ |
| ୧୯୮୧ | ୩୦,୮୭୬ |
| ୧୯୯୧ | ୩୫,୬୬୫ |
| ୨୦୦୧ | ୪୧,୩୩୯ |

*(Dr. N Patnaik, Adibasi, Vol.XXVI, Issue.3, July-September,1986 Published by Tribal and Harijan Research-cum-Training Institute, Govt. of Odisha, Bhubaneswar)*

## ଜୁଆଙ୍ଗ ଉନ୍ନୟନ ସଂସ୍ଥା

*(Juang Devlopment Agency)*

କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା ପୁରାତନ ଜନଜାତି ଜୁଆଙ୍ଗମାନଙ୍କର ବିକାଶ ନିମନ୍ତେ ରାଜ୍ୟ ସରକାର ୧୯୭୮ ମସିହାରେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଗଠନ କରିଥିଲେ । ସରକାରଙ୍କର ଏକ 'ଅଣୁ ପ୍ରକଳ୍ପ' *(micro project)* ଭାବେ ଏହି ଅନୁଷ୍ଠାନଟି ପ୍ରତିଷ୍ଠାଲାଭ କରିବା ସହ ଏହାର କାର୍ଯ୍ୟାଳୟ କେନ୍ଦୁଝର ଜିଲ୍ଲାର ଗୋନାସିକାଠାରେ ସ୍ଥାପିତ ହୋଇଛି । ଏହି ପ୍ରକଳ୍ପଟିରେ ଜଣେ ସ୍ୱତନ୍ତ୍ର ଅଧିକାରୀ ନିଯୁକ୍ତ ହେବା ସହିତ ଅନ୍ୟାନ୍ୟ କର୍ମଚାରୀ ମଧ୍ୟ ନିଯୁକ୍ତ ଅଛନ୍ତି । ଜୁଆଙ୍ଗ ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଓ ଅର୍ଥନୀତିରେ ସୁଧାର ଆଣିବା ଉଦ୍ଦେଶ୍ୟରେ ଏହି ପ୍ରକଳ୍ପଟି ଗଠନ କରାଯାଇଥିଲା । ଏହି ସଂସ୍ଥା ମାଧ୍ୟମରେ ଜୁଆଙ୍ଗ ଅଞ୍ଚଳରେ ପକ୍କା ସଡ଼କ ନିର୍ମାଣ କରିବା ସହିତ ପାନୀୟ ଜଳ ପ୍ରକଳ୍ପ, ଜଳ ଅମଳ ପ୍ରକଳ୍ପ, ଉଦ୍ୟାନ କୃଷି, ନଳକୂପ ଖନନ, ଚେକ୍ ଡ୍ୟାମ୍ ନିର୍ମାଣ, କମ୍ୟୁନିଟି ସେଣ୍ଟର ପ୍ରତିଷ୍ଠା ଓ ଅନ୍ୟାନ୍ୟ ଯାବତୀୟ ଉନ୍ନୟନମୂଳକ କାର୍ଯ୍ୟକ୍ରମ କରାଯାଉଛି । ମାତ୍ର, ବାସ୍ତବରେ ଏହି ସଂସ୍ଥାଟି ଏ ଅଞ୍ଚଳର ବିକାଶ ଦିଗରେ ବିଶେଷ ସହାୟକ ହୋଇପାରିଲା ଭଳି ମନେହୁଏ ନାହିଁ । ଏହି ସଂସ୍ଥାର ଭଗ୍ନ ଓ ଜରାଜୀର୍ଣ୍ଣ କାର୍ଯ୍ୟାଳୟ ଗୃହ ଏବଂ ଅଧିକାଂଶ ସମୟରେ ଏଠାରେ ଅନୁପସ୍ଥିତ ରହୁଥିବା ବିଭାଗୀୟ ଅଫିସର ଏବଂ କର୍ମଚାରୀମାନଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ






କଲେ ଏହି ସଂସ୍ଥାଟି କିପରି ଚାଲିଛି ସେଥିନେଇ ଅନେକ କିଛି ଧାରଣା ସୃଷ୍ଟି ହୋଇଥାଏ । ଏହି ଅଣୁ ପ୍ରକଳ୍ପଟିର ଅଧୀନରେ ୩୫ଟି ଜୁଆଙ୍ଗ ଗ୍ରାମ ଅନ୍ତର୍ଭୁକ୍ତ । ମାତ୍ର, ଦୁର୍ଭାଗ୍ୟ ଏହି ୩୫ଟି ଜୁଆଙ୍ଗ ଗ୍ରାମ ବ୍ୟତୀତ ଏ ଅଞ୍ଚଳରେ ଆହୁରି ଶତାଧିକ ଜୁଆଙ୍ଗ ଗ୍ରାମ ରହିଥିଲେ ମଧ୍ୟ ସେମାନେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅନ୍ତର୍ଭୁକ୍ତ ହୋଇପାରି ନାହାନ୍ତି । ଏହିସବୁ ଜୁଆଙ୍ଗ ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା'ର ଆର୍ଥିକ ସହାୟତାରୁ ବଞ୍ଚିତ ହେବା ସାଙ୍ଗକୁ ଏସବୁ ଗ୍ରାମଗୁଡିକରେ କୌଣସି ବିକାଶମୂଳକ କାର୍ଯ୍ୟକ୍ରମ ସମ୍ଭବ ହୋଇପାରୁନାହିଁ । ଏହି 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ମୋଟ ୬ଟି ଗ୍ରାମ ପଞ୍ଚାୟତ ଯଥା- ବାଂଶପାଳ ବ୍ଲକ୍‌ର ଗୋନାସିକା, ବାର୍ହାଗଡ, ବାୟାକୁମୁଟିଆ, କୋଡିପଶା, କୁଆଁର, ତଳଚଂପେଇର ମୋଟ ୩୫ଟି ଗ୍ରାମ ଅନ୍ତର୍ଭୁକ୍ତ ରହିଛି । ଜେଡ଼ିଏ ଅନ୍ତର୍ଭୁକ୍ତ ଏହି ୩୫ଟି ଗ୍ରାମଗୁଡିକ ହେଲା-

**ଗୋନାସିକା ଗ୍ରାମ ପଞ୍ଚାୟତ:**

ଗୋନାସିକା
ଉପର ବୈତରଣୀ
ଗୁପ୍ତଗଙ୍ଗା
ଜନ୍ତାରି

କଦଳିବାଡି

ତଳରାଇଡିହା

ଉପରରାଇଡିହା

ବୁଢିଘର

**ବାର୍ହାଗଡ ଗ୍ରାମ ପଞ୍ଚାୟତ:**

ବାର୍ହାଗଡ

ଡୁମୁରିଆ

ହାତୀଶିଳା

ନଡାମ୍

ଫୁଲବାଡି

ସାରିଆ

ତଳବରୁଡା

ତଳସୁମଠ

ତଳବାଲି

ଉପରବାଲି

କପୋତଡିହା

**ବାୟାକୁମୁଟିଆ ଗ୍ରାମ ପଞ୍ଚାୟତ:**

ବାୟାକୁମୁଟିଆ

ବାୟାପଣ୍ଡାଧର

ମାମଲାପଶି

**ଜୋଡିପଶା ଗ୍ରାମ ପଞ୍ଚାୟତ:**

ଦୁଆରଶୁଣି

ଘୁଙ୍ଗି

କୁଣ୍ଡେଇ

ଟାଙ୍ଗରପଡା

ତୋରାଣିପାଣି

**କୁଆଁର ଗ୍ରାମ ପଞ୍ଚାୟତ:**

କାଞ୍ଜିପାଣି

ତାଳପଦା

ତଳପଣସନସା

ଉପରପଣସନସା

**ତଳଚଂପେଇ ଗ୍ରାମ ପଞ୍ଚାୟତ:**

ଗଦଗଦେଇ

ରିମୁଳିଘାଟି

ତଳଚଂପେଇ

ଉପର ଚଂପେଇ

ସବୁଠୁ ଦୁର୍ଭାଗ୍ୟର ବିଷୟ, ତଳଚଂପେଇ ଗ୍ରାମ ପଞ୍ଚାୟତର ରିମୁଳିଘାଟି, ତଳଚଂପେଇ, ଉପରଚଂପେଇ ଆଦି ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ଯାଉଥିବାବେଳେ ତଳଚଂପେଇ ଗ୍ରାମକୁ ଲାଗିକରି ଥିବା ଏକ ଜୁଆଙ୍ଗ ଗ୍ରାମ 'ଉପରରତୁଆଁ' ଗାଁଟି 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅନ୍ତର୍ଭୁକ୍ତ ହୋଇପାରିନାହିଁ । କେବଳ ଉପରରତୁଆଁ ନୁହେଁ ବରଂ ଏହିଭଳି ଅନେକ ଜୁଆଙ୍ଗବହୁଳ ଗ୍ରାମ ରହିଛି ଯେଉଁମାନେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ରହିପାରିନାହାନ୍ତି । ବାଂଶପାଳ ବ୍ଲକ୍ ବ୍ୟତୀତ ତେଲକୋଇ, ହରିଚନ୍ଦନପୁର ଓ ଘଟଗାଁ ବ୍ଲକ୍‌ରେ ବହୁ ଜୁଆଙ୍ଗ ଗ୍ରାମ ରହିଛି । ଏହି ଗ୍ରାମଗୁଡିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ଆସୁନାହାନ୍ତି । ଏହା ଏକ ବିଚିତ୍ର ବ୍ୟବସ୍ଥା ଭଳି ମନେହୋଇଥାଏ ।

ଅପରପକ୍ଷେ, ଯେଉଁସବୁ ଜୁଆଙ୍ଗବହୁଳ ଗ୍ରାମଗୁଡ଼ିକ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' ଅଧୀନରେ ସାମିଲ୍ ହୋଇଛନ୍ତି ସେହିସବୁ ଗାଁମାନଙ୍କରେ ତଥାକଥିତ ବିକାଶ ନାଁରେ ବ୍ୟାପକ ଅବକ୍ଷୟ ପରିଲକ୍ଷିତ ହୋଇଛି । ସେହିସବୁ ଗାଁମାନଙ୍କରେ କମ୍ୟୁନିଟି ସେଣ୍ଟର ପ୍ରତିଷ୍ଠା ନାମରେ ଜୁଆଙ୍ଗମାନଙ୍କର ମୂଳ ପାରଂପରିକ 'ମଣ୍ଡଘର'ଗୁଡିକ ଧ୍ୱଂସ ପାଇଯାଇଛି । ଯେଉଁ ଗ୍ରାମଗୁଡିକ ଜେଡ଼ିଏ ଅଧୀନରେ ଅନ୍ତର୍ଭୁକ୍ତ ହୋଇ ନାହାନ୍ତି, ସେମାନେ ନିଜନିଜର ପରଂପରା ଓ ସଂସ୍କୃତିକୁ ବଜାୟ ରଖିପାରିଛନ୍ତି ।

## ସଂକ୍ଷେପରେ ଜେଡ଼ିଏ

| | |
|---|---|
| ପ୍ରକଳ୍ପର ନାମ | : 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' |
| ଅନ୍ତର୍ଭୁକ୍ତ ଗ୍ରାମ ସଂଖ୍ୟା | : ୩୫ (୬ଟି ଗ୍ରାମ ପଞ୍ଚାୟତର) |
| ମୋଟ ପରିବାର | : ୧୮୩୬ |
| ମୋଟ ବିପିଏଲ୍ ପରିବାର | : ୧୫୩୫ |
| ଜମିଶୂନ୍ୟ ପରିବାର | : ନାହିଁ |

| | |
|---|---|
| ମୋଟ ଜନସଂଖ୍ୟା | : ୮୫୯୨ (କେବଳ ପ୍ରକଳ୍ପ ଅନ୍ତର୍ଭୁକ୍ତ ଜୁଆଙ୍ଗ ଜନସଂଖ୍ୟା) |
| ସାକ୍ଷରତା ହାର | : ୨୯.୭୫ |

** All data as per profile of PTG juang based on the base-line survey-2010 by JDA, Gonasika*

## ଜୁଆଙ୍ଗ ପିଢ

*(Maximal juang territorial organization)*

ଇଂରେଜ ଶାସନ କାଳର କିଛି ସୂଚନାକୁ ଭିତ୍ତି କରି ଜୁଆଙ୍ଗ ପିଢ ସଂପର୍କରେ ଯାହା ଆକଳନ କରାଯାଇଥାଏ । ତତ୍କାଳୀନ ରାଜନୈତିକ ବ୍ୟବସ୍ଥାରେ ଜୁଆଙ୍ଗ ବସବାସ କରୁଥିବା କିଛି ଗ୍ରାମ ବା ଅଞ୍ଚଳକୁ ନେଇ ଗୋଟିଏ ଗୋଟିଏ ପିଢ ଗଠିତ ହୋଇଥିଲା । ପ୍ରତି **ଜୁଆଙ୍ଗ ପିଢ**ରେ ଅତି କମ୍‌ରେ ୬-୧୫ଟି ଗାଁ ଅନ୍ତର୍ଭୁକ୍ତ ହୋଇଥାଏ । ଏହି ପିଢ ବ୍ୟବସ୍ଥା ତତ୍କାଳୀନ ରାଜାଙ୍କ ଦ୍ୱାରା ସ୍ୱୀକୃତିଲାଭ କରିଥିଲା । ଏହିଭଳି ଭାବେ କେନ୍ଦୁଝର ଜୁଆଙ୍ଗ ଅଞ୍ଚଳକୁ ୬ ଗୋଟି **ଜୁଆଙ୍ଗ ପିଢ**ରେ ଭାଗ କରାଯାଇଥିଲା । ସେହି ୬ଟି ଜୁଆଙ୍ଗ ପିଢଗୁଡିକ ହେଉଛନ୍ତି-

୧. ଝାଡଖଣ୍ଡ ପିଢ
୨. ସାତଖଣ୍ଡ ପିଢ
୩. ରେବଣା ପିଢ
୪. କାଠୁଆ ପିଢ
୫. ହୁଣ୍ଡା ପିଢ
୬. ଚାରିଗଡିଆ ପିଢ

### ୧. ଝାଡଖଣ୍ଡ ପିଢ ଅନ୍ତର୍ଭୁକ୍ତ ଗ୍ରାମ

୧. ନଦାମ୍
୨. ହାତୀଶିଳା
୩. ସାରିଆ
୪. ବାର୍ହାଗଡ଼
୫. ବୁଢୀଘର
୬. କପୋତଡିହା

୭. ସୋମଗିରି

୮. ପଣସନସା

୯. କାଞ୍ଜିପାଣି

**୨. ସାତଖଣ୍ଡ ପିଢ ଅନ୍ତର୍ଭୁକ୍ତ ଗ୍ରାମ**

୧. ବୈତରଣୀ

୨. ଗୁପ୍ତଗଙ୍ଗା

୩. ବଗୁଦା

୪. ଗୋନାସିକା

୫. ରାଇତିହ୍ରା

୬. କଦଳୀବାଡି

୭. ସିଙ୍କୁଳାପଦା

୮. ଢନ୍ତାରି

୯. କଣ୍ଡଦାସ

**୩. ରେବଣା ପିଢ ଅନ୍ତର୍ଭୁକ୍ତ ଗ୍ରାମ**

୧. କୁସୁମଯୋଡ଼ି

୨. ବୁଢିପଦା

୩. ଗୁଆଁର

୪. ନଇଳା

୫. ରାମଦାସ (ଖର୍ବା)

୬. ତୁର୍କୀପଦା

୭. କାଞ୍ଜିଆପାଳ

୮. ଗୋଲୋ

୯. ରେବଣା

୧୦. ତାଳପଦା

**୪. କାଠୁଆ ପିଢ ଅନ୍ତର୍ଭୁକ୍ତ ଗ୍ରାମ**

୧. ଦୁଆରଶୁଣି

୨. କୁଣ୍ଢେଇ

୩. ରତୁଆଁ

୪. ସୁମଠ

୫. ଜାମୁଡିହା

୬. ଟାଙ୍ଗରପଡା

୭. ଚଂପେଇ

୮. କଂସା

୯. ପଣ୍ଡାଧର

୧୦. କୋଡ଼ିପଶା

୧୧. ଘୁଙ୍ଗି

**୫. ହୁଣ୍ଡା ପିଢ ଅନ୍ତର୍ଭୁକ୍ତ ଗ୍ରାମ**

୧. ହୁଣ୍ଡାପଣି

୨. ରଙ୍ଗମାଟିଆ

୩. କୁଆଝରଣ

୪. କାହ୍ନାଗୋଳା

୫. ମରାଗୋଳା

୬. ଗୟଳମୁଣ୍ଡା

**୬. ଚାରିଗଡ଼ିଆ ପିଢ ଅନ୍ତର୍ଭୁକ୍ତ ଗ୍ରାମ**

୧. ତମଙ୍ଗ

୨. ଗୋଡ଼ିନଟା

୩. ସାପଞ୍ଜି

୪. କାଳିଆପାଣି

୫. ପୀତାନାଳି

**ପିଢ ବାହାରେ ଥିବା ଆଉ ୧୮ଟି ଗ୍ରାମ**

୧. ମୟୁରଡିହା

୨. ନୂଆସାହି

୩. ବାଲିବେଡା

୪. ଉପରଗୋଡା

୫. ତୋରାଣିପାଣି

୬. ରୁଗୁଡି

୭. ଉପରସୁମଠ

୮. ତଳ ଚଂପେଇ

୯. ନିତିଗଠ

୧୦. ଉପର କାଂପଡିହି

୧୧. ପତାଡିହି

୧୨. ଲୁଣାଘର

୧୩. ଗୋବିନ୍ଦପୁର

୧୪. ତଳ ଲାଦମା

୧୫. ବୈତରଣୀ

୧୬. ଗୋଳିଆବନ୍ଧ ରାଇଡିହା

୧୭. ଚାନ୍ଦପଶି

୧୮. ବାଙ୍କୁଡା ବୁଢାଖମଣ

ଏହି ଅତିରିକ୍ତ ଗାଁଗୁଡିକ କାହିଁକି ପିଢ ଅନ୍ତର୍ଭୁକ୍ତ ହୋଇପାରିନାହିଁ ସେଥିନେଇ ନଥିପତ୍ରରେ ବିଶେଷ କିଛି ତଥ୍ୟ ଉପଲବ୍‌ଧ ନାହିଁ ।

ପ୍ରତି ପିଢରେ ଜଣେଜଣେ **ପିଢ ସର୍ଦ୍ଦାର** ମୁଖିଆ ହୋଇ ରହିଥିଲେ । ତତ୍କାଳୀନ କେନ୍ଦୁଝର ରାଜା ଏହି ୬ଟି ପିଢରେ ୬ ଜଣ ପିଢ ସର୍ଦ୍ଦାରଙ୍କୁ ନିଯୁକ୍ତ କରିଥିଲେ । ଏହି ୬ଟି ପିଢ ମଧ୍ୟରୁ ଛାତଖଣ୍ଡ ଓ ସାତଖଣ୍ଡ ପିଢର ଜୁଆଙ୍ଗମାନେ ନିଜକୁ ଉଚ୍ଚ ଶ୍ରେଣୀର ବୋଲି ଦାବି କରନ୍ତି । ସାତଖଣ୍ଡ ପିଢ ସାତଗୋଟି ଗାଁକୁ ନେଇ ଗଠିତ ହୋଇଥିବାରୁ ଏହାର ନାମକରଣ ଏଭଳି ହୋଇଛି । ଏହି ପିଢରେ ବସବାସ କରୁଥିବା ଜୁଆଙ୍ଗମାନେ ଗୋନାସିକା ଓ ଗୁପ୍ତଗଙ୍ଗା ପାହାଡ ଅଞ୍ଚଳରେ ବସବାସ କରିଥା'ନ୍ତି । ଏମାନେ ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ ବସବାସ କରୁଥିବାରୁ ନିଜକୁ ଅନ୍ୟ ଜୁଆଙ୍ଗମାନଙ୍କ ତୁଳନାରେ ଉଚ୍ଚ ଶ୍ରେଣୀର ଓ ପବିତ୍ର ବୋଲି ମନେକରନ୍ତି । ପିଢ ସର୍ଦ୍ଦାରମାନେ ଜୁଆଙ୍ଗ ଗ୍ରାମମାନଙ୍କରୁ ରାଜସ୍ୱ ଆଦାୟ କରି ରାଜାଙ୍କୁ ପ୍ରଦାନ କରୁଥିଲେ । ରାଜସ୍ୱ କହିଲେ ପନିପରିବା, ଶସ୍ୟ ଓ ଜଙ୍ଗଲଜାତ ଫଳମୂଳ ଆଦିକୁ ବୁଝାଯାଉଥିଲା । ଗୋଟିଏ ଗାଁ ଭିତରର ବିବାଦ ଗାଁ ମୁଖିଆ 'ପଧାନ' ବୁଝୁଥିବାବେଳେ ଗ୍ରାମ ଗ୍ରାମ ମଧ୍ୟରେ ଥିବା ବିବାଦ ପିଢ ସର୍ଦ୍ଦାରଙ୍କ ନିକଟକୁ ଯାଉଥିଲା । ପିଢ ସର୍ଦ୍ଦାର ବିଭିନ୍ନ ଗ୍ରାମର ମୁଖିଆ 'ପଧାନ', ନାଗମ୍ (ପୂଜକ), ଡାଙ୍ଗୁଆ, ବାଦି, ପ୍ରତିବାଦିମାନଙ୍କ ଉପସ୍ଥିତିରେ ନିଜର ରାୟ ଶୁଣାଉଥିଲେ । ତେବେ ଆଜିର ପଞ୍ଚାୟତିରାଜ

ବ୍ୟବସ୍ଥାରେ ପିଢ ସର୍ଦ୍ଦାରଙ୍କ ଭୂମିକା ସଂପୂର୍ଣ୍ଣ ମାତ୍ରାରେ ନ ହେଲେ ଅନେକାଂଶରେ ହ୍ରାସ ପାଇଯାଇଛି । ଆଜି 'ପଧାନ'ଙ୍କ ସ୍ଥାନ ଗାଁ ଓ୍ୱାର୍ଡ ମେମ୍ବର ନେଇଥିବାବେଳେ 'ପିଢ ସର୍ଦ୍ଦାର'ଙ୍କ ସ୍ଥାନ ସରପଞ୍ଚ ନେଇଛନ୍ତି ।ତଥାପି ଅନେକ ଜୁଆଙ୍ଗ ଗାଁମାନଙ୍କରେ ଆଜି ବି ପିଢ ସର୍ଦ୍ଦାରଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି । ଆଜି ବି ପିଢ ସର୍ଦ୍ଦାରମାନେ ସେମାନଙ୍କ ରାୟ ଶୁଣାଇବା ସହିତ ଅନେକ ବିବାଦର ସମାଧାନ କରିବାରେ ସଫଳ ହୋଇପାରୁଛନ୍ତି । ତେବେ ଆଜିର ଦିନରେ ଅଧିକାଂଶ ମାମଲା ଥାନା, କୋର୍ଟ କଚେରୀକୁ ଚାଲି ଯାଉଥିବାରୁ ପିଢ ସର୍ଦ୍ଦାରଙ୍କ ହୁକୁମ୍ ଆଉ କାମ କରୁନି ।

[ ତଥ୍ୟ ସହାୟତା: *Mortuary practices of the Paudi Bhuiyans and the Juangs of Odisha: An anthropological study (PhD thesis) -Sarita Nayak (2007)* ]

## ଜୁଆଙ୍ଗ ପିଢ ପଟ୍ଟା ସମସ୍ୟା

ବାଂଶପାଳ ବ୍ଲକ୍ ଅନ୍ତର୍ଗତ ତଳଚଂପେଇ ଗ୍ରାମ ପଞ୍ଚାୟତର ଉପରରଡୁଆଁ ଗାଁଟି ଏକ ଜୁଆଙ୍ଗବହୁଳ ଗାଁ । ଏହି ଗାଁଟି 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' (ଜେଡ଼ିଏ) ଅନ୍ତର୍ଭୁକ୍ତ ହୋଇପାରିନାହିଁ । ଏଠାରେ ୩୦ ଘର ଜୁଆଙ୍ଗ ବସବାସ କରନ୍ତି । ଏହି ଗାଁକୁ ନେଇ ଏକ ଘଟଣା ମୁଁ ଆପଣଙ୍କୁ କହିବାକୁ ଯାଉଛି । ପୂର୍ବର କଥାବାର୍ତ୍ତା ଅନୁସାରେ ଗାଁର 'ନାଗମ୍' (ପୂଜକ) ମଣିଆ ଜୁଆଙ୍ଗଙ୍କୁ ଆମର ଭେଟିବାର ଥିଲା । ତତ୍କାଳୀନ କେନ୍ଦୁଝର ରାଜା କ'ଣ ଗୋଟିଏ ଦୁର୍ମୂଲ୍ୟ ଉପହାର ପ୍ରଦାନ କରିଛନ୍ତି, ଯାହାକୁ ପ୍ରାୟ ସାଢେ ଛଅ ଶହ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ଏହି ଗାଁର ଜୁଆଙ୍ଗମାନେ ପୂଜା କରି ଆସୁଛନ୍ତି ବୋଲି



► ଜୁଆଙ୍ଗ ପିଢପଟ୍ଟା



▶ ଜୁଆଙ୍ଗ ପିଢପଟ୍ଟା

ମୁଁ ଏକ ଉଡା ଖବର ପାଇଥିଲି । ଏଣୁ ଏ ବିଷୟରେ ଅଧିକ ଜାଣିବାକୁ ମୋର ଆଗ୍ରହ ବଢିବାରେ ଲାଗିଲା । ପ୍ରକୃତରେ ରାଜପ୍ରଦତ୍ତ ଏହି ଜିନିଷଟି କ'ଣ ବୋଲି ଜାଣିବାକୁ ଉଦ୍ୟମ କଲି । ମୁଁ 'ବନବାସୀ ଚେତନା ମଣ୍ଡଳ'ର ସଂପାଦକ ବୀରବର ନାଏକଙ୍କୁ ଧରି ଉପରରଡୁଆଁ ଗାଁକୁ ଗଲି । ମାତ୍ର ଗାଁରେ ପହଞ୍ଚି ଯେତେବେଳେ ଏ ବିଷୟରେ ଖୋଳତାଡ କରିବାକୁ ଚେଷ୍ଟା କଲୁ ଗାଁର ନାଗମ୍ ମଣିଆ ଜୁଆଙ୍ଗ ଆମକୁ ଆଖି କଟମଟ କରି ଅନେଇବା ଦେଖି ଆମେ ଏକପ୍ରକାର ଡରିଗଲୁ । କଥା କ'ଣ, କାହିଁକି ପୂଜକ ଏଭଳି କ୍ରୋଧିତ ହେଉଛନ୍ତି ସେ ସଂପର୍କରେ ବହୁତ ବିଳମ୍ବରେ ଜାଣିବାକୁ ପାଇଲୁ । ରାଜା ସେମାନଙ୍କୁ ଯେଉଁ ଉପହାର ଦେଇଛନ୍ତି ତାହାକୁ ନିଷେଧାଜ୍ଞା ଭାବେ ଗାଁର ପୂଜକ ବଂଶାନୁକ୍ରମିକ ଭାବେ ପୂଜା କରି ଆସୁଛନ୍ତି । ଏହାକୁ କୌଣସି ବହିରାଗତଙ୍କୁ ଦେଖାଇବା କିମ୍ବା ଏ ସଂପର୍କରେ ଆଲୋଚନା କରିବା ମଧ୍ୟ ନିଷିଦ୍ଧ ବୋଲି ଜୁଆଙ୍ଗମାନେ ଆମକୁ କହିଥିଲେ । ବହୁ ବୁଝାସୁଝା କରି ସେମାନଙ୍କୁ ଆଶ୍ୱାସନା ଦେବା ପରେ ଶେଷରେ ପୂଜକ ସ୍ନାନ କରି ସାରିଥିଲେ ମଧ୍ୟ ଆଉ ଥରେ ନିକଟସ୍ଥ ଝରଣାରେ ଗାଧୋଇ ନିଜକୁ ସଂସ୍କାର କରି ମନ୍ତ୍ର ପାଠ କରି ସେଇ ନିଷିଦ୍ଧ ବାଉଁଶ ନଳାଟିକୁ ବାହାର କଲେ । ବାଉଁଶ ନଳାଟି ମଧ୍ୟରେ ଗୁଡା ହୋଇ ରହିଥାଏ ମାତ୍ର ୪ ଖଣ୍ଡି ତାଳପତ୍ର । ସେଥିରେ ତତ୍କାଳୀନ ପ୍ରତ୍ନ ଓଡ଼ିଆ ଭାଷାରେ କେତେ ଧାଡି ଲେଖାଯାଇଥାଏ । ବୁଝୁବୁଝୁ ଜଣାପଡିଲା ଏହା ହେଉଛି ରାଜାଙ୍କ ପ୍ରଦତ୍ତ ଜୁଆଙ୍ଗ ପିଢ ପଟ୍ଟା । ଉପରରଡୁଆଁ ଗ୍ରାମର ତତ୍କାଳୀନ ନାଗମ୍ (ଧାର୍ମିକ ମୁଖ୍ୟ)ଙ୍କୁ କେନ୍ଦୁଝରଗଡ଼ ରାଜା ଏହି ତାଳପତ୍ର ପିଢ ପଟ୍ଟା ପ୍ରଦାନ କରିଥିଲେ । ମାତ୍ର, ପରବର୍ତ୍ତୀ ସମୟରେ ଜୁଆଙ୍ଗମାନେ ଏହାକୁ ଈଶ୍ୱରଙ୍କ ବିଗ୍ରହ ଭାବି ଏହାକୁ ପୂଜା କରି ଆସୁଛନ୍ତି । ଏହା ଜାଣିବା ପରେ ଆମର ଆଶ୍ଚର୍ଯ୍ୟର ସୀମା ରହି ନଥିଲା । ପ୍ରକୃତରେ ଆଜି

ଜୁଆଙ୍ଗମାନେ ଯେଉଁ ପିଢ ପଟ୍ଟା ଦାବିରେ ଆନ୍ଦୋଳନ ଚଳାଇ ଆସୁଛନ୍ତି, ସେମାନେ କ'ଣ ଜାଣିଛନ୍ତି ଏହି ବାଉଁଶ ନଳାରେ ଥିବା ତାଳପତ୍ର ଚାରିଖଣ୍ଡରେ ତାଙ୍କର ସବୁତକ ହକ୍ ଲୁଚିକରି ରହିଛି? ଏହା ହିଁ ତତ୍କାଳୀନ କେନ୍ଦୁଝର ରାଜା ପ୍ରଦାନ କରିଥିବା ଜୁଆଙ୍ଗ ପିଢ ପଟ୍ଟା । ତେବେ ସେତେବେଳେ ରାଜତନ୍ତ୍ର ବ୍ୟବସ୍ଥାରେ ଜଙ୍ଗଲ ଜମି ଉପରେ ଜୁଆଙ୍ଗମାନଙ୍କର ଅଧିକାରକୁ ସ୍ୱୀକୃତି ମିଳି ସାରିଥିବାବେଳେ ଆଜି ସରକାର ସେଗୁଡିକୁ ବିବେଚନା କରିବାକୁ କୁଣ୍ଠା ପ୍ରକାଶ କରୁଛନ୍ତି କାହିଁକି?

କେନ୍ଦୁଝରର ଇତିହାସ ଅଧ୍ୟୟନରୁ ଜଣାଯାଏ ଆଜିର କେନ୍ଦୁଝର ଜିଲ୍ଲା ପୂର୍ବରୁ କେନ୍ଦୁଝର



► ପାନୀୟ ଜଳ ସମସ୍ୟା: ଚୁଆ ପାଣି ପିଇ ବଞ୍ଚିଥା'ନ୍ତି ଜୁଆଙ୍ଗମାନେ

ରାଜ୍ୟ ଥିଲା । ଏହି ରାଜ୍ୟ ୧୧୧୮ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ତେବେ ୧୧୧୮ ମସିହାରୁ ଦେଶ ସ୍ୱାଧୀନ ହେବା (୧୯୪୭) ପର୍ଯ୍ୟନ୍ତ କେନ୍ଦୁଝର ରାଜ୍ୟକୁ ୩୮ ଜଣ ରାଜା ଶାସନ କରିଛନ୍ତି । ଜୁଆଙ୍ଗମାନେ କେନ୍ଦୁଝର ମାଟିର ସର୍ବପୁରାତନ ସନ୍ତାନ ବୋଲି ବିଶ୍ୱାସ କରାଯାଏ । ସେମାନେ ଗୋନାସିକା ପାର୍ବତ୍ୟ ଅଞ୍ଚଳରେ ପୃଥିବୀ ପୃଷ୍ଠରେ ପ୍ରଥମେ ସୃଷ୍ଟି ହୋଇଥିବାର ଅନେକ କିମ୍ବଦନ୍ତୀ ଓ ଲୋକକାହାଣୀ ରହିଛି । ଜୁଆଙ୍ଗ ଓ ଭୂୟାଁମାନେ କେନ୍ଦୁଝର ମାଟିର ପ୍ରଥମ ସନ୍ତାନ ହୋଇଥିବାରୁ ଏବଂ ଜମି, ଜଳ, ଜଙ୍ଗଲକୁ ଆଧାର କରି ଜୀବିକା ନିର୍ବାହ କରୁଥିବାରୁ ୧୩୪୬ ମସିହାରେ ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ଶାସନ କାଳରେ ଜୁଆଙ୍ଗ ଏବଂ ଭୂୟାଁମାନେ ବସବାସ କରୁଥିବା ଅଞ୍ଚଳକୁ ଚିହ୍ନଟ କରି ଜୁଆଙ୍ଗ ଏବଂ ଭୂୟାଁ ପିଢ ଭାବେ ସ୍ୱୀକୃତି ପ୍ରଦାନ କରାଯାଇଥିଲା । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ରାଜ ପ୍ରଦତ୍ତ ଏହି ପିଢ ପଟ୍ଟାକୁ ଭିତ୍ତି କରି ଜୁଆଙ୍ଗ ଏବଂ ଭୂୟାଁମାନେ ଜଙ୍ଗଲ, ଜମି ଓ ଜଳକୁ ସେମାନଙ୍କର ସଂପତ୍ତି ବୋଲି ଦାବି କରିଆସୁଛନ୍ତି ।

୧୩୪୬ ମସିହାରୁ ଆଜି ପର୍ଯ୍ୟନ୍ତ ଏହି ଜୁଆଙ୍ଗମାନଙ୍କୁ ଥଇଥାନ କରିବା ପାଇଁ ବହୁବାର ସର୍ଭେ ହୋଇଛି, ମାତ୍ର ଏମାନଙ୍କୁ ସ୍ଥାୟୀ ପିଢପଟ୍ଟା ମିଳିପାରିନାହିଁ । ବିକାଶ ନାମରେ ସରକାର ଏହି ଜୁଆଙ୍ଗମାନଙ୍କୁ ସେମାନଙ୍କ ମୂଳ ଭୂମିରୁ ତଡ଼ିବାକୁ ଚକ୍ରାନ୍ତ ଚଳାଇଛି ବୋଲି ଜୁଆଙ୍ଗମାନଙ୍କ ମନରେ ଧାରଣା ଜନ୍ମିଛି । ଦେଶ ସ୍ୱାଧୀନ ହେବା ପରେ ଓଡ଼ିଶାରେ ୧୯୫୬ ମସିହାରେ ଭୂ-ସଂସ୍କାର ଆଇନ୍ ପ୍ରଣୀତ ହୋଇ ୧୯୭୨ ମସିହା ବେଳକୁ କାର୍ଯ୍ୟକାରୀ କରାଯାଇ ୧୯୮୫ ମସିହା ମଧ୍ୟରେ କିଛି ଲୋକଙ୍କୁ ଥଇଥାନ କରାଯାଇଥିଲା । ମାତ୍ର, କେନ୍ଦୁଝରର ଗୋନାସିକା ଓ ଗନ୍ଧମାର୍ଦ୍ଦନ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା ଜୁଆଙ୍ଗମାନଙ୍କୁ ଆଜି ପର୍ଯ୍ୟନ୍ତ ପିଢ ପଟ୍ଟା ପ୍ରଦାନ କରି ଥଇଥାନ କରାଯାଇ ପାରିଲା ନାହିଁ ।

ଏହା ମଧ୍ୟରେ ସରକାର ୨୦୦୬ ମସିହାରେ ଜଙ୍ଗଲଜମି ଅଧିକାର ଆଇନ୍ ପ୍ରଣୟନ କଲେ ଏବଂ ୨୦୦୮ ମସିହାରେ ଏହା କାର୍ଯ୍ୟକାରୀ ହୋଇଛି । ଜଙ୍ଗଲ ଜମି ଅଧିକାର ଆଇନ୍-୨୦୦୬ ଅନୁଯାୟୀ ଜୁଆଙ୍ଗମାନେ ଜଙ୍ଗଲ ଜମି ପାଇବାକୁ ଅବେଦନ କଲେ । ଏହି ଆଇନ୍‌ରେ ଜଣେ ବ୍ୟକ୍ତି ୧୦ ଏକର ଜଙ୍ଗଲ ଜମିର ସ୍ୱୀକୃତି ପାଇବାକୁ ଆବେଦନ କରିଥିବାବେଳେ ଜୁଆଙ୍ଗମାନଙ୍କୁ ମାତ୍ର ୪୯ ଡିସିମିଲିରୁ ସର୍ବାଧିକ ୧ ଏକର ପର୍ଯ୍ୟନ୍ତ ଜମି ପଟ୍ଟା ପ୍ରଦାନ କରାଯାଇଛି । ଏହା ଏହି ପୁରାତନ ଜୁଆଙ୍ଗମାନଙ୍କୁ ସରକାରଙ୍କ ଲଲିପପ୍ ଭଳି ମନେହେବାରୁ ଏ ଅଞ୍ଚଳରେ ବିଦ୍ରୋହ ଦାନା ବାନ୍ଧିଛି । ଗୋଷ୍ଠୀଗତ ଭାବେ ବ୍ୟବହୃତ ହେଉଥିବା ଜଙ୍ଗଲ ଖଣ୍ଡ, ଜଳ ଉତ୍ସ, ଧର୍ମ ପୀଠ, ଲଘୁ ବନଜାତ ଦ୍ରବ୍ୟ, ଚାଷ କରିବାର ଅଧିକାର ଏ ଅଞ୍ଚଳର ଜୁଆଙ୍ଗମାନଙ୍କୁ ଦିଆଗଲା ନାହିଁ ।

ଜଙ୍ଗଲ ଜମି ଅଧିକାର ଆଇନ୍-୨୦୦୬ ଅନୁଯାୟୀ, କେବଳ ଜୁଆଙ୍ଗ ପିଢର ୬ଟି ଗ୍ରାମ ପଞ୍ଚାୟତର ୬୦ଟି ଗ୍ରାମର ୨୦,୦୯୧ ଜଣ ଜୁଆଙ୍ଗ ୯୦୦ ବର୍ଗ କିଲୋମିଟର ଜଙ୍ଗଲ ଜମିର

ଅଧିକାର ପାଇବା ପାଇଁ ଗତ ୨୦୧୦ ମସିହାରେ ରାଜ୍ୟ ସରକାରଙ୍କ ନିକଟରେ ଆବେଦନ କରିଥିଲେ । ତେବେ ଏହି ଜୁଆଙ୍ଗମାନଙ୍କର ଏହି ଆବେଦନକୁ ସରକାର ଅଗ୍ରାହ୍ୟ କରି ଦେଇଥିବାରୁ ଜୁଆଙ୍ଗ ଅଞ୍ଚଳରେ ଜନ ଆନ୍ଦୋଳନ ଦାନା ବାନ୍ଧିବାରେ ଲାଗିଛି । ଅପରପକ୍ଷେ, 'ପେସା ଆଇନ୍-୧୯୯୫'କୁ ଉଲ୍ଲଂଘନ କରି ଶିଳ୍ପପତି ଓ ପୁଞ୍ଜିପତିମାନଙ୍କୁ ଶିଳ୍ପାୟନ ପାଇଁ ସରକାର ହଜାର ହଜାର ଏକର ଜମି ଟେକି ଦେଉଥିବାବେଳେ କେଉଁ କାରଣରୁ ଏହି ପାରଂପରିକ ଜୁଆଙ୍ଗମାନଙ୍କୁ ସେମାନଙ୍କର ମୌଳିକ ଅଧିକାରରୁ ବଞ୍ଚିତ କରାଯାଉଛି ତାହା ଏକ ପ୍ରଶ୍ନବାଚୀ ପାଲଟିଛି । କେବଳ ଏହି ପିଢ ପଟ୍ଟା ଦାବି ନୁହେଁ ବରଂ ବନ୍ୟ ଜୀବଜନ୍ତୁ, ଔଷଧୀୟ ଗୁଳ୍ମଲତା, ଗୋନାସିକା ପର୍ବତରୁ ନିର୍ଗତ ଜଳ ଉତ୍ସ ଗୁଡିକ ସମେତ ବୃକ୍ଷଲତା ଓ ଜୀବଜନ୍ତୁଙ୍କ ଭଳି ଜୈବବିବିଧତାର ସୁରକ୍ଷା ପାଇଁ ଜୁଆଙ୍ଗମାନେ ଦାବି କରି ଆସୁଛନ୍ତି । ଏଥିନେଇ ଗୋନାସିକା ଅଞ୍ଚଳରେ **'ପାରଂପରିକ ଜୁଆଙ୍ଗ ପିଢ ମହାସଭା'** ନାମରେ ଏକ ସଂଗଠନ ଗଢାଯାଇ ସରକାରଙ୍କ ବିରୋଧରେ ଦୀର୍ଘ ବର୍ଷ ଧରି ଆନ୍ଦୋଳନ ଚାଲୁ ରହିଛି ।

ପଞ୍ଚାୟତିରାଜ ବ୍ୟବସ୍ଥା ସତ୍ତ୍ୱେ ଆଜି ବି ଜୁଆଙ୍ଗ ପିଢ ବ୍ୟବସ୍ଥାକୁ ବଞ୍ଚାଇ ରଖିବାର ଉଦ୍ୟମ କରାଯାଇଛି । ଜୁଆଙ୍ଗ ଅଞ୍ଚଳର ସମସ୍ତ ୬ଟି ପିଢମାନଙ୍କୁ ନେଇ ଏକ 'ମହା ପିଢ କମିଟି' ଗଠନ କରାଯାଇଛି । ଗୁପ୍ତଗଙ୍ଗାର ଦାଶରଥି ଜୁଆଙ୍ଗ ଏହି କମିଟିର ପିଢପତି ରହିଥିବାବେଳେ ଗୋନାସିକାର



➢ ଜୁଆଙ୍ଗ ପିଢପଟ୍ଟା

ଶ୍ରୀକାନ୍ତ ଜୁଆଙ୍ଗ ଉପ ପିଢପତି, ଗୁପ୍ତଗଙ୍ଗାର ଅର୍ଜୁନ ଚରଣ ଜୁଆଙ୍ଗ ପିଢ ନାୟକ ଅଛନ୍ତି । ଅପରପକ୍ଷେ, ଅନ୍ୟ ୬ଟି ପିଢରେ ଜଣେ ଜଣେ ପିଢ ସର୍ଦ୍ଦାର ରହିଛନ୍ତି । 'ବନବାସୀ ଚେତନା ମଣ୍ଡଳ'ର ସଂପାଦକ ବୀରବର ନାଏକ ଏହି କମିଟିର **'ପିଢ ସେନାପତି'** ନିଯୁକ୍ତ ହୋଇଛନ୍ତି । ସମସ୍ତ ୬ଟି ପିଢ ସମସ୍ୟାର ସମାଧାନ ନିମନ୍ତେ ଗଠନ କରାଯାଇଥିବା ଏହି ପିଢ କମିଟିରେ ୨୮ ଜଣ କାର୍ଯ୍ୟନିର୍ବାହୀ ସଦସ୍ୟ ରହିଛନ୍ତି । ସେମାନେ ହେଉଛନ୍ତି –ଉପରବୈତରଣୀ ଗ୍ରାମର ଲକ୍ଷ୍ମୀଧର ଜୁଆଙ୍ଗ, ଗୁପ୍ତଗଙ୍ଗା ଗ୍ରାମର ଲକ୍ଷ୍ମଣ ଜୁଆଙ୍ଗ, ଗୋନାସିକାର ଶୁକ୍ରା ଜୁଆଙ୍ଗ, ଗୋନାସିକାର ନିରଞ୍ଜନ ଜୁଆଙ୍ଗ, ଶିଙ୍କୁଳାପଦା ଗ୍ରାମର ଅଭିମନ୍ୟୁ ଦେହୁରୀ, କଣ୍ଡଦାସ ଗ୍ରାମର କମାର କଟେଇ, ଉପରରାଇଡିହା ଗ୍ରାମର ବିନୋଦ ଜୁଆଙ୍ଗ, କଦଳୀବାଡି ଗ୍ରାମର ବୁଷା ଜୁଆଙ୍ଗ, ତଳରାଇଗଡା ଗ୍ରାମର ରବୀନ୍ଦ୍ର କୁମାର ଜୁଆଙ୍ଗ, ଜନ୍ତାରି ଗ୍ରାମର ଡମ୍ବରୁ ଜୁଆଙ୍ଗ, ଡୁମୁରିଆ ଗ୍ରାମର କୀର୍ତ୍ତନ ଜୁଆଙ୍ଗ, ସାରିଆ ଗ୍ରାମର କୁଶ ଜୁଆଙ୍ଗ, ଟାଙ୍କଯୋଡା ଗ୍ରାମର ବୈଷମ ଜୁଆଙ୍ଗ, ବାର୍ହାଗଡ ଗ୍ରାମର ସାଗର ଜୁଆଙ୍ଗ, ଉପରବାଲି ଗ୍ରାମର ଭଗବାନ ଜୁଆଙ୍ଗ, ଫୁଲବାଡି ଗ୍ରାମର କାନ୍ତାରୁ ଜୁଆଙ୍ଗ, ବୁଢିଘର ଗ୍ରାମର ମନ୍ତୀବର ଜୁଆଙ୍ଗ, କାଞ୍ଜିପାଣି ଗ୍ରାମର ଚନ୍ଦ୍ରମଣି ଜୁଆଙ୍ଗ, କାଞ୍ଜିପାଣି ଗ୍ରାମର କୁଲୁ ଜୁଆଙ୍ଗ, ରୁତୁସାହିର କଳାକାର ଜୁଆଙ୍ଗ, ପଣସନସା ଗ୍ରାମର ଦାଶରଥି ଜୁଆଙ୍ଗ, ବାୟାକୁମୁଟିଆ ଗ୍ରାମର ବୃନ୍ଦାବନ ଜୁଆଙ୍ଗ, ତଳଚଂପେଇ ଗ୍ରାମର ଲକ୍ଷ୍ମୀଧର ଜୁଆଙ୍ଗ, ଟାଙ୍ଗରପଡା ଗ୍ରାମର ଯଦୁମଣି ଜୁଆଙ୍ଗ, ଉପରରତୁଆଁ ଗ୍ରାମର ବିନୋଦ ଜୁଆଙ୍ଗ, କୋଡିପଶା ଗ୍ରାମର ବୈକୁଣ୍ଠ ଅଧିକାରୀ, ଦୁଆରମଣି ଗ୍ରାମର ପୂର୍ଣ୍ଣଚନ୍ଦ୍ର ଜୁଆଙ୍ଗ, ତୋରାଣିପାଣି ଗ୍ରାମର ଶରତ ଜୁଆଙ୍ଗ । ଏହି ପିଢ କମିଟି ଏ ଅଞ୍ଚଳର ବିଭିନ୍ନ ସମସ୍ୟାର ସମାଧାନ କରିବା ନିମନ୍ତେ ନାନା ପ୍ରକାର ପଦକ୍ଷେପ ନେବା ସହିତ ସରକାର ଓ ପ୍ରଶାସନ ନିକଟରେ ଆଞ୍ଚଳିକ ସମସ୍ୟାର ଉପସ୍ଥାପନ କରିଆସୁଛି ।

ଅତୀତରେ କେନ୍ଦୁଝର ରାଜା ଜୁଆଙ୍ଗମାନଙ୍କୁ ପିଢ ପଟ୍ଟା ପ୍ରଦାନ କରି ତା' ବଦଳରେ ସେମାନଙ୍କଠାରୁ ନାନା ପ୍ରକାର ଖଜଣା ଓ **'ଭେଟିଭାର'** ଆଦାୟ କରୁଥିଲେ । ଜୁଆଙ୍ଗ ପିଢ ସର୍ଦ୍ଦାରୀ ଓ ପଧାନୀ ପଟ୍ଟା ପ୍ରଦାନ ବଦଳରେ ରାଜ ଶାସନ କାଳରେ ଜୁଆଙ୍ଗ ପ୍ରଜାମାନେ ତରିମରି ଭେଟିଭାର ଓ ଖଜଣା ପ୍ରଦାନ କରୁଥିଲେ । ଜିନିଷପତ୍ର ଆକାରରେ ଏହି କର ଖଜଣା ପ୍ରଦାନ କରାଯାଉଥିଲା । ରାଜାଙ୍କ ହୁକୁମ୍‌ମତେ ସାତଖଣ୍ଡିଆ ପିଢର ଲୋକେ ସାତୋଟି ବୋଦା ବା ଛେଳି ଦଶହରା ବା ଦୁର୍ଗା ପୂଜାରେ ଦେଉଥିଲେ । କାଠୁଆ ପିଢର ଲୋକେ ଦୈନିକ ଜାଳେଣିକାଠ ଯୋଗାଉଥିଲେ । ଝାଡଖଣ୍ଡ ପିଢର ଲୋକେ ରଥଯାତ୍ରା ବେଳକୁ ଫୁଲଝାଡୁ ଓ ରଥ ଦଉଡି ଯୋଗାଉଥିଲେ । ଏହି ଅନୁସାରେ ଏହିସବୁ ପିଢର ନାମକରଣ ସଂଭବ ହୋଇଛି ବୋଲି କୁହାଯାଏ । ଏହାବ୍ୟତୀତ ସମସ୍ତ ଜୁଆଙ୍ଗ ପିଢ ଅଞ୍ଚଳରୁ ଡାଲିଜାତୀୟ ଓ ତୈଳଜାତୀୟ ଶସ୍ୟ ସଂଗ୍ରହ କରାଯାଇ ରାଜଦରବାରକୁ ପଠାଯାଉଥିଲା । ଗୋପାଳ ଗୋଷ୍ଠୀର ଲୋକେ ଏ ଅଞ୍ଚଳରେ ଜୁଆଙ୍ଗ ଲୋକଙ୍କ ଦ୍ୱାରା ପ୍ରଜା ଭାବେ ଅବସ୍ଥାପିତ



► ଜୁଆଙ୍ଗ ବୃଦ୍ଧାଟିଏ ଜଙ୍ଗଲରୁ ଶାଳ ଦାନ୍ତ କାଠି ସଂଗ୍ରହ କରି ଘରକୁ ଫେରୁଛନ୍ତି ।

ହୋଇଥିଲେ । ସେମାନେ ମଧ୍ୟ ଦଶହରାରେ କେନ୍ଦୁଝର ରାଜାଙ୍କୁ ଦହି, ଦୁଗ୍ଧ ଏବଂ ପୋଢ (ପଣ୍ଡା) ବଳି ପୂଜା ପାଇଁ ଯୋଗାଉଥିଲେ । ପ୍ରତି ଦଶହରା ବେଳକୁ ଗୋପାଳମାନେ ୧୬ ହଳ ପୋଢ ଅର୍ଥାତ୍ ୩୨ଟି ପୋଢ (ପଣ୍ଡା) ରାଜଦରବାରକୁ ପ୍ରଦାନ କରୁଥିଲେ । ସେତେବେଳେ ଜୁଆଙ୍ଗ-ଭୂୟାଁ ପିଢ ଅଞ୍ଚଳରୁ ପ୍ରତିବର୍ଷ ଦଶହରା ପୂଜା ବେଳକୁ ୩୨ ହଳ ଅର୍ଥାତ୍ ୬୪ ଗୋଟି ବୋଦା (ଛେଳି) ବଳି ପୂଜା ନିମନ୍ତେ ରାଜଦରବାରକୁ ଆସୁଥିଲା । ଏହା ପ୍ରଦାନ ନ କଲେ ଜୁଆଙ୍ଗ-ଭୂୟାଁମାନଙ୍କୁ ଅକଥନୀୟ ଦଣ୍ଡ ପ୍ରଦାନ କରାଯାଉଥିଲା । ଏପରିକି ଶୂଳି ଦଣ୍ଡରେ ମଧ୍ୟ ଦଣ୍ଡିତ ହେବାକୁ ପଡୁଥିଲା । ରାଜ ଦରବାରକୁ ପାଣି ଯୋଗାଇବା ପାଇଁ ଜୁଆଙ୍ଗ ପିଢ ଅନ୍ତର୍ଗତ ବଡ଼କମଣ୍ଡରା, ସାନକମଣ୍ଡରା, ଧନୁର୍ଜୟପୁର, ମିଶ୍ରମାଳ, ହାତୀନୋଟା, ଗୋପୀନାଥପୁର, ଖୁଣ୍ଟବନ୍ଧ, ଦଧିବାମନପୁର, ଦଣ୍ଡସେନାପଶି ଏବଂ ନଇଗୋଡା ଗ୍ରାମର ଲୋକଙ୍କୁ **'ପାଣିଆ ଦିଗାର'** ଭାବେ ଜାଗିରି ପ୍ରଦାନ କରାଯାଇଥିଲା । ଏହା ସାଙ୍ଗକୁ ଚଂପେଇ ଗ୍ରାମର ଲୋକଙ୍କୁ ଗୋନାସିକାସ୍ଥିତ ବ୍ରହ୍ମେଶ୍ୱର ମନ୍ଦିର ଯାବତୀୟ କାର୍ଯ୍ୟ କରିବା ପାଇଁ ଜାଗିରି ମିଳିଥିଲା । ଜୁଆଙ୍ଗ-ଭୂୟାଁ ସଂପ୍ରଦାୟର ଲୋକେ ମଧ୍ୟ ବ୍ରହ୍ମେଶ୍ୱର କୋଠିକୁ **'ଚୂଲିଫୁଙ୍କା'** ବାବଦକୁ ରାଶି ଓ ସୋରିଷ ପ୍ରଦାନ କରୁଥିଲେ । ବାରୁଣିମେଳାକୁ ମାଗଣାରେ **'ଭେଟିଭାର'** ଦେଉଥିଲେ । ଦୁର୍ଗାପୂଜା ଓ ବାରୁଣିମେଳା ସମୟରେ ବ୍ରହ୍ମେଶ୍ୱର ମନ୍ଦିର ଚୂଡାରେ ପତାକା ଧାରଣ କରିବା ପାଇଁ ସିଙ୍କୁଳାପଦା ଗ୍ରାମବାସୀଙ୍କୁ ରାଜାଙ୍କର ହୁକୁମ୍ ଥିଲା । ଆଜି ବି ଏହି ଗ୍ରାମର ଲୋକେ ମନ୍ଦିରରେ ପତାକା ବାନ୍ଧିବା କାମ କରୁଛନ୍ତି ।

[ ତଥ୍ୟ ସହାୟତା: ବୀରବର ନାଏକ, ସାଧାରଣ ସଂପାଦକ, ବନବାସୀ ଚେତନା ମଣ୍ଡଳ ଏବଂ 'ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ'-ବିପିନ ବିହାରୀ ଦାସ (୧୯୮୯) ]



# ଦ୍ୱିତୀୟ ପରିଚ୍ଛେଦ

## ଜୁଆଙ୍ଗ ଅର୍ଥନୈତିକ ଜୀବନ

*(economic life of the Juang)*


ଜୁଆଙ୍ଗ ମହିଳାମାନେ ଜଙ୍ଗଲରୁ ଶାଳପତ୍ର ସଂଗ୍ରହ କରି ଗାଁକୁ ଫେରୁଛନ୍ତି ।



➤ **ଝଡିପୋକ ସଂଗ୍ରହ କୌଶଳ: ଜୁଆଙ୍ଗ ଯୁବକଟି ଜାଲ (ମଶାରି) ବିଛେଇ ଝଡିପୋକ (କଲେଇ) ଧରିବାରେ ବ୍ୟସ୍ତ**

ପ୍ରକୃତି, ଜଙ୍ଗଲ, ନଦୀ, ପାହାଡ, ଝରଣା ଆଦିରୁ ଜୁଆଙ୍ଗମାନେ ନିଜନିଜର ବଞ୍ଚିବା କଳା ଆହରଣ କରିଥା'ନ୍ତି । ପେଟ ଚାଖଣ୍ଡ ପୂରଣ କରିବା ପାଇଁ ପ୍ରକୃତି ସେମାନଙ୍କୁ ଭରପୂର ସାମଗ୍ରୀ ଯୋଗେଇ ଦେଇଛି । ଆମ ଭଳି ଚାକିରି, ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ, ସେୟାର ବଜାର, ପୁଞ୍ଜି, ବ୍ୟାଙ୍କ ଡିପୋଜିଟ୍, ଲାଇଫ୍ ଇନ୍‌ସୁରାନ୍‌ସ ଓ ଅନ୍ୟାନ୍ୟ ଅର୍ଥଲଗାଣକାରି ସଂସ୍ଥା ସହ ସେମାନଙ୍କର କିଛି ବି ସଂପର୍କ ନ ଥାଇ ମଧ୍ୟ ବେଶ୍ ଶାନ୍ତିରେ ଜୀବନ କଟାଇ ପାରନ୍ତି ପ୍ରକୃତି କୋଳରେ ରହୁଥିବା ଏହି ଜୁଆଙ୍ଗମାନେ । ପାହାଡିଆ ଉଚ୍ଚଭୂମିରେ ପୋଡୁଚାଷ କରି ଜୁଆଙ୍ଗମାନେ ନିଜର ଜୀବିକା ନିର୍ବାହ କରୁଥିବାବେଳେ ଜଙ୍ଗଲରୁ ଶିକାର କରି ଏବଂ ବିଭିନ୍ନ ବନଜାତ ଦ୍ରବ୍ୟ ସଂଗ୍ରହ କରି, ନଦୀରୁ ମାଛ ଧରି ଜୁଆଙ୍ଗମାନେ ନିଜର ଗୁଜୁରାଣ ମେଣ୍ଟେଇଥା'ନ୍ତି । ଏହା ସାଙ୍ଗକୁ ଜୁଆଙ୍ଗମାନେ ଗୃହପାଳିତ ପଶୁପକ୍ଷୀ ଗାଈ, ଛେଳି, ମେଣ୍ଢା, ଘୁଷୁରି, କୁକୁଡା, ବତକ ଆଦି ପାଳନ କରି ଏଥିରୁ ଦି' ପଇସା ଅର୍ଜନ କରିପାରୁଛନ୍ତି । ଏବେଏବେ ଜୁଆଙ୍ଗମାନେ ସରକାରଙ୍କ ପକ୍ଷରୁ କରାଯାଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ଶ୍ରମିକ ଭାବେ କାମ କରି କିଛି ପଇସା ଅର୍ଜନ କରିବା ଶିଖିଲେଣି । ଆଉ କିଛି ଜୁଆଙ୍ଗ



କେନ୍ଦୁଝର ଜିଲ୍ଲା ପ୍ରଶାସନ ପକ୍ଷରୁ ବୈଷୟିକ ପ୍ରଶିକ୍ଷଣ ପାଇଥିବା ଦୁଇ ଜୁଆଙ୍ଗ ଯୁବକ କାଠ କବାଟ ପ୍ରସ୍ତୁତ କରୁଛନ୍ତି ।

କାଠ, ବାଉଁଶ, ଶିଙ୍ଗରେ ପାନିଆ ଏବଂ ବାଉଁଶରେ ପ୍ରସ୍ତୁତ ଟୋକେଇ, କୁଲା, ଝୁଡି ଓ ଅନ୍ୟାନ୍ୟ ସାମଗ୍ରୀ ନିକଟସ୍ଥ ବଜାରରେ ବିକ୍ରି କରି ପେଟ ପୋଷୁଛନ୍ତି । ଜୁଆଙ୍ଗ ଯୁବକ, ଯୁବତୀମାନେ ପାଠ ପଢି ଚାକିରୀ କରି ନିଜର ଜୀବିକା ନିର୍ବାହ କରିବାର କଳା ମଧ୍ୟ ଶିକ୍ଷାଲାଭ କଲେଣି ।

## କୃଷି ଓ ଜଙ୍ଗଲଜାତ ଦ୍ରବ୍ୟ

*(cultivation and forest products: economic life of the Juang)*



ଗୋନାସିକା ସ୍ଥିତ ଜୁଆଙ୍ଗ ସାପ୍ତାହିକ ହାଟ



➤ ତିନିଜଣ ଜୁଆଙ୍ଗ ବୃଦ୍ଧା ଗୋନାସିକା ହାଟକୁ ଯାଉଛନ୍ତି

ଜୁଆଙ୍ଗମାନେ ହେଉଛନ୍ତି ପ୍ରକୃତିର ସନ୍ତାନ । ପ୍ରକୃତି କୋଳରେ ବଢିଥିବା ଜୁଆଙ୍ଗମାନେ ନିଜକୁ ବଣମୂଲକର ମାଲିକ ବୋଲି ଭାବିଥା'ନ୍ତି ଏବଂ ଜଙ୍ଗଲକୁ ସେମାନଙ୍କର ନିଜ ସଂପତ୍ତି ବୋଲି ମନେ କରନ୍ତି । ଜଙ୍ଗଲ, ପାହାଡ, ପର୍ବତ, ଝରଣା, ନଦୀ ସବୁ ସେମାନଙ୍କର ସଂପତ୍ତି । ପ୍ରକୃତିପ୍ରଦତ୍ତ ଜଙ୍ଗଲଜାତ ଦ୍ରବ୍ୟ, ଫଳମୂଳ, ଶସ୍ୟ ଓ ଅନ୍ୟାନ୍ୟ ଜଙ୍ଗଲୀ ଖାଦ୍ୟ ସାମଗ୍ରୀ ଉପରେ ଜୁଆଙ୍ଗମାନେ ନିର୍ଭର କରିଥାନ୍ତି । କୃଷି ହେଉଛି ଜୁଆଙ୍ଗମାନଙ୍କର ମୁଖ୍ୟ ଜୀବିକା । କୃଷି ବ୍ୟତୀତ ଜୁଆଙ୍ଗମାନେ ପଶୁପାଳନ, ବଣଜଙ୍ଗଲରୁ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ, ପଶୁପକ୍ଷୀ ଶିକାର, ନଦୀ, ନାଳରୁ ମାଛ ଧରିବା, ବାଉଁଶ ନିର୍ମିତ ଉପକରଣ ବିକ୍ରିକରି ନିଜର ଜୀବିକା ନିର୍ବାହ କରିଥାନ୍ତି ।

'ପୋଡୁ ଚାଷ' *(shifting cultivation)* ହେଉଛି ଜୁଆଙ୍ଗମାନଙ୍କର ଜୀବନ ଜୀବିକାର ପ୍ରମୁଖ ମାଧ୍ୟମ । ଜୁଆଙ୍ଗମାନେ ଚାଷ ପାଇଁ ପ୍ରଥମେ ବଡ଼ବଡ଼ ପାହାଡକୁ ବାଛନ୍ତି । ଏହି ପାହାଡିଆ ଉଚ୍ଚ ଭୂମିକୁ 'ତଇଳା' କହନ୍ତି । ଜୁଆଙ୍ଗମାନେ ପାହାଡରୁ ବଡ଼ଛୋଟ ଗଛଲତା, ବୁଦା ସଫା କରିବା ପରେ ଏଥିରେ ହଳ କରି ମାଟିକୁ ଖୋଳି ଦିଅନ୍ତି । ମାଟି ହଳ ହୋଇଯିବା ପରେ ଏଥିରେ ଧାନ,

ରାଶି, ଯୋରିଷ, ଗଙ୍ଗେଇ, କାଙ୍ଗୁ, ମକା ଆଦି ଫସଲ ବୁଣିଥାନ୍ତି ।ପାହାଡ, ପର୍ବତମାନଙ୍କୁ ସଫା କରି ଜୁଆଙ୍ଗମାନେ ପ୍ରଥମ ବର୍ଷ ରାଶି, ଦ୍ୱିତୀୟ ଓ ତୃତୀୟ ବର୍ଷ ଧାନ ଓ ପରବର୍ଷ ପୁନର୍ବାର ରାଶି ବୁଣିଥାନ୍ତି । ଏହିଭଳି ଭାବେ ଜୁଆଙ୍ଗମାନେ ଗୋଟିଏ ତଇଳାକୁ ଆଠଦଶ ବର୍ଷ ଚାଷ କରିବା ପରେ ମାଟିର ଉର୍ବରତା କମିଯାଇଥାଏ । ଏହାପରେ ଜୁଆଙ୍ଗମାନେ ସେହି ତଇଳାକୁ ଛାଡିଦେଇ ପୋଡୁଚାଷ ନିମନ୍ତେ ଆଉ ଏକ ନୂତନ ପାହାଡ ଅନୁସନ୍ଧାନ କରନ୍ତି । ସେଇ ନୂଆ ପାହାଡରୁ ଗଛଲତା ପୋଡି ସଫା କରି ସେଠାରେ ମଧ୍ୟ ପୋଡୁ ଚାଷ ଆରଂଭ କରନ୍ତି । ଜୁଆଙ୍ଗମାନେ ପାହାଡରୁ ବୃକ୍ଷଗୁଡିକୁ କାଟି ଡାଳ ଓ ପତ୍ରକୁ ଏକାଠି କରି ପୋଡି ଦିଅନ୍ତି । ସେହି ପାଉଁଶକୁ ମାଟିରେ ମିଶେଇ ଦେଇ



► ଜୁଆଙ୍ଗ ମହିଳାଟି ବାଉଁଶ ପାତିଆ ସହାୟତାରେ ବିଭିନ୍ନ ଉପକରଣ ପ୍ରସ୍ତୁତ କରୁଛି ।



▶ ଜୁଆଙ୍ଗ ମହିଳାଟି ବାଉଁଶ ପାତିଆ ସହାୟତାରେ ବିଭିନ୍ନ ଉପକରଣ ପ୍ରସ୍ତୁତ କରୁଛି ।

ଜୁଆଙ୍ଗମାନେ ସେଥିରେ ନାନା ପ୍ରକାର ଶସ୍ୟ ମଞ୍ଜି ବୁଣନ୍ତି । ଏହାବ୍ୟତୀତ ଜୁଆଙ୍ଗମାନେ ନିଜନିଜର ଘର ପଛପଟେ ଥିବା ଜମିରେ ନାନା ପ୍ରକାର ଶସ୍ୟ ଓ ପନିପରିବା ଚାଷ ମଧ୍ୟ କରିଥାନ୍ତି । ଏଠାରେ ଜୁଆଙ୍ଗମାନେ କଖାରୁ, ଅମୃତଭଣ୍ଡା, ସଜନାଛୁଇଁ, ଶାଗ, ମକା, ଭେଣ୍ଡି, କାକୁଡି, ଧୂଆଁପତ୍ର ଆଦି ଚାଷ କରିଥାନ୍ତି । ଜୁଆଙ୍ଗ ଅଞ୍ଚଳର ପାହାଡିଆ ଭୂଇଁ (ତଇଳା ଭୂମି)ରେ ଧାନ, ରାଶି (ରାମତିଳା), ବ୍ୟତୀତ କୋଳଥ, ହରଡ, ମାଣ୍ଡିଆ (କୁଦୁ), ମକା (ଜୁଆଣି), ବାଜରା (ଜିଞ୍ଜାରି/ଗଙ୍ଗେଇ), ବିରି, ବରୁଗୁଡି (କାଳାର୍), ସୋରିଷ (ସୁରୁଷୁ), ଜାଲି, କସଡ଼ା, କାଠିଆ, କାଙ୍ଗୁ, କନ୍ତଳା, ସୁତୁରିଡାଲି ଆଦି ଚାଷ କରାଯାଇଥାଏ । ଭାତ ଜୁଆଙ୍ଗମାନଙ୍କର ମୁଖ୍ୟ ଖାଦ୍ୟ । ଏଥିପାଇଁ ଜୁଆଙ୍ଗମାନେ ତଇଳାରେ ବିଭିନ୍ନ କିସମର ଧାନ ବୁଣିଥାନ୍ତି । ଏହାବ୍ୟତୀତ ଜୁଆଙ୍ଗମାନେ ଜଙ୍ଗଲରୁ ନାନା ପ୍ରକାର ଖାଦ୍ୟଦ୍ରବ୍ୟ ସଂଗ୍ରହ କରିଥାନ୍ତି ।

ଜୁଆଙ୍ଗମାନେ ବିଭିନ୍ନ କିସମର ଜମିରେ କୃଷିକାର୍ଯ୍ୟ କରିଥାନ୍ତି । କିସମ ଅନୁଯାୟୀ ଜୁଆଙ୍ଗମାନଙ୍କ ଜମିର ଭିନ୍ନଭିନ୍ନ ନାମକରଣ କରାଯାଇଥାଏ । ପୋଡୁ ଚାଷ ପାଇଁ ଯେଉଁ ପାହାଡିଆ ଉଚ୍ଚ ଭୂମିକୁ ବ୍ୟବହାର କରାଯାଇଥାଏ ସେହି କିସମର ଜମିକୁ 'ତଇଳା' କହନ୍ତି । ସମୟକ୍ରମେ ତଇଳାକୁ ଭିନ୍ନଭିନ୍ନ

ନାମରେ ଚିହ୍ନଟ କରାଯାଇଥାଏ । ପ୍ରଥମ ବର୍ଷ ତଇଲାରେ ରାଶି, ମକା, ଢିଞ୍ଜାରି, ବିରି, ଅଳସୀ, କୋଳଥ ଆଦି ଚାଷ କରାଯାଇଥାଏ । ପ୍ରଥମ ବର୍ଷ ଚାଷ ହୋଇଗଲାପରେ ତଇଳା ଜମିକୁ **'ଏକାନ୍'** କହନ୍ତି । ଏକାନ୍ (ତଇଳାର ଦ୍ୱିତୀୟ ବର୍ଷ)ରେ ବିଶେଷକରି ଧାନ, ମକା (ଜୁଆଣି), ମାଣ୍ଡିଆ (କୁଦୁ), ବାଜରା ଚାଷ ସହିତ ବରୁଗୁଡି (ରୁମା), କାକୁଡି, କଖାରୁ, ସାରୁ ଆଦି ଫସଲ ଓ ପନିପରିବା ଚାଷ ହୋଇଥାଏ । ଏକାନ୍‌ରେ ଗୋଟିଏ ବର୍ଷ ଚାଷ ହେଲାପରେ ସେହି ଜମିକୁ **'ନଳା'** କହନ୍ତି । ନଳାରେ



▸ ଜଣେ ଜୁଆଙ୍ଗ ମହିଳା ମୂଷଳ (ଏଳେ) ସହାୟତାରେ ଧାନ କୁଟୁଛନ୍ତି



▶ ଘରେ କୁକୁଡା ଓ ବାହାରେ ପିଣ୍ଡାରେ ବସିଛନ୍ତି ଜଣେ ଜୁଆଙ୍ଗ ବୃଦ୍ଧ

ପୁନର୍ବାର (ପ୍ରଥମବର୍ଷ ତଇଲା ଭଳି) ରାଶି, ମକା, ବିରି, ଅଳସୀ ଚାଷ କରାଯାଇଥାଏ । 'ନଳା' ଜମିରେ ଗୋଟିଏ ବର୍ଷ ଫସଲ ଅମଳ ହୋଇଯିବା ପରେ ସେହି ଜମିକୁ **'ଗୁଡା'** କହନ୍ତି । ଗୁଡାରେ (ଏକାନ୍‌ରେ ଦ୍ୱିତୀୟ ବର୍ଷ କରାଯାଇଥିବା ଫସଲ ଭଳି) ଧାନ, ମକା, ମାଣ୍ଡିଆ (କୁଦୁ), ବାଜରା ଚାଷ ସହିତ କାକୁଡି, ବରୁଗୁଡି, କଖାରୁ, ସାରୁ ଆଦି ଫସଲ ଓ ପନିପରିବା ଚାଷ ହୋଇଥାଏ । ଏହିଭଳି ଭାବେ ତଇଲା ଜମି ଆଠ ଦଶ ବର୍ଷ ପର୍ଯ୍ୟନ୍ତ ଚାଷ ହେବା ପରେ ଉର୍ବର ଶକ୍ତି ହ୍ରାସ ପାଇଗଲେ ଜମିକୁ ପରିତ୍ୟକ୍ତ କରିଦେଇ ଜୁଆଙ୍ଗମାନେ ନୂତନ ତଇଲା ଜମିର ଅନୁସନ୍ଧାନ କରନ୍ତି । ନଦୀ ବା ନାଳ ନିକଟରେ ଥିବା ସମତଳ ଜମିକୁ ଜୁଆଙ୍ଗମାନେ **'ବିଲ ଜମି'** ବୋଲି କହିଥା'ନ୍ତି । ଜୁଆଙ୍ଗମାନେ ନିଜନିଜର ଘର ଆଗ ଓ ପଛ ପଟରେ ମକା, ବାଜରା ଓ ବିଭିନ୍ନ ପ୍ରକାର ପନିପରିବା ଆଦି ଚାଷ କରିଥାନ୍ତି । ଏହି କିସମର ବାଡ଼ି ଜମିକୁ **'ବାଜାଡି'** କହନ୍ତି । ଜୁଆଙ୍ଗମାନେ ତଇଲା ଜମିରେ ବଳଦ କିମ୍ବା ମଇଁଷି ଦ୍ୱାରା ହଳ କରି ମାଟିକୁ ଚାଷ ଉପଯୋଗୀ କରିଥାନ୍ତି । ଜୁଆଙ୍ଗମାନେ ଗୋଟିଏ ଜମିରେ ଏକ ସମୟରେ ଭିନ୍ନଭିନ୍ନ ଫସଲ *(intercroping)* କରିଥାନ୍ତି ।

ଜୁଆଙ୍ଗମାନେ ଶୀତଦିନେ (ଅକ୍ଟୋବର-ଡିସେମ୍ବର) ନିକଟସ୍ଥ ଜଙ୍ଗଲରୁ ପିତା ଆଳୁ, ବଇଙ୍ଗା ଆଳୁ, ପାଣି ଆଳୁ, କାଲୁକ୍ ବା କଣ୍ଟା ଆଳୁ, ଓଲ, ମିଠା ଆଳୁ, ଡିମଙ୍ଗଆଳୁ, ସଇଣ୍ଡ ଆଦି ନାନା ପ୍ରକାର ଆଳୁ, ଲାଙ୍କଣଇ (କୁଙ୍କୁମ ରଙ୍ଗର ଏକପ୍ରକାର ଖଟାକୋଳି) କୋଳି ସଂଗ୍ରହ କରିଥାନ୍ତି । ଏହାବ୍ୟତୀତ ଜୁଆଙ୍ଗମାନେ ଗ୍ରୀଷ୍ମଦିନେ (ଏପ୍ରିଲ୍-ଜୁନ୍) ଜଙ୍ଗଲରୁ ନାନା ପ୍ରକାର ଜଙ୍ଗଲୀ ଆମ୍ବ, ପଣସ, କେନ୍ଦୁ, କୁଣ୍ଡୁଇ ଫଳ, ଗିଲିରି ଫୁଲ, ଜାମୁକୋଳି, ଚାରକୋଳି, ମହୁ, ଝୁଣା ଆଦି ସଂଗ୍ରହ କରିଥାନ୍ତି । ବର୍ଷା ଦିନେ ଜୁଆଙ୍ଗମାନେ ଜଙ୍ଗଲରୁ କୁସୁମ କୋଳି, ପୁଜେଇ କୋଳି, ଅଷାଡୁ କୋଳି, କୁସାଇ-ତେଣା (ଦୁଧକୋଳି), ଏବଂ କୁଇଲାରି ଶାଗ, ପିତାବାଲି (ପିତାଶାଗ), ଚାକୁଣ୍ଡା ଶାଗ, କୁରୁଣ୍ଣି ଶାଗ, ଶଙ୍ଖୁଆ ଶାଗ, ଲାଇଙ୍ଗା ଶାଗ, ବୋଇତାଳୁ-ଲଟାକ (ଏକ ପ୍ରକାର ଖଟା ଶାଗ), ଶିଲିମ୍ ଫୁଲ, ଆଦି ନାନା ପ୍ରକାର ଜଙ୍ଗଲୀ ଶାଗ ଏବଂ ଜଙ୍ଗଲୀ ଛତୁ ସଂଗ୍ରହ କରିଥାନ୍ତି ।

ଜୁଆଙ୍ଗମାନେ ଶିକାରପ୍ରିୟ ଏବଂ ସେମାନେ ଜଙ୍ଗଲରୁ ଛୋଟବଡ଼ ଶିକାର ସଂଗ୍ରହ କରିଥାନ୍ତି । ଅତୀତରେ ଜୁଆଙ୍ଗମାନେ ଜଙ୍ଗଲରୁ ବାଘ, ଭାଲୁ, ଗୟଳ, ହରିଣ, ବାର୍ହା, ସମ୍ବର ଆଦି ଜଙ୍ଗଲୀ ପଶୁ ଶିକାର କରି ସେମାନଙ୍କର ମାଂସ ଭକ୍ଷଣ କରୁଥିଲେ । ମାତ୍ର, ଆଜି ଜଙ୍ଗଲ କ୍ଷୟ ପାଇଯାଇଥିବାରୁ ଏସବୁ ଜଙ୍ଗଲୀ ପ୍ରାଣୀ ଦେଖିବାକୁ ମିଳୁ ନାହାନ୍ତି । ଅପରପକ୍ଷେ, ସରକାରଙ୍କ ନାନା ପ୍ରକାର ନୀତିନିୟମ ଓ ନାଲି ଆଖିକୁ ଡରି ଜୁଆଙ୍ଗମାନେ ଶିକାର କରିବା ଏକ ପ୍ରକାର ଛାଡିଦେଇଛନ୍ତି । ଜୁଆଙ୍ଗମାନେ ଜଙ୍ଗଲରୁ ନାନାପ୍ରକାର କୀଟପତଙ୍ଗ ଓ ପୋକଯୋକ ସଂଗ୍ରହ କରି ତାହାକୁ ଖାଦ୍ୟ ଭାବେ ଗ୍ରହଣ



କରିଥାନ୍ତି । କାଇ (ନାଲି ଉଦା), କଲେଇ (ଝଡ଼ିପୋକ), ଉଇ ଆଦି ଜୁଆଙ୍ଗଙ୍କ ଅନ୍ୟତମ ପ୍ରିୟ ଖାଦ୍ୟ ।

ଦିନବେଳା ଜୁଆଙ୍ଗମାନେ କାନ୍ଧରେ ଟାଙ୍ଗିଆ ଧରି ଜଙ୍ଗଲକୁ ବାହାରି ପଡନ୍ତି ଏବଂ ସାଙ୍ଗରେ ଶାଳପତ୍ର, ଜାଳେଣୀକାଠ, ଜଙ୍ଗଲୀ ଫଳ, ମୂଳ ସଂଗ୍ରହ କରି ସଂଜବେଳକୁ ଗାଁକୁ ଫେରନ୍ତି । ଏଗୁଡିକୁ ନିକଟସ୍ଥ ହାଟମାନଙ୍କରେ ବିକ୍ରି କରି କିଛି ଅର୍ଥ ରୋଜଗାର କରିଥାନ୍ତି । ନିକଟସ୍ଥ ପାହାଡରେ ଥିବା ଗଛକାଟି ସଫା କରି ପୋଡୁ ଚାଷ ମାଧ୍ୟମରେ ଧାନ, ମକା, ମାଣ୍ଡିଆ, ରାଶି, ସୋରିଷ, ମୁଗ, ବିରି ଆଦି ଶସ୍ୟ, ତୈଳବୀଜ ଓ ଡାଲି ଜାତୀୟ ଫସଲ କରିଥାନ୍ତି । ଗ୍ରୀଷ୍ମ ଓ ବସନ୍ତ ଋତୁରେ କୌଣସି ଫସଲ ଅମଳ ହେବାର ସଂଭାବନା ନଥିବାରୁ ଏହି ସମୟରେ ଜୁଆଙ୍ଗମାନେ ଜଙ୍ଗଲରୁ ଶିକାର ଓ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହରେ ଲାଗିପଡନ୍ତି । ଏହି ସମୟରେ ଜୁଆଙ୍ଗ ପୁରୁଷମାନେ ବିଭିନ୍ନ ପ୍ରକାର ଶିକାର ସାମଗ୍ରୀ ଧରି ଶିକାର କରିବାକୁ ଏବଂ ମହିଳାମାନେ ସାଥୀରେ ଟୋକେଇ ଧରି ନାନା



► ଜୁଆଙ୍ଗ ମହିଳା ଏବଂ ନିଜର ଶିଶୁ ପୁତ୍ର ସହିତ କଲେଇ (ଝଡିପୋକ) ସଂଗ୍ରହରେ ବ୍ୟସ୍ତ



➤ ମାଛ, କଙ୍କଡା ଧରିବାରେ ବ୍ୟସ୍ତ ଦୁଇଜଣ ଜୁଆଙ୍ଗ ଯୁବକ

ପ୍ରକାର ଜଙ୍ଗଲୀ ଦ୍ରବ୍ୟ ସଂଗ୍ରହ କରିବାକୁ ଜଙ୍ଗଲକୁ ବାହାରି ପଡନ୍ତି । ଜୁଆଙ୍ଗମାନେ ଘରେ କୁକୁଡା, ହଂସ, ବତକ, ଛେଳି, ମେଣ୍ଢା, ଘୁଷୁରୀ ଭଳି ଗୃହପାଳିତ ପଶୁପକ୍ଷୀ ପାଳନ କରିଥାନ୍ତି । ଛେଳି ହେଉଛି ଜୁଆଙ୍ଗମାନଙ୍କ ପାଇଁ ଏକ ଅର୍ଥକରୀ ଗୃହପାଳିତ ପଶୁ । ଜଙ୍ଗଲରୁ ଜଙ୍ଗଲୀ କୁକୁଡା, ମୟୂର ଅଣ୍ଡା ସଂଗ୍ରହ କରି ଜୁଆଙ୍ଗମାନେ ନିକଟସ୍ଥ ହାଟମାନଙ୍କରେ ବିକ୍ରି କରିଥାନ୍ତି । ଏହା ସହିତ ଜୁଆଙ୍ଗମାନେ କାଇ (ନାଲି ଜଦା), କଲେଇ (ଝଡିପୋକ), ଉଇ ସଂଗ୍ରହ କରିଥାନ୍ତି ।ଏହାକୁ ଜୁଆଙ୍ଗମାନେ ଖାଦ୍ୟ ଭାବେ ବ୍ୟବହାର କରିଥାନ୍ତି ।କିଛି ଜୁଆଙ୍ଗ ବାଉଁଶ ନିର୍ମିତ ଟୋକେଇ, ଝୁଡି ପ୍ରସ୍ତୁତ କରି ହାଟବଜାରରେ ବିକ୍ରି କରୁଥିବା ଦେଖିବାକୁ ମିଳିଥାଏ । ବାଉଁଶ ନିର୍ମିତ ନାନା ପ୍ରକାର ଉପକରଣ ପ୍ରସ୍ତୁତ କରି ଜୁଆଙ୍ଗମାନେ ନିକଟସ୍ଥ ହାଟବଜାରରେ ବିକ୍ରି କରି ନିଜର ଜୀବିକା ନିର୍ବାହ କରିଥାନ୍ତି । ହାଣ୍ଡିଆର କିଣାବିକା ମଧ୍ୟ ଜୁଆଙ୍ଗମାନଙ୍କ ଅର୍ଥନୀତିକୁ କିଛି ମାତ୍ରାରେ ପ୍ରଭାବିତ କରିଥାଏ ।

ଜୁଆଙ୍ଗମାନେ ନଦୀ, ଝରଣାରୁ ମାଛ, କଙ୍କଡା ଆଦି ଧରନ୍ତି । ଜୁଆଙ୍ଗମାନେ ଏକ ପ୍ରକାର ପିତା ଗଛର ଛେଲିକୁ ଚୂଲିରେ ସିଝେଇ ଏହାର ପିତା ପାଣିକୁ ନଦୀରେ ଫିଙ୍ଗି ଦିଅନ୍ତି । ଏହି ପିତା ପାଣି

ଏତେ ଉତ୍କଟ ହୋଇଥାଏ ଏଥିରେ ମାଛସବୁ ମରି ଯାଆନ୍ତି କିମ୍ବା ଚେତାଶୂନ୍ୟ ହୋଇ ପାଣିରେ ଭାସନ୍ତି । ଏହାପରେ ଜୁଆଙ୍ଗମାନେ ଏହି ମଲା ମାଛକୁ ପାଣିରୁ ସଂଗ୍ରହ କରି ଏହାକୁ ସିଝେଇ କିମ୍ବା ପୋଡି ଖାଇଥାନ୍ତି । ଜୁଆଙ୍ଗମାନେ ମାଛ ଧରିବା ପାଇଁ ଜାଲ, ମୁଗୁରା, ବଢା ଭଳି ବାଉଁଶ ନିର୍ମିତ ମାଛଧରା ଉପକରଣର ବ୍ୟବହାର କରିଥାନ୍ତି ।

ଏହାବ୍ୟତୀତ ଜୁଆଙ୍ଗମାନେ ଜଙ୍ଗଲରୁ ଜାଳେଣୀ କାଠ ସଂଗ୍ରହ କରି ନିକଟସ୍ଥ ହାଟରେ ବିକ୍ରି କରି କିଛି ଅର୍ଥ ରୋଜଗାର କରିବାକୁ ସକ୍ଷମ ହୋଇଥାନ୍ତି । ଜୁଆଙ୍ଗମାନେ କେବେହେଲେ ଦିନମଜୁରିଆଙ୍କ ଭଳି ଅନ୍ୟମାନଙ୍କ ନିକଟରେ କାମ କରିବାକୁ ପସନ୍ଦ କରି ନଥା'ନ୍ତି । ମାତ୍ର, ଉତ୍କଟ ଦାରିଦ୍ର୍ୟ କାରଣରୁ ଏବେଏବେ ଏମାନେ ମଜୁରୀ କରିବା ଆରମ୍ଭ କଲେଣି । ଏବେ କିଛି ଜୁଆଙ୍ଗ ଯୁବକ, ଯୁବତୀ ପାଠ ପଢି ସରକାରୀ ଚାକିରୀ କରି ଦି' ପଇସା ରୋଜଗାର କରୁଥିବାର ଦେଖାଗଲାଣି ।

ଉଭୟ ଜୁଆଙ୍ଗ ପୁରୁଷ ଓ ମହିଳାମାନେ କର୍ମପ୍ରବଣ । କୃଷି କ୍ଷେତ୍ରରେ ହେଉ କି ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହରେ ଉଭୟ ପୁରୁଷ ଓ ମହିଳାମାନେ ସାମିଲ୍ ହୋଇଥାନ୍ତି । ଜୁଆଙ୍ଗ ପୁରୁଷମାନେ ଶକ୍ତିଶାଳି ହୋଇଥିବାରୁ ତଇଲାରୁ ଗଛ କାଟି ସଫା କରିବା, ହଳ କରିବା, ମାଟି ହାଣିବା, ଗଛ ଚଢି ପକ୍ଷୀ ଧରିବା ଆଦି କାମ କରନ୍ତି । ତଇଲାରେ ମଞ୍ଜି ବୁଣିବା, ଘାସ ବାଛିବା, ଫସଲ ଅମଳ କରିବା


ଜୁଆଙ୍ଗ କାଠ ମାଣ



ଜୁଆଙ୍ଗଙ୍କ ଓଳିଆ

ଆଦି କାର୍ଯ୍ୟ ଉଭୟ ପୁରୁଷ ଓ ମହିଳାମାନେ କରିଥାନ୍ତି । ପଶୁ, ପକ୍ଷୀ ଶିକାର କରିବା, ଜଙ୍ଗଲରୁ ମହୁ ସଂଗ୍ରହ ଆଦି କାମ ଜୁଆଙ୍ଗ ପୁରୁଷମାନେ କରିଥାନ୍ତି । ମାତ୍ର, ଜୁଆଙ୍ଗ ମହିଳାମାନେ ଜଙ୍ଗଲଜାତ ଫଳମୂଳ, ଜଙ୍ଗଲୀ ଆଳୁ ଆଦି ସଂଗ୍ରହ କରିଥାନ୍ତି । ପୁରୁଷମାନେ ଘର ତିଆରି କରିବା, ଛପର ପକେଇବା କାମ କରୁଥିବାବେଳେ ମହିଳାମାନେ କାଛରେ ମାଟି ଲେପିବା, ଘର ଅଗଣା ସଫା ରଖିବା ଆଦି କାମ କରିଥାନ୍ତି । ମହିଳାମାନେ ଘରେ ଛୋଟ ପିଲାମାନଙ୍କର ଯତ୍ନ ନେବା ସହିତ ରୋଷେଇ ଦାୟିତ୍ୱ ତୁଲେଇଥା'ନ୍ତି ।

## ଜୁଆଙ୍ଗ ଖାଦ୍ୟ ଓ ପାନୀୟ

*(food and drink of the Juang)*



ପ୍ରତ୍ୟେକ ଜୁଆଙ୍ଗ ଘରେ ନୂଆ ଆମ୍ବ ଖିଆଯିବା ନେଇ ପ୍ରସ୍ତୁତି ଚାଲିଛି

ଭାତ ହେଉଛି ଜୁଆଙ୍ଗମାନଙ୍କର ମୁଖ୍ୟ ଖାଦ୍ୟ । ଏହାବ୍ୟତୀତ ଜୁଆଙ୍ଗମାନେ ବଣ ଜଙ୍ଗଲରୁ ଚେରମୂଳ, ପୋକଜୋକ, କୀଟପତଙ୍ଗ, ମାଂସ, କାଇ (ନାଲି ଜନ୍ଦା), କଲେଇ (ଝିଡ଼ିପୋକ), ଉଈ, ଆମ୍ବ, ପଣସ ଭଳି ଖାଦ୍ୟ ସଂଗ୍ରହ କରି ନିଜର କ୍ଷୁଧା ମେଣ୍ଟେଇଥାନ୍ତି । ଜୁଆଙ୍ଗମାନେ ବଣଜଙ୍ଗଲରୁ ମିଳୁଥିବା ମାଟିଆଳୁ, ପିତାଳୁ (ପିତାକନ୍ଦ), କନ୍ଦମୂଳ, ବଇଙ୍ଗା ଆଳୁ, ପାଣି ଆଳୁ, କାଲୁକ୍ ବା କଣ୍ଟା ଆଳୁ, ଓଲ, ମିଠାଆଳୁ, ଡିମଙ୍ଗଆଳୁ, ସଇଣ୍ଡ ଆଦି ମୂଳଜାତୀୟ ଖାଦ୍ୟ ଖାଆନ୍ତି । ଦୁର୍ଗମ ପାହାଡ ଉପରେ ରହୁଥିବା ଏହି ଜୁଆଙ୍ଗମାନେ କୀଟପତଙ୍ଗ, ସରୀସୃପ, ବନ୍ୟଜନ୍ତୁଙ୍କ ମାଂସ ଖାଇ ନିଜର କ୍ଷୁଧା ମେଣ୍ଟେଇଥାନ୍ତି । ଜୁଆଙ୍ଗମାନେ ନିଜ ବାଡ଼ିରେ କଖାରୁ, ଅମୃତଭଣ୍ଡା, ସଜନାଛୁଇଁ, ଶାଗ, ମକା, ଭେଣ୍ଡି, କାକୁଡି, ଧୂଆଁପତ୍ର ଆଦି ଚାଷ କରିଥାନ୍ତି । ଜୁଆଙ୍ଗ ଅଞ୍ଚଳର ପାହାଡିଆ ଭୂଇଁ (ଡଇଳା ଭୂମି)ରେ ଧାନ, ରାଶି ବ୍ୟତୀତ କୋଳଥ, ହରଡ, ମାଣ୍ଡିଆ, ବିରି, ବରୁଗୁଡି (ରୁମାଛୁଇଁ), ଗଙ୍ଗେଇ, ଜାଲି, କସଡ଼ା, କାଠିଆ, କାଙ୍ଗୁ, କନ୍ତଳା, ସୁତୁରିଡାଲି ଆଦି ଚାଷ କରାଯାଇଥାଏ । ଏହାବ୍ୟତୀତ ଜୁଆଙ୍ଗମାନେ ଜଙ୍ଗଲରୁ ନାନା ପ୍ରକାର ଜଙ୍ଗଲୀ ଫଳମୂଳ ସଂଗ୍ରହ କରିଥା'ନ୍ତି । ଆମ୍ବ, ପଣସ, କେନ୍ଦୁ,

କୁଣ୍ଡୁଇ ଫଳ, ଜାମୁକୋଳି, ଚାରକୋଳି, ବାଙ୍କୁରୁ (କୁସୁମ କୋଳି), କୁସାଇ-ତେଣା (ଦୁଧକୋଳି), ଲାଙ୍କଣଇ (ଏକପ୍ରକାର ଖଟାକୋଳି । ଏହାର ରଙ୍ଗ ଲାଲ୍ ହୋଇଥାଏ), ପୁଢେଇ କୋଳି, ଚାରକୋଳି ଆଦି ନାନା ପ୍ରକାର ଜଙ୍ଗଲୀ କୋଳି ଏବଂ କୁଇଲାରି ଶାଗ, ପିତାବାଲି (ପିତାଶାଗ), ଚାକୁଣ୍ଡା ଶାଗ, କୁରୁଣ୍ଣି ଶାଗ, ଶଙ୍ଖୁଆ ଶାଗ, ଲାଇଙ୍ଗା ଶାଗ, ବୋଇତାଳୁ-ଲଟାକ (ଏକ ପ୍ରକାର ଖଟା ଶାଗ), ଶିଲିମ୍ ଫୁଲ, ସୋରିଷ ଶାଗ ଆଦି ନାନା ପ୍ରକାର ଜଙ୍ଗଲୀ ଶାଗ ସଂଗ୍ରହ କରିଥାନ୍ତି । ଜୁଆଙ୍ଗମାନେ ନାନା ପ୍ରକାର ଜଙ୍ଗଲୀ ଛତୁ ସହିତ ଗୁଟୁକା ଛତୁ ସଂଗ୍ରହ କରିଥାନ୍ତି ।



ଜୁଆଙ୍ଗ ବୁଢିଟି ପିତାଳୁକୁ ଖଣ୍ଡଖଣ୍ଡ କରି କାଟୁଛି



▶ **ଭାତ ଓ ଲୁଣ ମୋ' ଖାଦ୍ୟ**

ବର୍ଷା ଦିନେ ଜୁଆଙ୍ଗମାନେ ଖାଦ୍ୟ ପାଇଁ ନାନା ହଇରାଣ ହରକତ ହୋଇଥାନ୍ତି । ବର୍ଷା ଦିନେ କିଛି ଖାଦ୍ୟ ନ ମିଳିବାରୁ ଜଙ୍ଗଲୀ ଛତୁ, ଅନେକ ପ୍ରକାର ଫଳମୂଳ, ଘରେ ସାଇତି ରଖିଥିବା ଫଙ୍ଗସଯୁକ୍ତ ଶୁଖିଲା ମାଛ, ମାଂସ ଆଦି ଜୁଆଙ୍ଗର ପେଟ ଚାଖଣ୍ଡକ ପୂରଣ କରିଥାଏ । ଜୁଆଙ୍ଗମାନେ ଯେତେ ପ୍ରକାର କୀଟକୁ ଖାଦ୍ୟ ଭାବେ ବ୍ୟବହାର କରନ୍ତି ସେମାନଙ୍କ ମଧ୍ୟରେ କାଇ, କଲେଇ, ଉଇ ହେଉଛି ସବୁଠୁ ପ୍ରିୟତମ । କାଇ ଅର୍ଥାତ୍ ନାଲି ଜହ୍ନା ଓ କଲେଇ ଅର୍ଥାତ୍ ଝିଟିପୋକ, ଉଇକୁ ସେମାନେ ନାନା ପ୍ରକାର ଖାଦ୍ୟ ତିଆରିକରି ଖାଇଥାନ୍ତି । ଜଙ୍ଗଲୀ ଗଛମାନଙ୍କରେ କାଇମାନେ ନିଜର ଲାଳ ସହାୟତାରେ ପତ୍ରକୁ ପତ୍ର ଯୋଡି ବସା କରିଥାନ୍ତି ଏବଂ ସେଥିରେ ସେମାନେ ହଜାର ହଜାର ସଂଖ୍ୟାରେ ଅଣ୍ଡା ଦେଇଥାନ୍ତି । ଏହି ଅଣ୍ଡାକୁ ଜୁଆଙ୍ଗମାନେ କାଇଭାତ ବୋଲି କହିଥାନ୍ତି । ଜୁଆଙ୍ଗମାନେ **କାଇଅଣ୍ଡା** ବା **କାଇଭାତ** ଖାଇବାକୁ ସବୁଠୁ ଭଲ ପାଇଥାନ୍ତି । ସେମାନେ ଜଙ୍ଗଲରୁ ଗଛଗଛ ବୁଲି କାଇବସାକୁ ଠାବ କରିବା ପରେ କାଇଅଣ୍ଡାକୁ ସଂଗ୍ରହ କରିଥାନ୍ତି । ଜୁଆଙ୍ଗମାନେ ଉଭୟ କାଇ ଓ କାଇର ଅଣ୍ଡାକୁ ସଂଗ୍ରହ କରି ସେମାନଙ୍କୁ ହାତରେ ଦଳି ଏକ ଅର୍ଦ୍ଧକଠିନ ପେଷ୍ଟ

ପ୍ରସ୍ତୁତ କରନ୍ତି । ଅଣ୍ଡା ଓ ମୃତ କାଇ ସହ ରସୁଣ, କଞ୍ଚାଲଙ୍କା, ଲୁଣ ପକେଇ ଶିଳରେ ବାଟି ଦିଅନ୍ତି । ଏହା ସାମାନ୍ୟ ଖଟା ଲାଗିଥାଏ ଏବଂ ଡୁଆଙ୍ଗମାନେ ଏହାକୁ ପ୍ରିୟ ଚାଖଣା ଭାବେ ବ୍ୟବହାର କରିଥାନ୍ତି । ଡୁଆଙ୍ଗମାନେ ମହୁଲି, ହାଣ୍ଡିଆ ସାଙ୍ଗରେ ଏହି କାଇ ଚଟଣୀକୁ ବ୍ୟବହାର କରିଥାନ୍ତି । ଅପରପକ୍ଷେ, ଏହି କାଇ ଚଟଣୀରେ ବହୁ ପ୍ରକାର ଔଷଧୀୟ ଗୁଣ ରହିଥିବା କଥା ଡୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଏହାକୁ ଖାଇଲେ ପେଟ ଗୋଳମାଳ ଭଲ ହୋଇଯିବା ସାଙ୍ଗକୁ ମୁଣ୍ଡବିନ୍ଧା, ଆଣ୍ଠୁଗଣ୍ଠି ରୋଗ ମଧ୍ୟ ଭଲ ହୋଇଯାଏ ବୋଲି ଡୁଆଙ୍ଗମାନେ ବିଶ୍ୱାସ କରନ୍ତି ।



☞ ପଣସ

▶ ନାଲି ଉଦ୍ଧା (କାଇ)



▶ କାଙ୍କୁ (ସୁଆଁ)

ଜୁଆଙ୍ଗମାନେ ବଣଜଙ୍ଗଲ ମଧ୍ୟରେ ଥିବା ଉଇ ହୁଙ୍କାକୁ ଠାବ କରି ସେଥିରୁ ଉଇ ସଂଗ୍ରହ କରନ୍ତି । ବର୍ଷା ଦିନେ ଝଡିପୋକ ବା କଲେଇ ମଧ୍ୟ ସଂଗ୍ରହ କରି ଖାଦ୍ୟ ଭାବେ ବ୍ୟବହାର କରିଥାନ୍ତି । ଅନେକ ଜୁଆଙ୍ଗ ଏହି ଉଇ ଓ ଝଡିପୋକକୁ କଞ୍ଚା ବାଟି ଖାଉଥିବାବେଳେ ଅନେକ ଏହାକୁ ଶୁଖେଇ ପିଠା କରି କିମ୍ବା ଭାଜି କରି ଖାଇଥାନ୍ତି । ଜୁଆଙ୍ଗ ମହିଳାମାନେ କାଇ ଅଣ୍ଡା, ଉଇ,



➤ ଖୁଦ ଛତୁ ବା ବାଲି ଛତୁ

କଲେଇ ସଂଗ୍ରହ କରିବା ପରେ ନିକଟସ୍ଥ ବଜାରକୁ ବିକ୍ରି କରିବାକୁ ଆଣିଥାନ୍ତି । ଶାଳ ପତ୍ରରେ ଏହାକୁ ଭାଗଭାଗ କରି ବିକ୍ରି କରିଥାନ୍ତି । ଆଜି ବି ଜୁଆଙ୍ଗମାନେ ବନ୍ୟ ଜୀବଜନ୍ତୁଙ୍କୁ ମାରି ତାହାର ମାଂସକୁ ଶୁଖେଇ ବର୍ଷା ଦିନ ପାଇଁ ସାଇତି ରଖିଥାନ୍ତି ।

ଅତୀତରେ ଜୁଆଙ୍ଗମାନେ ଗାଈ ମାଂସ ଖାଉଥିଲେ ବୋଲି *Verier Elwin* ତାଙ୍କର *Man in India-1948* ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଜୁଆଙ୍ଗମାନେ ଖାଦ୍ୟ ଖାଇବା ଉଦ୍ଦେଶ୍ୟରେ ଗାଈକୁ ମାରୁ ନଥିଲେ । ପର୍ବପର୍ବାଣିରେ ଗାଈ/ମଇଁଷିକୁ ବଳି ଚଢାଯିବାପରେ ଏହାର ମାଂସକୁ ଜୁଆଙ୍ଗମାନେ ଖାଉଥିଲେ । ଗାଈ ମାଂସ କଟାଯିବାପରେ ଭାଗଭାଗ କରି ଜୁଆଙ୍ଗମାନେ ନିଜ ଘରକୁ ଆଣିଥା'ନ୍ତି । ଘରେ ତାହାକୁ ମାଟି ହାଣ୍ଡିରେ ପାଣି ଦେଇ ସିଝାଇ ଦିଆଯାଏ । ଏହାପରେ ଏଥିରେ ଅଦା, ରସୁଣ, ହଳଦି, ଲୁଣ ଆଦି ପକାଇ ରୋଷେଇ କରି ଖାଦ୍ୟ ପ୍ରସ୍ତୁତ ହୋଇଥାଏ । ଅତୀତରେ ଗାଈ ମାଂସକୁ ମଧ୍ୟ କାଠ ନିଆଁରେ ପୋଡିକରି ଖାଉଥିଲେ । ଏହାବ୍ୟତୀତ ଜୁଆଙ୍ଗମାନେ

ଅତୀତରେ ବାଘ, ଭାଲୁ, ମାଙ୍କଡର ମାଂସ ଖାଉଥିଲେ । ଏବେ ବାଘ ଜଙ୍ଗଲରେ ନଥିବାରୁ ଜୁଆଙ୍ଗମାନେ ହୁଏତ ଏହି ଖାଦ୍ୟ ଖାଇବାରୁ ବଞ୍ଚିତ ଥାଇପାରନ୍ତି । ଏବେ ମଧ୍ୟ ଜୁଆଙ୍ଗମାନେ ଭାଲୁ ମାଂସ ଖାଉଥିବା ଜଣାଯାଏ ।

ଶୀତ ଦିନ ଆସିଲେ ଜୁଆଙ୍ଗମାନେ କୋଡି, କୋଦାଳ, ଶାବଳ ଧରି ଜଙ୍ଗଲରେ ବୁଲୁଥାନ୍ତି । ଜଙ୍ଗଲରେ ମାଟି ଭିତରେ ଥିବା ନାନା ପ୍ରକାର ଚେରମୂଳ, ଆଳୁ, ବଇଁଗା ଆଳୁ, ପିତାଳୁ, କନ୍ଦ, ଓଲୁଅ, ବଣସାରୁକୁ ଖୋଳି ଜୁଆଙ୍ଗମାନେ ଘରକୁ ନେଇଥାନ୍ତି । ବିଶେଷକରି ଶୀତଦିନେ ମାଟିତଳେ ଥିବା ନାନା ପ୍ରକାର ମୂଳ, ଚେର ଉପରେ ଜୁଆଙ୍ଗମାନେ ନିର୍ଭର କରିଥାନ୍ତି । ସେମାନେ ଜଙ୍ଗଲରୁ ସଂଗ୍ରହ କରିଥିବା ନାନା ପ୍ରକାର ଆଳୁ, କନ୍ଦମୂଳକୁ ସିଝେଇ ଖାଇଥାନ୍ତି । ଜଙ୍ଗଲରୁ ଏକ ପ୍ରକାର ପିତା ଆଳୁ ମିଳିଥାଏ । ଜୁଆଙ୍ଗମାନେ ଏହାକୁ ମାଟି ତଳୁ ଖୋଳି ତାକୁ ଭଲ ଭାବେ ପାଣିରେ ଧୋଇ ତାହାର ଉପର ଚୋପା ଛେଲି ଦିଅନ୍ତି । ଉପର ଚୋପା ଛେଲି ଦେବା ପରେ ତାକୁ ଆଳୁ ଚିପ୍ସ ଭଳି



ଜଲେଇ (ଝଡିପୋକ)



❧ ମହୁଲ ମଞ୍ଜି



❧ ବଣସାରୁ ଓ ଜଙ୍ଗଲୀ ଓଲୁଅ

ଖଣ୍ଡଖଣ୍ଡ କାଟି ଦିଅନ୍ତି । ଏହା ପରେ ଏହି କଟା ଖଣ୍ଡସବୁକୁ ଚୂଲିରେ ଘଣ୍ଟା ଘଣ୍ଟା ଧରି ସିଝେଇ ଥାନ୍ତି । ଚୂଲିରେ ଏହି ପିତା ଆଳୁକୁ ସିଝେଇବା ପରେ ଏଥିରୁ ପିତା ପାଣିତକ ବାହାରକୁ ବାହାର କରି ଦିଅନ୍ତି । ଏଭଳି କରିବା ପରେ ଏଥିରୁ ପିତା ଅଂଶ କିଛି ମାତ୍ରାରେ କମିଯାଇଥାଏ । ଏହି ସିଝା ପିତାଳୁ ଖଣ୍ଡସବୁକୁ ଏକ ଅଖା ବସ୍ତାରେ ବାନ୍ଧି ନିକଟସ୍ଥ ଯେକୌଣସି ଗଛରେ ବାନ୍ଧି ନଦୀରେ ସ୍ରୋତର ଅନୁକୂଳ ଦିଗରେ ପାଣି ଉପରେ ଭସେଇ ଦିଆଯାଏ । ନଦୀର ଜଳ ସ୍ରୋତରେ ଏହାର ପିତା ଅଂଶ ଧୋଇ ହୋଇଯାଇ ସ୍ରୋତରେ ଭାସିଯାଏ । ଏହି ବସ୍ତାକୁ ଗୋଟିଏ ରାତି କିମ୍ବା ଦୁଇ ରାତି ନଦୀରେ ଭସେଇ ଦେବା ପରେ ଏଥିରୁ ସଂପୂର୍ଣ୍ଣ ପିତା ଅଂଶ ଚାଲିଯାଏ । ପରେ ଏହା ଖାଇବା ଉପଯୋଗୀ ହୋଇଥାଏ । ଏହା ପରେ ଜୁଆଙ୍ଗମାନେ ଏହି ପିତା ଆଳୁକୁ ଚକଟି କିମ୍ବା ଖଣ୍ଡଖଣ୍ଡ କରି ବେଲାଏ ବେଲାଏ ପେଟ ପୂରିବା ପର୍ଯ୍ୟନ୍ତ ଖାଆନ୍ତି ।

ଜୁଆଙ୍ଗମାନେ ନଦୀ, ଝରଣାରୁ ମାଛ, କଙ୍କଡା ଆଦି ଧରି ଖାଆନ୍ତି । ଜୁଆଙ୍ଗମାନେ ଏକ ପ୍ରକାର ପିତା ଗଛର ଛେଲିକୁ ଚୂଲିରେ ସିଝେଇ ଏହାର ପିତା ପାଣିକୁ ନଦୀରେ ଫିଙ୍ଗି ଦିଅନ୍ତି । ଏହି ପିତା ପାଣି ଏତେ ଉତ୍କଟ ହୋଇଥାଏ ଏଥିରେ ମାଛସବୁ ମରି ଯାଆନ୍ତି କିମ୍ବା ଚେତାଶୂନ୍ୟ ହୋଇ ପାଣିରେ ଭାସନ୍ତି । ଏହାପରେ ଜୁଆଙ୍ଗମାନେ ଏହି ମଲା ମାଛକୁ ପାଣିରୁ ସଂଗ୍ରହ କରି ଏହାକୁ ସିଝେଇ କିମ୍ବା ପୋଡି ଖାଇଥାନ୍ତି । ଏବେଏବେ ଜୁଆଙ୍ଗମାନେ ଚାଉଳ ଖାଇବା ଶିଖିଲେଣି । ଭାତ ବ୍ୟତୀତ ମାଣ୍ଡିଆ ଜାଉ, ପଣସ ମଞ୍ଜି ସିଝା ଜୁଆଙ୍ଗମାନଙ୍କର ଏକ ପ୍ରମୁଖ ଖାଦ୍ୟ ।

**ଜଙ୍କଡା ପୋଡା (ଜୋଲାର୍ ଲାର୍ଡଜି)** ଜୁଆଙ୍ଗମାନଙ୍କର ଆଉ ଏକ ପ୍ରକାର ପୋଡା ଖାଦ୍ୟ । ଜୁଆଙ୍ଗମାନେ ନିକଟସ୍ଥ ନଦୀ କିମ୍ବା ଝରଣାରୁ ଧରି ଆଣିଥିବା କଂକଡାକୁ ଭଲ ଭାବେ ଛଡେଇ

ଧୋଇ ଗୋଡ ଭାଙ୍ଗି ଏହାକୁ ଶାଳ ପତ୍ରରେ ରଖି ସେଥିରେ ତେଲ, ଲୁଣ, ହଳଦି, ଗୋଟି ଲଙ୍କା ମିଶେଇ ପତ୍ରକୁ ଭଲ ଭାବେ ବାନ୍ଧି ଦିଅନ୍ତି । ଏହି ପତ୍ରକୁ ନିଆଁରେ ପକେଇ ଦିଅନ୍ତି । ଏହି ଶାଳପତ୍ର



▶ କଙ୍କଡା



▶ କଙ୍କଡା ପୋଡା (କାଳାର୍ ଲାର୍ଡକି)

ଗୁଡା କଙ୍କଡା କିଛି ସମୟ ନିଆଁରେ ପୋଡିଯିବା ପରେ ବାହାରକୁ କାଢି ଆଣି ପତ୍ରକୁ ଖୋଲି ସେଥିରୁ ପୋଡା ଓ ମସଲାଯୁକ୍ତ କଂକଡାକୁ ବାହାର କରନ୍ତି । ଗୋନାସିକା ନିକଟସ୍ଥ କଦଳୀବାଡି ଗାଁର ଜୁଆଙ୍ଗ ରମଣୀ ପ୍ରମିଳା ଜୁଆଙ୍ଗ କିଭଳି କଙ୍କଡା ପୋଡା ପ୍ରସ୍ତୁତ କରୁଥିଲେ ତାହା ଏହି ଲେଖକ ଦେଖିଥିଲା ।

ପଣସ ଜୁଆଙ୍ଗମାନଙ୍କର ଅନ୍ୟଏକ ମୁଖ୍ୟ ଖାଦ୍ୟ ଭାବେ ବର୍ଷା ଚାରିମାସ ଚଳେଇ ନେଇଥାଏ । ଏଥି ମଧ୍ୟରୁ **'ଗୋଟି ପଣସ ପୋଡା'** ଜୁଆଙ୍ଗମାନଙ୍କର ଏକ ନିଆରା ଖାଦ୍ୟ । ଗାଁର କିଛି ଦୂରରେ ବିସ୍ତୀର୍ଣ୍ଣ ପଡ଼ିଆରେ ଜୁଆଙ୍ଗମାନେ ଚାରି ପାଞ୍ଚ ଝୁଡ଼ି ଗୋଟି ପଣସକୁ ଏକତ୍ର କରି ଗୋଟିଏ ଭାଡ଼ି କାଠ ନିଆଁରେ ପୋଡନ୍ତି । ଗୋନାସିକାର ରାହାସ ଜୁଆଙ୍ଗଙ୍କ କହିବା ଅନୁଯାୟୀ, ବର୍ଷା ଦିନେ



▶ ବାଉଁଶ ଗଢା



ରୁଟୁକା ଛତୁ



ଭାତ ଓ ଲୁଣ ମୋ' ଖାଦ୍ୟ

ଖାଦ୍ୟଶସ୍ୟର ଅଭାବ କାରଣରୁ ପଣସ ହିଁ ସେମାନଙ୍କ ଖାଦ୍ୟ ପାଲଟିଥାଏ । ପଣସରୁ ବିଭିନ୍ନ ପ୍ରକାର ଖାଦ୍ୟ ତିଆରି କରି ଜୁଆଙ୍ଗମାନେ ନିଜର ପେଟ ଚାଖଣ୍ଡକ ପୂରଣ କରିଥାନ୍ତି । ଉଭୟ ପାଚିଲା ଓ କଞ୍ଚା ପଣସକୁ କାଠ ଉପରେ ଲଦି ନିଆଁ ଲଗେଇ ପୋଡାଯାଏ । ଭୋରୁ ଭୋରୁ ଗାଁର ଜୁଆଙ୍ଗମାନେ ଏକାଠି ହୋଇ ପାଖ ଡୁଡି ନିକଟକୁ ଆସନ୍ତି । ଡୁଡିର ପାଦଦେଶରେ ଗାଁଟାଯାକର ଜୁଆଙ୍ଗମାନେ ସଂଗ୍ରହକରିଥିବା କାଠର ଏକ ଭାଟି ନିର୍ମାଣ କରନ୍ତି ଏବଂ ସେଥିରେ ଗୋଟି ପଣସକୁ ଗୋଟିଏ ପରେ ଗୋଟିଏ ଥାକଥାକ କରି ଇଟା ଭାଟି ଭଳି ଖଞ୍ଜି ଚାଲନ୍ତି । ଏହି ଭାଟି ନିର୍ମାଣ କରିବାକୁ ଜୁଆଙ୍ଗମାନଙ୍କୁ ପାଖାପାଖି ଚାରି ଘଣ୍ଟାରୁ ଅଧିକ ସମୟ ଲାଗିଥାଏ । ଭାଟିରୁ ନିଆଁ

ଲିଭିଲାବେଳକୁ ପୂରା ମଧ୍ୟାହ୍ନ ହୋଇଯାଇଥାଏ । ନିଆଁ ଲିଭିଲାପରେ କାଠ ଭାଡିରୁ ପୋଡା ପଣସସବୁକୁ କାଢି ଆଣି ଧାରୁଆ ଅସ୍ତ୍ର, ଛୁରୀ, କଟୁରୀରେ କାଟି ଗଡ଼ଗଡ଼ କରନ୍ତି । ଜୁଆଙ୍ଗମାନେ ବଡ଼ବଡ଼ ପତ୍ରରେ ଏହି ଖୋସାକୁ ଭାଗଭାଗ କରି ଏକତ୍ର ପଙ୍‌କ୍ତି ଭୋଜନରେ ବସି ଖାଆନ୍ତି । ଆଉ କିଛି


ଜୁଆଙ୍ଗ ବାଳକଟିଏ ଗଛରୁ ଜାଇ ବସା ସଂଗ୍ରହ କରି ଜାଇ ଅଣ୍ଡା ଖାଉଛି



ଗିଲିରି ଫୁଲ

ପଣସର ପୋଡା ମଞ୍ଜିକୁ ମଧ୍ୟ ଖାଆନ୍ତି । ନିକଟସ୍ଥ ଝରଣାରେ ସ୍ନାନ ସାରି ଜୁଆଙ୍ଗମାନେ ସେହି ଢୁଡି ପାଦଦେଶରେ ଏକ 'ପଣସ ଭୋଜି'ର ଆୟୋଜନ କରିଥାନ୍ତି । ଜୁଆଙ୍ଗମାନେ ପେଟପୁରା ପଣସ ପୋଡା ଖାଇବା ପରେ ସଞ୍ଜ ବେଳକୁ ନିଜନିଜର ଗାଁକୁ ଫେରନ୍ତି ।

ଖରାଦିନେ ଆମ୍ବ, ପଣସ ବ୍ୟତୀତ ଜୁଆଙ୍ଗମାନେ ଜଙ୍ଗଲରୁ ଚାର, କେନ୍ଦୁ ସଂଗ୍ରହ କରିଥାନ୍ତି ।

ଭାତ ସହିତ ଜୁଆଙ୍ଗମାନେ ପନିପରିବା ସିଝା ତର୍କାରୀ ଖାଇଥାନ୍ତି । କଖାରୁ, ଶିମ୍ବ, ଶାଗ, ସାରୁ ଆଦି ପରିବାକୁ ସିଝେଇ ସେଥିରେ ଲୁଣ, ହଳଦି ଦେଇ ଜୁଆଙ୍ଗମାନେ ଏକ ମିଶ୍ର ତରକାରୀ ପ୍ରସ୍ତୁତ କରନ୍ତି । ବେଳେବେଳେ ଡାଲି ଖାଇଥାନ୍ତି । ସୁତୁରି ଡାଲି ଜୁଆଙ୍ଗମାନଙ୍କର ପ୍ରିୟ ଡାଲି ।

ମାଣ୍ଡିଆ ହେଉଛି ଜୁଆଙ୍ଗଙ୍କ ଆଉ ଏକ ପ୍ରମୁଖ ଖାଦ୍ୟ । ମାଣ୍ଡିଆରୁ ପ୍ରସ୍ତୁତ ଚୁନାରେ **'ମାଣ୍ଡିଆ ପେଜ'** ଜୁଆଙ୍ଗଙ୍କ ପ୍ରମୁଖ ଖାଦ୍ୟ । ମାଣ୍ଡିଆ ଚୁନାରେ ପ୍ରସ୍ତୁତ ବିଭିନ୍ନ ପ୍ରକାର ପିଠା ଏମାନଙ୍କ ପ୍ରିୟ ଖାଦ୍ୟ । ବିଭିନ୍ନ ପର୍ବପର୍ବାଣି ସମୟରେ ଜୁଆଙ୍ଗ ରମଣୀମାନେ ମାଣ୍ଡିଆ ଚୁନାରେ ପିଠା ପ୍ରସ୍ତୁତ କରିଥାନ୍ତି । ପାଣିକୁ ଚୁଲିରେ ବସେଇ ଗରମ କରାଯାଏ । ପାଣି ଫୁଟି ଆସିଲେ ସେଥିରେ ମାଣ୍ଡିଆ

ଚୁନା ପକେଇ ଗୋଳାଯାଏ । ଏଥିରେ ଅଳ୍ପ ପରିମାଣର ଭାତ, ମକାଗୁଣ୍ଡ, ଚାଉଳଗୁଣ୍ଡ ମଧ୍ୟ ମିଶାଯାଏ । ସ୍ୱାଦ ଅନୁସାରେ ଲୁଣ, ଲଙ୍କା ପକାଯାଏ । ଏହାପରେ ମାଣ୍ଡିଆ ପେଜ ପ୍ରସ୍ତୁତ ହୁଏ । ମାଣ୍ଡିଆ ଚୁନା, ଲଙ୍କା ଗୁଣ୍ଡ, ଗୁଡ, ଲୁଣର ମିଶ୍ରଣକୁ ଗରମ ପାଣିରେ ଫୁଟେଇ ଏକ ଅର୍ଦ୍ଧ କଠିନ ଖାଦ୍ୟ ପ୍ରସ୍ତୁତ କରି ଜୁଆଙ୍ଗମାନେ ଭକ୍ଷଣ କରନ୍ତି ।

ଏହାବ୍ୟତୀତ **ସୁଆଁଭାତ, ଜୁଆଣି** (ମକା) ଆଦି ଜୁଆଙ୍ଗମାନଙ୍କର ଖାଦ୍ୟ । ସୁଆଁ ଘାସର ମଞ୍ଜିକୁ ସଂଗ୍ରହ କରି ସେମାନେ ସୁଆଁ ଭାତ ପ୍ରସ୍ତୁତ କରନ୍ତି । ଜୁଆଣି (ମକା)ରୁ ସେମାନେ ବିଭିନ୍ନ ପ୍ରକାର ଖାଦ୍ୟ ପ୍ରସ୍ତୁତ କରନ୍ତି । ମକାକୁ ପୋଡିକରି ଖାଆନ୍ତି । ମକାକୁ ଗୁଣ୍ଡ କରି ମକାପିଠା **(ଜୁଆଣି ଅଳାଜ୍)** ପ୍ରସ୍ତୁତ କରନ୍ତି । ମକା ଗୁଣ୍ଡରେ ଜାଉ ବା ପେଜ କରି ଖାଆନ୍ତି, ଯାହାକୁ **'ଜୁଆଣି ପେଜ୍'** କହନ୍ତି । ଲୁଣ ଓ କଞ୍ଚା ଲଙ୍କା ଲଗାଇ ସେମାନେ ମାଣ୍ଡିଆ ଜାଉକୁ ମହା ଆନନ୍ଦରେ ଖାଇ ପାରନ୍ତି । ଆମ୍ବ କୋଇଲି ଗୁଣ୍ଡ, ସଲପ ଗଛ ଗଣ୍ଡିର ଶସ, ପାହାଡିଆ କନ୍ଦା, ବଣୁଆ କୋଳି ମଧ୍ୟ ଜୁଆଙ୍ଗମାନେ ଖାଆନ୍ତି ।

ଜୁଆଙ୍ଗମାନେ ବିରି ଓ ଚାଉଳକୁ ସିଝାଇ **'ବିରି ଭାତ'** ପ୍ରସ୍ତୁତ କରନ୍ତି । ପ୍ରଥମେ ଚାଉଳକୁ ହାଣ୍ଡିରେ ଗରମ ପାଣିରେ ଫୁଟେଇ ଭାତ ପ୍ରସ୍ତୁତ କରାଯାଏ ଏବଂ ଏହି ଭାତରେ ବିରି ପକାଇ ସିଝାଯାଏ । ଚାଉଳ ଏବଂ ବିରି ସିଝିଗଲା ପରେ ବିରି ଭାତ ପ୍ରସ୍ତୁତ ହୋଇଯାଏ । ଏଥିରେ ଲୁଣ, ମରିଚ ପକେଇ ଜୁଆଙ୍ଗମାନେ ଖାଆନ୍ତି ।

**କୋଳଥ ଭାତ** ଜୁଆଙ୍ଗମାନଙ୍କର ଆଉ ଏକ ପ୍ରକାର ଖାଦ୍ୟ । ଏହାର ପ୍ରସ୍ତୁତ ପ୍ରଣାଳୀ ମଧ୍ୟ ବିରି ଭାତ ଭଳି । ଚାଉଳ ଓ କୋଳଥକୁ ମିଶେଇ ଗରମ ପାଣିରେ ସିଝେଇ ଭାତ ପ୍ରସ୍ତୁତ କରାଯାଏ । ଆମ୍ବ ଟାକୁଆରୁ ପ୍ରସ୍ତୁତ ପିଠା **(ଅଳାଜ୍)** ମଧ୍ୟ ଜୁଆଙ୍ଗମାନଙ୍କର ପ୍ରିୟ ଖାଦ୍ୟ । ଆମ୍ବ ଟାକୁଆକୁ





▶ **ରଙ୍ଗୀନ୍ ଛତୁ**



▶ ଜୁଆଙ୍ଗ ବାଳକମାନେ ଗଛରୁ ଜାଇ ଅଣ୍ଡା ସଂଗ୍ରହ କରୁଛନ୍ତି

ଶୁଖେଇ ସେଥିରୁ କୋଇଲିକୁ ବାହାର କରାଯାଏ । ଏହାପରେ ଆମ୍ବ କୋଇଲିକୁ ଗରମ ପାଣିରେ ସିଝାଯାଏ । ସିଝାଗଲା ପରେ ଏଥିରୁ କଷା ପାଣିତକ ବାହାର କରି ଦିଆଯାଏ । ଏହା ପରେ ସିଝା ଆମ୍ବ କୋଇଲିକୁ ଶୁଖେଇ ଗୁଣ୍ଡ କରାଯାଏ କିମ୍ବା ଶିଳରେ ବଟାଯାଏ । ଏହାକୁ ଛୋଟ ଛୋଟ ପିଠା କରି ଦୁଇଟି ଶାଳ ପତ୍ରରେ ଘୋଡେଇ ଏକ ମାଟି ହାଣ୍ଡିରେ ସିଝାଯାଏ । ପୂର୍ବରୁ ଚୁଲିରେ ବସିଥିବା ମାଟି ହାଣ୍ଡିରେ ପାଣି ଦିଆଯାଇ ସେଥିରେ କାଠି. କୁଟା ବିଛେଇ ରଖାଯାଇଥାଏ । ଏହା ଉପରେ ପତ୍ରରେ ଘୋଡାଯାଇଥିବା ପିଠାଗୁଡିକୁ ଥାକ ଥାକ କରି ହାଣ୍ଡି ଭିତରେ ସଜେଇ ରଖାଯାଏ । ପିଠା ସିଝିଗଲା ପରେ ଏହାକୁ ଜୁଆଙ୍ଗମାନେ ଖାଇଥାନ୍ତି ।

## ଜୁଆଙ୍ଗ ଅଞ୍ଚଳର କିଛି ଜଙ୍ଗଲି କୋଳି ଓ ଫଳ

*(some traditional jungle fruits of the Juang)*

**ପୁଢେଇ କୋଳି:** ଏହା ମଧ୍ୟ ଏକ ବର୍ଷାଦିନିଆ ଫଳ । ଏହା ଦେଖିବାକୁ ଗାଢ ଲାଲ୍ ରଙ୍ଗର । ଏହି କୋଳି ପାଚିଗଲେ ଖୁବ୍ ମିଠା ଲାଗେ ।




**ଜଙ୍ଗଲୀ କେନ୍ଦୁ:** ଖରାଦିନେ ଜଙ୍ଗଲରେ ବହୁ ପରିମାଣରେ ଜଙ୍ଗଲୀ କେନ୍ଦୁ ମିଳିଥାଏ । ଜୁଆଙ୍ଗ ମହିଳାମାନେ ଜଙ୍ଗଲରୁ କେନ୍ଦୁ ସଂଗ୍ରହ କରି ନିକଟସ୍ଥ ହାଟମାନଙ୍କରେ ବିକ୍ରି କରିଥା'ନ୍ତି ।




**କୁସୁମ ଜୋଳି:** କୁସୁମ କୋଳିକୁ ଜୁଆଙ୍ଗ ଭାଷାରେ ବାଙ୍ଗୁର୍ କୋଳି ବୋଲି କୁହାଯାଇଥାଏ । ଏହା ବିଶେଷକରି ଜୁନ୍-ଜୁଲାଇ ମାସ ବେଳକୁ ଗଛରେ ପାଚିଗଲେ ଜୁଆଙ୍ଗମାନେ ଖାଇବା ଆରଂଭ କରନ୍ତି । ଏହାକୁ ନୂଆ ଖାଇବାପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ ଖାଇବା ଆରଂଭ କରନ୍ତି । ଏହା ପାଚିଗଲେ ବେଶ୍ ସୁଆଦ ଲାଗିଥାଏ । ଏହାର ଉପରିଭାଗ ଦେଖିବାକୁ ମାଟିଆ ଧୂସର

କୁସୁମ କୋଳି

ରଙ୍ଗର । ଏହାର ଭିତର ଖୁବ୍ ରସାଳ ଓ ମିଠା । ଏହାର କେନ୍ଦ୍ର ଭାଗରେ କଳା ରଙ୍ଗର ମଞ୍ଜିଥାଏ । ଏହି ମଞ୍ଜିରେ ତେଲ ପ୍ରସ୍ତୁତ କରାଯାଇଥାଏ । କୁସୁମ ତେଲ ଜୁଆଙ୍ଗମାନଙ୍କ ପାଇଁ ଏକ ଅତି ଦରକାରୀ ତେଲ । ଥଣ୍ଡା, ସର୍ଦ୍ଦିଠାରୁ ଆରଂଭ କରି ଦେହ ବିନ୍ଧାବିନ୍ଧି କଲେ ଏହି ତେଲକୁ ମାଲିସ୍ କଲେ ବହୁତ ଉପକାର ମିଳିଥାଏ ।

**ଜଙ୍ଗଲୀ ଆମ୍ବ:** ଖରାଦିନେ ଜୁଆଙ୍ଗ ବସବାସ କରୁଥିବା ଜଙ୍ଗଲରେ ବ୍ୟାପକ ପରିମାଣରେ ଜଙ୍ଗଲୀ ଆମ୍ବ ମିଳିଥାଏ । ଜୁଆଙ୍ଗ ମହିଳାମାନେ ବହୁ ପରିମାଣରେ ଆମ୍ବ ସଂଗ୍ରହ କରି ହାଟରେ



ଆମ୍ବ

କିମ୍ବା ରାସ୍ତାପାର୍ଶ୍ୱରେ ବିକ୍ରି କରି ବେଶ୍ ଦି' ପଇସା ରୋଜଗାର କରିଥା'ନ୍ତି । ଏହି ଜଙ୍ଗଲୀ ଆମ୍ବ ରସାଳ ନ ହେଲେ ମଧ୍ୟ ଖୁବ୍ ମିଠା ଓ ସ୍ୱାଦଯୁକ୍ତ । ଜୁଆଙ୍ଗମାନେ ଆମ୍ବରୁ ଆମ୍ବଷଢା ପ୍ରସ୍ତୁତ କରନ୍ତି । ପ୍ରଥମେ ପାଚିଲା ଆମ୍ବକୁ ଏକ ସିଲ୍‌ଭର ହାଣ୍ଡିରେ ଚକଟି ରସ ସଂଗ୍ରହ କରାଯାଏ । ଏହି ରସକୁ ମସିଣାରେ କିମ୍ବା ଜରିଅଖାରେ ଢାଳି ଖରାରେ ଶୁଖେଇବା ପରେ ଆମ୍ବଷଢା ପ୍ରସ୍ତୁତ ହୋଇଥାଏ ।

**ପଣସ:** ଜୁଆଙ୍ଗ ବସବାସ କରୁଥିବା ଅଞ୍ଚଳରେ ଜଙ୍ଗଲ ମଧ୍ୟରେ ବହୁମାତ୍ରାରେ ପଣସ ଫଳିଥାଏ । ଏହା ଏକ ଖରାଦିନିଆ ଫଳ ଏବଂ ବର୍ଷା ଆରମ୍ଭରେ ଏହା ପାଚିବା ଆରଂଭ କରିଥାଏ । ପଣସ ହେଉଛି ଜୁଆଙ୍ଗମାନଙ୍କର ଏକ ପ୍ରମୁଖ ବର୍ଷାଦିନିଆ ଖାଦ୍ୟ । ପଣସକୁ ଗୋଟି ପୋଡିକରି ଖାଆନ୍ତି । ଏହାର ମଞ୍ଜିକୁ ପୋଡି କିମ୍ବା ତରକାରୀ କରି ଜୁଆଙ୍ଗମାନେ ଖାଆନ୍ତି ।

**ମହୁଲ:** ଜୁଆଙ୍ଗମାନଙ୍କ ପାଇଁ ମହୁଲ ଏକ ଦେବତୁଲ୍ୟ ବୃକ୍ଷ । ମହୁଲ ଗଛକୁ ଜୁଆଙ୍ଗମାନେ ପୂଜା କରିଥା'ନ୍ତି । ମହୁଲ ଫୁଲରେ ଜୁଆଙ୍ଗମାନେ ମହୁଲି ମଦ ପ୍ରସ୍ତୁତ କରିଥା'ନ୍ତି । ମହୁଲ ମଞ୍ଜିକୁ ଜୁଆଙ୍ଗମାନେ **ଟୋଲ** କହନ୍ତି । ଏହି ଟୋଲରୁ ମଧ୍ୟ ଏକ ଖାଇବା ଓ ଶରୀରରେ ଲଗାଇବା ତେଲ ପ୍ରସ୍ତୁତ ହୋଇଥାଏ ।

**କରମଙ୍ଗା:** ଜୁଆଙ୍ଗମାନେ ଖରାଦିନେ ଜଙ୍ଗଲରୁ କରମଙ୍ଗା ସଂଗ୍ରହ କରି ନିକଟସ୍ଥ


କରମଙ୍ଗା

ହାଟବଜାରମାନଙ୍କରେ ବିକ୍ରି କରିଥା'ନ୍ତି । ଏହା ଖୁବ୍ ଖଟାଯୁକ୍ତ ଓ ରସାଳ । କରମଙ୍ଗାରେ ଖଟା, ଆଚାର ପ୍ରସ୍ତୁତ ହୋଇଥାଏ ।

**ଜାମୁକୋଳି:** ଏହା ମଧ୍ୟ ଏକ ଖରାଦିନିଆ କୋଳି । ରଜବେଳକୁ ଗଛରେ ଜାମୁକୋଳି ଭରି ହୋଇଯାଇଥାଏ । ଜଙ୍ଗଲରୁ ବହୁ ପରିମାଣରେ ଜାମୁକୋଳି ସଂଗ୍ରହ କରି ଜୁଆଙ୍ଗ ମହିଳାମାନେ ନିକଟସ୍ଥ ହାଟବଜାରମାନଙ୍କରେ ବିକ୍ରି କରିଥା'ନ୍ତି ।

ଜାମୁକୋଳି

**କରଞ୍ଜ ଫଳ:** ଜ୍ୟେଷ୍ଠମାସ ବେଳକୁ ଜଙ୍ଗଲରେ କରଞ୍ଜ ଫଳ ପାକଳ ହୋଇଯାଇଥାଏ । କରଞ୍ଜ ଫଳରୁ ମଞ୍ଜି ବାହାର କରି ଏଥିରୁ କରଞ୍ଜ ତେଲ ପ୍ରସ୍ତୁତ କରାଯାଇଥାଏ । କରଞ୍ଜ ତେଲ ଏକ





କରଞ୍ଜ ଫଳ । ଏହାର ମଞ୍ଜିରୁ ଜୁଆଙ୍ଗମାନେ ତେଲ ପ୍ରସ୍ତୁତ କରନ୍ତି

ଔଷଧୀୟ ତେଲ ଭାବେ ଜୁଆଙ୍ଗମାନଙ୍କୁ ବେଶ୍ ସହାୟକ ହୋଇଥାଏ ।

**ଲାଙ୍କଣଇ:** ସେପ୍ଟେମ୍ବର-ଅକ୍ଟୋବର ମାସ ବେଳକୁ ଜଙ୍ଗଲରେ ଲାଙ୍କଣଇ କୋଳି ପାଚିଥାଏ । ଏହା ଦେଖିବାକୁ ଟସର ଖୋସା ଭଳି ଏବଂ ଗେରୁ ରଙ୍ଗର । ପେଛାପେଛା ହୋଇ ଗଛରେ

ଲାଙ୍କଣଇ

ଝୁଲୁଥିବା ଏହି ଲାଙ୍କଣଇ କୋଳି ସାଧାରଣ ଲୋକଟିକୁ ଖୁବ୍ ଆକର୍ଷିତ କରିଥାଏ । ଏହା ପାଚିଗଲେ ଖୁବ୍ ମିଠା ଲାଗେ । ଜୁଆଙ୍ଗମାନଙ୍କର ଏହା ଏକ ପ୍ରିୟ କୋଳି ।

**ଅଷାଡୁ କୋଳି:** ଏହା ଦେଖିବାକୁ ଆମ୍ବଡା ସଦୃଶ । ଏହାକୁ କଞ୍ଚା ଅବସ୍ଥାରେ ରୋଷେଇ କରି ଖିଆଯାଏ । ଜୁଆଙ୍ଗମାନଙ୍କର ଏହା ଏକ ପ୍ରିୟ ଖାଦ୍ୟ । ଏହାକୁ କାଟି ଆଳୁ ସାଙ୍ଗରେ ଭଜା କରି


ଅଷାଡୁ କୋଳି

ଜୁଆଙ୍ଗମାନେ ପଖାଳଭାତ ସହ ଖାଇଥା'ନ୍ତି ।

**ବଏରୋ (ବରକୋଳି):** କେନ୍ଦୁଝର ଜଙ୍ଗଲରେ ବହୁ ପରିମାଣରେ ବରକୋଳି ମିଳିଥାଏ । ପାଚିଲା ବରକୋଳି ଜୁଆଙ୍ଗମାନଙ୍କର ଖୁବ୍ ପ୍ରିୟ । ଏହାକୁ ଶୁଖାଇ ଆଚାର ପ୍ରସ୍ତୁତ କରାଯାଏ ।




**ତ୍ରିଫଳା:** କେନ୍ଦୁଝର ଜଙ୍ଗଲରେ ବ୍ୟାପକ ଭାବରେ ତ୍ରିଫଳା (ହରିଡା, ବାହାଡା, ଅଁଳା) ମିଳିଥାଏ । ଜୁଆଙ୍ଗ ମହିଳାମାନେ ଏହି ଫଳକୁ ସଂଗ୍ରହ କରି ନିକଟସ୍ଥ ହାଟବଜାରରେ ବିକ୍ରି କରିଥା'ନ୍ତି । ଏହି ତ୍ରିଫଳାର ବ୍ୟାପକ ଔଷଧୀୟ ଗୁଣଯୋଗୁଁ ଏହାର ଚାହିଦା ଖୁବ୍ ଅଧିକ ହୋଇଥାଏ ।







**ଆମ୍ବଡା:** ଜୁଆଙ୍ଗମାନେ ନିକଟସ୍ଥ ଜଙ୍ଗଲରୁ ପ୍ରଚୁରମାତ୍ରାରେ ଆମ୍ବଡା ସଂଗ୍ରହ କରିଥା'ନ୍ତି । ଆମ୍ବଡା ଆମ୍ବଭଳି ମାତ୍ର ଛୋଟ । ଏହାକୁ କଞ୍ଚା ରୋଷେଇକରି ଖିଆଯାଏ କିମ୍ବା ଖଟା ପ୍ରସ୍ତୁତ କରାଯାଏ ।

**ରୁଞ୍ଜ ମଞ୍ଜି:** ଭଅଁରମାଳି ଫଳକୁ ସ୍ଥାନୀୟ ଭାଷାରେ ରୁଞ୍ଜମଞ୍ଜି କହନ୍ତି । ଏହା ଏକ ଔଷଧୀୟ ଫଳ । ଏହା ଦେଖିବାକୁ ଲାଲ୍ ଓ ଖଇରିଆ ରଙ୍ଗର । ଶୁଖିଗଲେ ଏହା କଳା ହୋଇଯାଇଥାଏ । ଏହାକୁ ମଧ୍ୟ ପୋହଳମାଳି କୁହାଯାଇଥାଏ । କୁଷ୍ଠ ରୋଗୀ, ବାତପୀତ ରୋଗୀଙ୍କ ପାଇଁ ଏହା ଏକ ଅବ୍ୟର୍ଥ ଔଷଧ ଭଳି କାମ ଦେଇଥାଏ । ଗ୍ରହଶାନ୍ତି ଓ ନାନା ପ୍ରକାର ମାନସିକ ରୋଗର ଉପଚାର



ଭଅଁରମାଳି ଫଳ

ପାଇଁ ଏହାକୁ ବେକରେ ମାଳିକରି ପିନ୍ଧାଯାଇଥାଏ ।

**ଚାରକୋଳି:** ଏହା ଏକ ଖରାଦିନିଆ କୋଳି । ଜୁଆଙ୍ଗ ଯୁବତୀମାନେ ନିକଟସ୍ଥ ଜଙ୍ଗଲରୁ ବହୁ ପରିମାଣରେ ଏହି ଚାରକୋଳି ସଂଗ୍ରହ କରି ନିକଟସ୍ଥ ହାଟ କିମ୍ବା ରାସ୍ତା ପାର୍ଶ୍ୱରେ ବିକ୍ରି କରିଥା'ନ୍ତି । ଏହା ଦେଖିବାକୁ ଛୋଟଛୋଟ ଏବଂ ଲାଲ୍ ଓ ଖଇରିଆ ରଙ୍ଗର କଣ୍ଟେଇକୋଳି ଭଳି । ଏହା ଖୁବ୍



ଚାରକୋଳି

ମିଠା କୋଳି । ଜୁଆଙ୍ଗମାନଙ୍କର ଏକ ପ୍ରିୟ କୋଳି ଭାବେ ଚାର କୋଳି ଏକ ନିଆରା ସ୍ଥାନ ଅଧିକାର କରିଥାଏ ।

# ନିଶାପାନ

'ମଦ'କୁ ବାଦ୍‌ଦେଇ ଆଦିବାସୀଙ୍କ ଜୀବନଶୈଳୀ କଥା ଚିନ୍ତା କରିହେବନି । ଜୁଆଙ୍ଗମାନେ ମଧ୍ୟ ମଦପାଣିକୁ ଆପଣେଇ ନିଜର ବ୍ୟକ୍ତିଗତ ଜୀବନଚର୍ଯ୍ୟାକୁ ଆଗେଇ ନେଇଥା'ନ୍ତି । ଦିନଯାକ କଠିନ ପରିଶ୍ରମ କରି ସନ୍ଧ୍ୟାରେ ଘରକୁ ଫେରିବା ପରେ ଜୁଆଙ୍ଗଟିଏ ଟିକେ ହାଣ୍ଡିଆ କିମ୍ବା ମହୁଲି ପିଇଦେଲେ ନିଜର ସବୁ ଦୁଃଖଯନ୍ତ୍ରଣା ଭୂଲି ଯାଇଥାଏ । ବିବାହ, ଯାନିଯାତରା ଓ ପର୍ବପର୍ବାଣିମାନଙ୍କରେ ମଦ ହିଁ ସେମାନଙ୍କର ମୁଖ୍ୟ ପାନୀୟ ପାଲଟିଥାଏ । ସନ୍ଧ୍ୟାରେ ଉଭୟ ଜୁଆଙ୍ଗ କଂଗେର୍, ସେଲାନ୍‌ମାନେ ମଦ ପାନ କରି ନାଚ, ଗୀତରେ ମାତି ଉଠନ୍ତି । ବୁଢା, ବୁଢୀମାନେ ମଦ ପିଇ ପିଲାମାନଙ୍କର ନାଚ, ତାମସା ଦେଖନ୍ତି । ଜୁଆଙ୍ଗମାନେ **ହାଣ୍ଡିଆ, ମହୁଲି** ଭଳି ବିଭିନ୍ନ ପ୍ରକାର ମଦ ପାନ କରିଥାନ୍ତି ଏବଂ ମହୁଲି ମଦକୁ ଔଷଧ ଭଳି ମଧ୍ୟ ବ୍ୟବହାର କରିଥାନ୍ତି । ଦେହହାତ ବିନ୍ଧାଛିଟିକା କଲେ କିମ୍ବା ଥଣ୍ଡା, ସର୍ଦ୍ଦି, କାଶ, ଛିଙ୍କ ହେଲେ ଜୁଆଙ୍ଗମାନେ ମହୁଲି ମଦ ପିଇଥା'ନ୍ତି । ବିବାହ ଉତ୍ସବମାନଙ୍କରେ ମଦ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଉଭୟ ବର ଓ କନ୍ୟା ଘର ପକ୍ଷରୁ ମଦ ଦ୍ୱାରା ଅତିଥିମାନଙ୍କୁ ଆପ୍ୟାୟିତ କରାଯାଇଥାଏ । ନିକଟସ୍ଥ ହାଟବଜାରରୁ ମଦ କିଣି ସେମାନେ ପିଇଥାନ୍ତି । ଜୁଆଙ୍ଗମାନେ ବିଭିନ୍ନ ପ୍ରକାର ମଦ ବ୍ୟବହାର କରିଥାନ୍ତି । ସେଗୁଡିକ ହେଲା- ମହୁଲି ମଦ, ହାଣ୍ଡିଆ, ଜୁଆଣି ମଦ, ଜିଞ୍ଜାରି ମଦ, ଖଜୁରୀ ମଦ, ସଲପ ମଦ ଆଦି ।

**ମହୁଲି ମଦ** ଉର୍ଦ୍ଧ୍ୱପାତନ ପ୍ରଣାଳୀରେ ମହୁଲି ପୋଚରୁ ପ୍ରସ୍ତୁତ କରାଯାଏ । ମହୁଲି ମଦ ହେଉଛି ସବୁଠୁ ପବିତ୍ର ପାନୀୟ । ଏହା ବିଶେଷକରି ଦେବଦେବୀଙ୍କ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଥାଏ । ବିଭିନ୍ନ ପର୍ବପର୍ବାଣୀ, ବିଭାଘର, ଉତ୍ସବମାନଙ୍କରେ ମହୁଲି ମଦକୁ ହିଁ ବ୍ୟବହାର କରାଯାଇଥାଏ ।

**ହାଣ୍ଡିଆ** ହେଉଛି ଜୁଆଙ୍ଗମାନେ ବ୍ୟବହାର କରୁଥିବା ଏକ ଅତି ପରିଚିତ ପାରଂପରିକ ପାନୀୟ ।



**ମୁସାଜାନି ଚେରମୂଳି : ହାଣ୍ଡିଆକୁ ପଚେଇବାରେ ବ୍ୟବହାର କରାଯାଇଥାଏ**

ଏହା ଚାଉଳରୁ ପ୍ରସ୍ତୁତ ହୋଇଥାଏ । ଚାଉଳକୁ ଗରମ ପାଣିରେ ସିଝାଇ ସେଥିରୁ ଭାତ ପ୍ରସ୍ତୁତ କରାଯାଏ । ରନ୍ଧାଯାଇଥିବା ଭାତକୁ ଏକ ମସିଣାରେ ଖରାରେ ଶୁଖେଇ ଦିଆଯାଏ । ରନ୍ଧା ଭାତ ଶୁଖିବା ପରେ ଏହାକୁ ଏକ ହାଣ୍ଡିରେ ଭର୍ତ୍ତି କରି ସେଥିରେ ବଜାରରୁ ମିଳୁଥିବା କିଛି ଚେରମୂଳି ଔଷଧ ବାଟି ଏଥିରେ ମିଶେଇ ଦିଆଯାଏ । ଜଙ୍ଗଲରୁ ମିଳୁଥିବା ଏକ ପାରଂପରିକ ମୁସାକାନି ଚେରମୂଳି ଏହି ହାଣ୍ଡିଆକୁ ପଚେଇବାରେ ବ୍ୟବହାର କରାଯାଇଥାଏ । ଔଷଧ ମିଶେଇବା ପରେ ଏହି ଭାତକୁ ଏକ ମାଟି ହାଣ୍ଡିରେ ୪/୫ ଦିନ ପର୍ଯ୍ୟନ୍ତ ରଖି ଦିଆଯାଏ । ଔଷଧ ମିଶା ଏହି ଭାତକୁ ପାଞ୍ଚ ଦିନ ରଖିବା ପରେ ଏହା ଭଲ ଭାବେ ପଚିଯାଏ । ଏହା ଏକ ଅର୍ଦ୍ଧ ତରଳ ଜେଲି ଭଳି ହୋଇଯାଏ । ତା' ପରେ ଏଥିରେ ଗରମ ପାଣି ମିଶାଯାଇ ଏହାକୁ ଭଲ ଭାବେ ଚକଟି ଦିଆଯାଏ । ଏହା ପରେ ଏହାକୁ ହାଣ୍ଡିଆ ବୋଲି କୁହାଯାଏ । ଏହାକୁ ଛଙ୍କାରେ ଛାଣି ଜୁଆଙ୍ଗମାନେ ପାନ କରନ୍ତି । ସେହିଭଳି ମକାରୁ ଜୁଆଣି ମଦ ପ୍ରସ୍ତୁତ କରାଯାଉଥିବାବେଳେ ବାଜରା (ଜିଞ୍ଜାରି)ରୁ ଜିଞ୍ଜାରି ମଦ ପ୍ରସ୍ତୁତ ହୋଇଥାଏ ।

ମଦ ବ୍ୟତୀତ ଜୁଆଙ୍ଗମାନେ ଧୂଆଁପତ୍ରକୁ ନିଶା ପାଇଁ ବ୍ୟବହାର କରିଥାନ୍ତି । ଜୁଆଙ୍ଗମାନେ ତଇଳାରେ ଧୂଆଁପତ୍ର ଚାଷ କରିଥାନ୍ତି । ଶାଳପତ୍ର କିମ୍ବା କେନ୍ଦୁପତ୍ରରେ ଧୂଆଁପତ୍ରର ଗୁଣ୍ଡକୁ ଗୁଡେଇ ବିଡ଼ି ପ୍ରସ୍ତୁତ କରନ୍ତି । ଯେତେବେଳେ ଜୁଆଙ୍ଗ ଘରକୁ କେହି ଅତିଥି ଆସନ୍ତି ସେମାନଙ୍କୁ କିଛି ଧୂଆଁପତ୍ର ଓ ଶାଳପତ୍ର ଦେଇ ଅତିଥି ସତ୍କାର କରାଯାଇଥାଏ । ଉଭୟ ପୁରୁଷ ଓ ମହିଳାମାନେ ଧୂଆଁପତ୍ର ଟାଣନ୍ତି ।

## ଜୁଆଙ୍ଗ ପୋଷାକ ଓ ପ୍ରସାଧନୀ

*(dress and adornment of the Juang)*

ଜୁଆଙ୍ଗମାନଙ୍କ ପୋଷାକକୁ ନେଇ ବହୁ କିମ୍ବଦନ୍ତୀ ଓ ଇତିହାସ ରହିଛି । ଅତୀତରେ ଏମାନେ ପତ୍ର ପୋଷାକ ପରିଧାନ କରୁଥିବାର ଅନେକ ନଜିର ରହିଛି । ଉନ୍ନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଏମାନେ ପତ୍ର ପୋଷାକ ପିନ୍ଧୁଥିଲେ ବୋଲି ବହୁ ପ୍ରତ୍ୟକ୍ଷଦର୍ଶୀ ନିଜ ବିବରଣୀରେ ଉଲ୍ଲେଖ କରିଛନ୍ତି । ଇଂରେଜ୍ ଅଧିକାରୀ ସି. ଡାଲ୍‌ଟନ୍ ୧୮୬୬ ମସିହାରେ କେନ୍ଦୁଝର, ପାଲଲହଡା ଆସିଥିବାବେଳେ ଜୁଆଙ୍ଗମାନେ ପତ୍ର ପୋଷାକ ପିନ୍ଧୁଥିବାର ଦେଖିବାକୁ ପାଇଥିଲେ । ଜୁଆଙ୍ଗ ମହିଳାମାନେ ଯେଉଁ ପତ୍ର ପୋଷାକ ପରିଧାନ କରୁଥିଲେ ତାହାକୁ **'ପଟୁଆ'** ବୋଲି କୁହାଯାଉଥିଲା । ଜୁଆଙ୍ଗ ମହିଳାନେ ଶରୀରର ଉପର ଭାଗରେ ଓ ନିମ୍ନ ଭାଗରେ କିଛି ପତ୍ରକୁ ସୂତାରେ ମାଳ କରି ଅଣ୍ଟାରେ ଗୁଡେଇ ପିନ୍ଧୁଥିଲେ । ବିଶେଷକରି ଶାଳ, ଜାମୁ, କୁରେଇ ଆଦି ଗଛର ପତ୍ର ଓ ଡାଳକୁ ଏମାନେ ପୋଷାକ ଭାବେ ବ୍ୟବହାର କରୁଥିଲେ । ପ୍ରତିଦିନ ଏହି ପତ୍ର ପୋଷାକ ପରିବର୍ତ୍ତନ କରାଯାଉଥିଲା । ଶରୀରରେ



➢ **ଜଣେ ଜୁଆଙ୍ଗ ମହିଳା ତା' ଶିଶୁକୁ ସ୍ତନ୍ୟପାନ କରାଉଛି ।**

ପରିଧାନ କରିଥିବାବେଳେ ପୋଷାକ ଶୁଷ୍କ ଯୋଇ ଯାଉଥିଲେ କିମ୍ବା ଅପରିଛନ୍ନ ହୋଇପଡୁଥିଲେ ଏମାନେ ତାକୁ ବଦଳେଇ ନୂତନ ପତ୍ରର ପୋଷାକ ପିନ୍ଧୁଥିଲେ । ଏମାନେ ବିଶେଷକରି ସବୁଜ, ସତେଜ ଓ ପରିଷ୍କାର ପତ୍ରକୁ ପୋଷାକ ଭାବେ ବ୍ୟବହାର କରୁଥିଲେ । ଜୁଆଙ୍ଗ ସେଲାନ୍‌ମାନେ (ଯୁବତୀ) ମୁଣ୍ଡରେ ଲମ୍ବା କେଶ ରଖିଥାନ୍ତି । ସେମାନେ ମୁଣ୍ଡରେ କୁସୁମ ତେଲ **(ବାଙ୍କୁର ଅଡନ୍)**, ରାଶିତେଲ **(ରାମତିଳା ଅଡନ୍)**, ମହୁଲ ମଞ୍ଜିରୁ ପ୍ରସ୍ତୁତ ଟୋଲା ତେଲ, ସୋରିଷ କିମ୍ବା ନଡ଼ିଆ ତେଲ ଲଗାଇଥାନ୍ତି । କାଠ କିମ୍ବା ବାଉଁଶ ନିର୍ମିତ ପାନିଆରେ ଯୁବତୀମାନେ ମୁଣ୍ଡ କୁଣ୍ଡେଇଥାନ୍ତି । ପୁରୁଷମାନେ ପ୍ରତିଦିନ ଗାଧୋଇ ମୁଣ୍ଡ କୁଣ୍ଡାଉଥିବାବେଳେ ଯୁବତୀମାନେ ମାସକରେ କିମ୍ବା ପକ୍ଷରେ ଥରେ ମୁଣ୍ଡ କୁଣ୍ଡେଇଥାନ୍ତି । ବିଶେଷକରି ହାଟବଜାରକୁ ଯିବାବେଳେ କିମ୍ବା ବନ୍ଧୁ ଘରକୁ ଯିବାବେଳେ ଯୁବତୀମାନେ

▶ ସଦ୍ୟ ସ୍ନାନ ସାରି ଗାଁକୁ ଫେରୁଥିବା ଜୁଆଙ୍ଗ ଯୁବତୀମାନେ

ମୁଣ୍ଡରେ କୁସୁମ ତେଲ ଲଗେଇ କେଶବିନ୍ୟାସ କରିଥାନ୍ତି । ପୂର୍ବେ ଜୁଆଙ୍ଗ ପୁରୁଷମାନେ ସବୁ ସମୟରେ ଖୋଲା ଦେହରେ ରହୁଥିଲେ; କିନ୍ତୁ ବର୍ତ୍ତମାନ ଲୁଙ୍ଗି, ଧୋତି ପ୍ରଭୃତି ପିନ୍ଧିଲେଣି । ଜୁଆଙ୍ଗ ମହିଳାମାନେ ଶସ୍ତା ଶାଢି ପିନ୍ଧିବା ସାଙ୍ଗକୁ ଯୁବତୀମାନେ ଫ୍ରକ୍ ପିନ୍ଧିଲେଣି । ଜୁଆଙ୍ଗମାନେ ସଭ୍ୟ



ମା' କୋଳରେ ଜୁଆଙ୍ଗ ଶିଶୁଟିଏ

ଲୋକଙ୍କ ସଂସ୍ପର୍ଶରେ ଆସି ଆଧୁନିକ ପୋଷାକ ପରିଧାନ କଲେଣି । ଜୁଆଙ୍ଗ ପୁରୁଷମାନେ ସାର୍ଟ, ବାନିଅନ୍ ଆଦି ପିନ୍ଧୁଥିବାବେଳେ ମହିଳାମାନେ ଭିନ୍ନଭିନ୍ନ ରଙ୍ଗର ନାଇଲନ୍ ଶାଢ଼ି, ବ୍ଲାଉଜ୍ ପିନ୍ଧିବା ସହ ଜୁଆଙ୍ଗ ଯୁବତୀ ମୁଣ୍ଡରେ ରିବନ୍ ବାନ୍ଧୁଥିବାର ଦେଖାଯାଉଛି । ଜୁଆଙ୍ଗ ଯୁବତୀମାନେ ମୁଣ୍ଡରେ


ଜଣେ ଜୁଆଙ୍ଗ ଯୁବତୀ

କୁସୁମ ତେଲ, ଡଡା ତେଲ, ରାଶି ତେଲ ଏବଂ ଏବେଏବେ ସୋରିଷ ତେଲ, ନଡ଼ିଆ ତେଲ ବ୍ୟବହାର କରୁଥିବାର ଜଣାଯାଏ । ଜୁଆଙ୍ଗ ଯୁବତୀମାନେ ବିଶେଷକରି କୁସୁମ ତେଲ ମୁଣ୍ଡରେ ଓ ଦେହରେ ଲଗାନ୍ତି । ଏବେ ଜୁଆଙ୍ଗ ଯୁବତୀମାନେ ପର୍ବପର୍ବାଣୀରେ ବଜାରରୁ ବିଭିନ୍ନ ପ୍ରକାର ପ୍ରସାଧନ ସାମଗ୍ରୀ କିଣି ବ୍ୟବହାର କଲେଣି ।

## ଜୁଆଙ୍ଗ ଅଳଙ୍କାର

*(ornaments of the Juang)*



ଜଣେ ଜୁଆଙ୍ଗ ଯୁବତୀ

ଜୁଆଙ୍ଗ ରମଣୀ ସାଧାରଣତଃ, ବେକରେ, ନାକରେ, କାନରେ, ମୁଣ୍ଡରେ, ଗୋଡରେ, ହାତରେ ଓ ଅଣ୍ଟାରେ ବିଭିନ୍ନ ପ୍ରକାର ଅଳଙ୍କାର ବ୍ୟବହାର କରିଥାଏ । ଜୁଆଙ୍ଗ ରମଣୀଟି ବେକରେ ହାର (ଜୁଆଙ୍ଗ ଭାଷାରେ **କୁଣ୍ଡି**), ନାକରେ **ପୁଲି** (ନାକଫୁଲ), **ତୁଣ୍ଡି** (ନୋଥ), କାନରେ **କାନଫୁଲ**, ପାଦରେ **ପାଉଲି** (ପାଉଁଜି), **ଗାଡୁଆ** (ପାଦଖଡୁ) ଆଦି ବ୍ୟବହାର କରିଥାଏ । ଏହା ବ୍ୟତୀତ ଜୁଆଙ୍ଗ ମହିଳାଟି ହାତ ଅଙ୍ଗୁଳିରେ ମୁଦି ଓ ପାଦ ଅଙ୍ଗୁଳିରେ ଝୁଣ୍ଟିଆ **(ଝୁଟିଆ)** ବ୍ୟବହାର କରିଥାଏ । ଏବେ ଜୁଆଙ୍ଗ ଯୁବକମାନେ ହାତର ମଣିବନ୍ଧରେ ବିଭିନ୍ନ ଡିଜାଇନ୍‌ର ବ୍ରେସ୍‌ଲେଟ୍ ଓ କାନରେ ରିଂ ବ୍ୟବହାର କଲେଣି । ଜୁଆଙ୍ଗମାନଙ୍କ ଅଳଙ୍କାର ବିଶେଷକରି ପିତଳ, ଆଲୁମିନିୟମ୍ ଓ ହ୍ୱାଇଟ୍ ମେଟାଲ୍‌ରେ ପ୍ରସ୍ତୁତ ହୋଇଥାଏ । କେହିକେହି ଧନୀ ଜୁଆଙ୍ଗ ପରିବାରର ମହିଳାମାନେ ସୁନାର ଅଳଙ୍କାର କରି ପିନ୍ଧିଥାନ୍ତି ।

## ଜୁଆଙ୍ଗ ରମଣୀଙ୍କ ଚିତାକୁଟା

*(tattooing)*





ଚିତାକୁଟା ଜୁଆଙ୍ଗ ନାରୀମାନଙ୍କର ଏକ ମୁଖ୍ୟ ବିଭବ । ପ୍ରତି ଜୁଆଙ୍ଗ ରମଣୀ ଚିତା କୁଟେଇଥିବାର ଦେଖାଯାଏ । ନିଜର ଶରୀରକୁ ସଜେଇବା ପାଇଁ ଗହଣା ବ୍ୟତୀତ 'ଚିତାକୁଟା' ମଧ୍ୟ ଏକ ବିଶେଷ ଉପାଦାନ ହୋଇଥାଏ । ଏହାକୁ ଜୁଆଙ୍ଗ ଭାଷାରେ **'ଇରିଆଲି'** କୁହାଯାଏ । ଦେହରେ ବିଭିନ୍ନ ଆକୃତିର ଚିତା କୁଟେଇ ଜୁଆଙ୍ଗ ମହିଳମାନେ ନିଜକୁ ସଜେଇ ଥାନ୍ତି । ବିଶେଷକରି ଜୁଆଙ୍ଗ ଯୁବତୀମାନେ ସେମାନଙ୍କ ବାହୁରେ ବିଭିନ୍ନ ପ୍ରକାର ଫୁଲ, ପଶୁପକ୍ଷୀର ଚିତ୍ର ସାଙ୍ଗକୁ ନାନା ଜ୍ୟାମିତିକ ଚିତ୍ର କୁଟେଇଥାନ୍ତି । ବିବାହ ପୂର୍ବରୁ ଯୁବତୀମାନେ ଶରୀରର ବିଭିନ୍ନ ସ୍ଥାନରେ ଚିତା କୁଟେଇଥାନ୍ତି । ଆହୁରି ମଧ୍ୟ ରାଜାମହାରାଜାଙ୍କ ପାପ ଦୃଷ୍ଟିରୁ ନିଜକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ଜୁଆଙ୍ଗ ଯୁବତୀମାନଙ୍କ ମୁହଁରେ ଚିତା କୁଟାଯାଇଥାଏ । ମୁହଁରେ ଚିତା କୁଟେଇବା ଦ୍ୱାରା ଯୁବତୀମାନେ ଅସୁନ୍ଦର ଦିଶନ୍ତି ବୋଲି ସେମାନେ ଭାବନ୍ତି । ସାଧାରଣତଃ ଏ ଅଞ୍ଚଳର ଗୌଡ ଜାତିର ମହିଳାମାନେ

ଗାଁ ଗାଁ ବୁଲି ଜୁଆଙ୍ଗ ରମଣୀମାନଙ୍କ ଶରୀରରେ ଚିତା କୁଟେଇଥାନ୍ତି । ନାନା ପ୍ରକାର ରୋଗବଇରାଗରୁ ମୁକ୍ତି ପାଇବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ଚିତା କୁଟେଇଥାନ୍ତି । କଦଳୀ ବାଉଁଙ୍ଗାକୁ ପୋଡି ସେଥିରୁ ପ୍ରସ୍ତୁତ ହେଉଥିବା ପାଉଁଶ, ଡିବିରି କଳା ଏବଂ ଏକ ପ୍ରକାର ଜଙ୍ଗଲୀ ଗଛର ଅଠାରୁ ଚିତା କୁଟେଇବା ପାଇଁ ବ୍ୟବହୃତ ହେଉଥିବା କାଳି ପ୍ରସ୍ତୁତ ହୋଇଥାଏ । ବେଳେବେଳେ ଚିତା କୁଟେଇବା ପାଇଁ ଲାଉଗଛକୁ ପୋଡି ସେଥିରୁ ପ୍ରସ୍ତୁତ ପାଉଁଶ ଏବଂ ଜଡ଼ାତେଲରେ ଏକପ୍ରକାର କାଳି ପ୍ରସ୍ତୁତ ହୋଇଥାଏ ।


ଜୁଆଙ୍ଗ ପରିବାର

# ତୃତୀୟ ପରିଚ୍ଛେଦ

## ଜୁଆଙ୍ଗ ସାମାଜିକ ଜୀବନ

*(social life the Juang)*

ଜୁଆଙ୍ଗମାନଙ୍କ ସାମାଜିକ ଓ ଗୋଷ୍ଠୀ ଜୀବନ ଖୁବ୍ ସମୃଦ୍ଧ । ପର୍ବପର୍ବାଣି, ବିଭାଘର, ଜନ୍ମ ଓ ମୃତ୍ୟୁ ଭଳି ଧାର୍ମିକ ଓ ସାମାଜିକ କାର୍ଯ୍ୟକ୍ରମମାନଙ୍କରେ ସେମାନେ ଏକତ୍ରିତ ହୋଇଥା'ନ୍ତି । ଜୁଆଙ୍ଗ ଗାଁରେ ଜଣେ କେହି ମରିଗଲେ ସମସ୍ତେ ପ୍ରଥମେ 'ମଣ୍ଡଘରେ' ଏକତ୍ରିତ ହୋଇଥାନ୍ତି ଏବଂ ଏହାପରେ ସମସ୍ତେ ମୃତକର ଘରେ ଉପସ୍ଥିତ ହୋଇ ପରିବାରର ସଦସ୍ୟମାନଙ୍କୁ ସମବେଦନା ଜ୍ଞାପନ କରିଥା'ନ୍ତି । ସେହିଭଳି କାହା ଘରେ ଶିଶୁଟିଏ ଜନ୍ମ ହେଲେ ସମସ୍ତେ ଏକତ୍ରିତ ହୋଇଥାନ୍ତି । ଜୁଆଙ୍ଗମାନେ ମିଳିମିଶି ଡଇଜାରେ ପୋଡୁଚାଷ କରନ୍ତି ଏବଂ ଫସଲ ଅମଳ କରନ୍ତି । ସହରୀ ଶିକ୍ଷିତ ଲୋକମାନଙ୍କ ଭଳି ଏକଲା ଓ ଅଲଗା ହୋଇ ବଞ୍ଚିବା ଜୁଆଙ୍ଗମାନେ ଶିଖି ନଥା'ନ୍ତି । ଯାହା କାର୍ଯ୍ୟକ୍ରମ କରନ୍ତି, ସମସ୍ତେ ମିଳିମିଶି କରିଥା'ନ୍ତି । ଅବସର ସମୟରେ ଜୁଆଙ୍ଗମାନେ ଗାଁ ମଝିରେ ଥିବା ସେମାନଙ୍କ ମଣ୍ଡଘରେ ଉପସ୍ଥିତ ହୋଇ ଦୁଃଖସୁଖ ହୁଅନ୍ତି ।ସାଧାରଣତଃ ସମଗୋତ୍ରୀୟ ଜୁଆଙ୍ଗମାନେ ଗୋଟିଏ ଗ୍ରାମରେ ବସବାସ କରନ୍ତି । ଗୋଟିଏ ଗ୍ରାମର ସମଗୋତ୍ରୀଙ୍କ ମଧ୍ୟରେ ବିବାହ ସଂପର୍କ ସ୍ଥାପନ ହୋଇ ନଥାଏ । ଜୁଆଙ୍ଗମାନଙ୍କ 'ମଜାଙ୍ଗ' ସେମାନଙ୍କ ସାମାଜିକ ଜୀବନକୁ ସର୍ବାଧିକ ପ୍ରଭାବିତ କରୁଥିବା ଏକ ଅନୁଷ୍ଠାନ । ଏହା ମାଧ୍ୟମରେ ସେମାନଙ୍କର ସମସ୍ତ ପ୍ରକାର ସମସ୍ୟାର ସମାଧାନ ହୋଇଥାଏ । ଏହା ଏକ ଅବସର ବିନୋଦନ କେନ୍ଦ୍ର ଭାବେ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ପାଇଁ ବେଶ୍ ସହାୟକ ହୋଇଥାଏ । ଗାଁରେ କିଛି ସମସ୍ୟା ଉପୁଜିଲେ କିମ୍ବା ଗଣ୍ଡଗୋଳ ହେଲେ ଗାଁର ପଧାନ, ନାଗମ୍ ଓ ବାରଭାଇ ବସି ଏହାର ସମାଧାନ କରିଥା'ନ୍ତି । ଜୁଆଙ୍ଗ ଅଞ୍ଚଳର ଖୁବ୍ କମ୍

ମାମଲା ଥାନା କିମ୍ବା କୋର୍ଟକଚେରୀକୁ ଆସିଥାଏ । ଅଧିକାଂଶ ମାମଲାର ସମାଧାନ ଗାଁ ସଂଗଠନ ମାଧ୍ୟମରେ ହୋଇଥାଏ ।

## ମଜାଙ୍ଗ ବା ମଣ୍ଡଘର

*(youth dormitory)*

ଅତୀତରେ ଅବିବାହିତ ଜୁଆଙ୍ଗ ଯୁବକ (**କଙ୍ଗେର**), ଅବିବାହିତ ଯୁବତୀ (**ସେଲାନ୍**)ମାନଙ୍କ ପାଇଁ ପ୍ରତ୍ୟକ ଗାଁରେ ଦୁଇଟି ଭିନ୍ନଭିନ୍ନ 'ଅବସର ବିନୋଦନ କେନ୍ଦ୍ର' *(youth dormitory)* ଥିଲା । ଯୁବକମାନଙ୍କ ପାଇଁ ବ୍ୟବହୃତ ଅବସର ବିନୋଦନ କେନ୍ଦ୍ରଟିକୁ **'ମଜାଙ୍ଗ'** ବା **'ମଣ୍ଡଘର'** କୁହାଯାଉଥିବା ବେଳେ ଯୁବତୀମାନଙ୍କ ପାଇଁ ଉଦ୍ଦିଷ୍ଟ ଘରଟିକୁ **'ମେଲାଇଁଙ୍ଗ୍ୟାନ୍'** କୁହାଯାଉଥିଲା । ମାତ୍ର, ଆଜିର ଦିନରେ ଏହି **'ମେଲାଇଁଙ୍ଗ୍ୟାନ୍'**ର ପ୍ରାସଙ୍ଗିକତା ଆଉ ଅନୁଭବ କରିହେଉ ନାହିଁ । ଜୁଆଙ୍ଗ ଗାଁମାନଙ୍କରେ ଏହି **'ମେଲାଇଁଙ୍ଗ୍ୟାନ୍'** ଏବେ ଦେଖିବାକୁ ମିଳେନାହିଁ । ମାତ୍ର ମଜାଙ୍ଗ ବା ମଣ୍ଡଘର ଏବେ ବି ପ୍ରତି ଜୁଆଙ୍ଗ ଗାଁ ରେ ନିଜର ଅବସ୍ଥିତ ଜାହିର୍ କରିପାରିଛି ।

ଏବେ ବିକାଶ ନାଁରେ ଜୁଆଙ୍ଗମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନରେ କିଛିଟା ପରିବର୍ତ୍ତନ



ଜୁଆଙ୍ଗ ମଜାଙ୍ଗ୍ (ମଣ୍ଡଘର)



▶ ମଜାଙ୍ଗ୍ (ମଣ୍ଡଘର) ଭିତରର ଦୃଶ୍ୟ

ଲକ୍ଷ୍ୟ କରାଯାଉଛି । ଜୁଆଙ୍ଗ ଜୀବନର ପ୍ରାଣକେନ୍ଦ୍ର କୁହାଯାଉଥିବା **'ମଜାଙ୍ଗ୍'** (ମଣ୍ଡଘର) ପ୍ରତି ଏବେ ନାନା ପ୍ରକାର ବିପଦ ଦେଖାଦେଇଛି । ପୁରୁଷ ପୁରୁଷ ଧରି ଗାଁ ମଝିରେ ଠିଆ ହୋଇଥିବା ଝାଟିମାଟିରେ ନିର୍ମିତ ପାରଂପରିକ ମଣ୍ଡଘରକୁ ସରକାର ଧ୍ୱଂସ କରି ସେହି ସ୍ଥାନରେ ସ୍କୁଲ୍ ଘର ଭଳି ଆଜବେଷ୍ଟସ ଛାତ ଥିବା ଲମ୍ବା ହଲ୍‌ଟିଏ ନିର୍ମାଣ କରି ତାହାର ନାମ କମ୍ୟୁନିଟି ସେଣ୍ଟର *(comunity centre)* ରଖୁଛନ୍ତି । ତେବେ ସରକାରଙ୍କ ପକ୍ଷରୁ ନବନିର୍ମିତ ଏହି ଗୋଷ୍ଠୀ କେନ୍ଦ୍ରଗୁଡିକ ପାରଂପରିକ ମଣ୍ଡଘରର ସ୍ଥାନ ନେଇପାରିବେକି? ଏହା ବିତର୍କସାପେକ୍ଷ । ପୂର୍ବେ ମଣ୍ଡଘରଗୁଡିକରେ ବ୍ୟବହୃତ ହୋଇଥିବା କାଠ ଖୁଣ୍ଟରେ ଯେଉଁଭଳି ଖୋଦେଇ ଶିଳ୍ପକଳା ପ୍ରଦର୍ଶିତ ହୋଇପାରିଥିଲା, ଆଜିର ସିମେଣ୍ଟ ନିର୍ମିତ ଗୋଷ୍ଠୀକେନ୍ଦ୍ରରେ ସେମିତି ଦେଖିବାକୁ ମିଳୁନାହିଁ ।

ସାଧାରଣତଃ, ପ୍ରତି ଜୁଆଙ୍ଗ ଗ୍ରାମରେ ଗୋଟିଏ ଲେଖାଏ **'ମଜାଙ୍ଗ୍' (ମଣ୍ଡଘର)** ରହିଥାଏ । ମଣ୍ଡଘରଟି ମୁଖ୍ୟତଃ ୮ ପ୍ରକାର କାର୍ଯ୍ୟ ତୁଲାଇଥାଏ । ସେଗୁଡିକ ହେଲା-

୧. ଗାଁ ନ୍ୟାୟାଳୟ *(village court)*
୨. ସୂଚନା କେନ୍ଦ୍ର *(information centre)*
୩. ଅତିଥି ଚର୍ଚ୍ଚା ଗୃହ *(guest house)*
୪. କୋଠଘର *(godown)*
୫. ସାଂସ୍କୃତିକ କେନ୍ଦ୍ର *(cultural centre)*
୬. ଯୁବକ ସଂଘ ଗୃହ *(comunity centre)*
୭. ଅବସର ବିନୋଦନ କେନ୍ଦ୍ର *(village common room)*
୮. ଧାର୍ମିକ କେନ୍ଦ୍ର *(religious centre)*

ଜୁଆଙ୍ଗମାନଙ୍କର ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ, ରାଜନୈତିକ ଓ ଗୋଷ୍ଠୀ ଜୀବନରେ 'ମଜାଙ୍ଗ'ର ଏକ ବିଶେଷ ଭୂମିକା ରହିଥାଏ । 'ମଜାଙ୍ଗ (ମଣ୍ଡଘର)କୁ ଅନ୍ୟ ଅର୍ଥରେ କଚେରୀ ଘର ବୋଲି ବୁଝାଯାଇଥାଏ । ଏଠାରେ ଜୁଆଙ୍ଗମାନଙ୍କର ସମସ୍ତ ପ୍ରକାର ନ୍ୟାୟନିଶାପ ହୋଇଥାଏ ।



ମଜାଙ୍ଗ୍ (ମଣ୍ଡଘର) ଭିତରର ଦୃଶ୍ୟ



▶ ମଜାଙ୍ଗ୍ (ମଣ୍ଡଘର) ସାମ୍ନାରେ ଜୁଆଙ୍ଗ ଯୁବକମାନେ ଚାଙ୍ଗୁ ବଜେଇ ନାଚଗୀତ କରୁଛନ୍ତି ।

ମଣ୍ଡଘରଟି ଗ୍ରାମର ଅନ୍ୟାନ୍ୟ ସାଧାରଣ ଘରମାନଙ୍କ ତୁଳନାରେ ବଡ଼ ଆକାରର ହୋଇଥାଏ । ଅପରପକ୍ଷେ, ଏହି ମଣ୍ଡଘରେ ହିଁ ପ୍ରତି ସନ୍ଧ୍ୟାରେ ଜୁଆଙ୍ଗ ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି । ଚାଙ୍ଗୁ ବାଦ୍ୟ ଓ ଗୀତର ତାଳେତାଳେ ଜୁଆଙ୍ଗ ସେଲାନ୍ (ଯୁବତୀ), କଙ୍ଗେର (ଯୁବକ)ମାନେ ଝୁମି ଉଠିଥାନ୍ତି । 'ମଣ୍ଡଘର'ଟିରେ ଜୁଆଙ୍ଗମାନେ ଏକତ୍ରିତ ହୋଇ ସେମାନଙ୍କର ବିଭିନ୍ନ ସମସ୍ୟା ଉପସ୍ଥାପନ କରିଥାନ୍ତି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରି ଜୀବନକୁ ଉପଭୋଗ କରିଥାନ୍ତି ।

ଆଜିର ଦିନରେ ଜୁଆଙ୍ଗର 'ମଣ୍ଡଘର'ର ଚିତ୍ର ସଂପୂର୍ଣ୍ଣ ବଦଳି ଯାଇଛି । ଅତି ପ୍ରାଚୀନ କାଳରୁ ଜୁଆଙ୍ଗମାନେ ନିଆଁକୁ ସାଇତି ରଖିବାର ପରଂପରାକୁ ବଜାୟ ରଖିଆସୁଥିଲେ । ମଣ୍ଡଘରେ ଜୁଆଙ୍ଗମାନେ ନିୟମିତ କାଠ ଜାଳି ନିଆଁକୁ ସାଇତି ରଖିବାର ପରଂପରା କାହିଁ କେଉଁ କାଳରୁ ଚଳି ଆସିଛି । ମାତ୍ର ଆଜି ଅନେକ ମଣ୍ଡଘରେ ନିୟମିତ ଭାବେ ଏହି ନିଆଁ (ଧୂନି)କୁ ଜଳାଇ ରଖିବାର ଦେଖାଯାଉନାହିଁ ।

ଜୁଆଙ୍ଗମାନେ ଗୋଟିଏ କାଠଗଣ୍ଡିରେ ଅଗ୍ନି ସଂଯୋଗ କରି ନିଆଁକୁ ସବୁଦିନ ପାଇଁ ସାଇତି

ରଖନ୍ତି । କାଠ ଗଣ୍ଡିଟି ସଂପୂର୍ଣ୍ଣ ଜଳିଗଲେ ସେଥିରେ ପୁଣି ଏକ କାଠ ଗଣ୍ଡିକୁ ସଂଯୋଗ କରି ନିଆଁକୁ ଉଜ୍ଜୀବିତ କରି ରଖାଯାଇଥାଏ । ମଣ୍ଡଘର ମଝି ଚଟାଣରେ କି ଦିନ କି ରାତି ସବୁବେଳେ କାଠଗଣ୍ଡିଟିରେ ଅଗ୍ନି ସଂଯୁକ୍ତ ହୋଇ ରହିଥାଏ । ପୂର୍ବେ ଜୁଆଙ୍ଗମାନେ ମଣ୍ଡଘରର ମଝି ଚଟାଣରେ ଜଳୁଥିବା ନିଆଁ ଚାରିପାର୍ଶ୍ୱରେ ଘେରି ବସୁଥିଲେ ଏବଂ ଶୀତଦିନେ ନିଆଁ ପୁଆଁଉଥିଲେ । ଏଇଠି ବସି ଜୁଆଙ୍ଗ ମୁଖିଆ ଗାଁର ହାନିଲାଭ, ନ୍ୟାୟ ନିଶାପ ବୁଝୁଥିଲେ । ଜୁଆଙ୍ଗମାନେ ମଣ୍ଡଘରେ ନିୟମିତ ଜଳୁଥିବା ଏହି ନିଆଁକୁ ମଧ୍ୟ ନିୟମିତ ପୂଜା କରୁଥିଲେ । ମଣ୍ଡଘରେ ଜଳୁଥିବା କାଠର ପାଉଁଶକୁ ସଂଗ୍ରହ କରି ସେମାନେ ପୋଡୁ ଚାଷରେ ବ୍ୟବହାର କରୁଥିଲେ । ମାତ୍ର ଆଜି ସେଥିରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି । କେବଳ ପର୍ବପର୍ବାଣି ପାଳନ ସମୟରେ ଜୁଆଙ୍ଗମାନେ ମଣ୍ଡଘରେ କାଠଗଣ୍ଡିରେ ଅଗ୍ନି ସଂଯୋଗ କରି ଧୂନି ଜାଳୁଛନ୍ତି ।

ଆଜିର ଦିନରେ ଜୁଆଙ୍ଗମାନଙ୍କ ମଣ୍ଡଘରର ପରିଭାଷା ବଦଳି ଯାଇଛି । ଏଠାରେ ଜୁଆଙ୍ଗମାନଙ୍କର ଗାଁ ମୁଖିଆ 'ପଧାନ' ଓ 'ବାରଭାଇ' ଏକତ୍ର ବସି ଗାଁର ଭଲମନ୍ଦ ବୁଝୁଥିଲେ । ମାତ୍ର ଆଜି ଜୁଆଙ୍ଗମାନଙ୍କ ପାରଂପରିକ ଗାଁ ମୁଖିଆ 'ପଧାନ'ଙ୍କ ସ୍ଥାନ ଓ୍ୱାର୍ଡମେମ୍ବରମାନେ ନେଇଛନ୍ତି । ସେମାନେ ଗାଁର



▶ ମଜାଙ୍ଗ୍ (ମଣ୍ଡଘର) ସାମ୍ନାରେ ଜୁଆଙ୍ଗ ଯୁବକ ଯୁବତୀମାନେ ଚାଙ୍ଗୁ ବଜେଇ ନାଚଗୀତ କରୁଛନ୍ତି ।



▶ **ମଡାଙ୍ଗ୍ (ମଣ୍ଡଘର) ସାମ୍ନାରେ ଜୁଆଙ୍ଗ ଯୁବକ ଯୁବତୀମାନେ ଚାଙ୍ଗୁ ବଜେଇ ନାଚଗୀତ କରୁଛନ୍ତି ।**

ଭଲମନ୍ଦ ବୁଝିଲେଣି । ତଥାପି 'ପଧାନ' ଓ 'ବାରଭାଇ'ଙ୍କ ପ୍ରାଧାନ୍ୟ ଏବେ ମଧ୍ୟ ବଜାୟ ରହିଛି । ଆଗରୁ ନ୍ୟାୟନିଶାପ ପାଇଁ ଥାନା, ହାଜତକୁ ଯାଉ ନଥିବା ଜୁଆଙ୍ଗମାନେ ଏବେ ଥାନା, କୋର୍ଟ, କଚେରୀକୁ ଗଲେଣି । ପୂର୍ବେ ମଣ୍ଡଘରଟିରେ ଗାଁର ସମସ୍ତ ଯୁବକ ରାତିରେ ଏକତ୍ର ଶୟନ କରୁଥିଲେ । ମାତ୍ର ଆଜିର ଦିନରେ ଅନେକ ଯୁବକ ନିଜନିଜର ଘରେ ରାତ୍ରିଯାପନ କରୁଛନ୍ତି ।

ସାଧାରଣତଃ ଗାଁର ଠିକ୍ ମଧ୍ୟ ଭାଗରେ ମଣ୍ଡଘରଟି ଅବସ୍ଥିତ । ମଣ୍ଡଘରଟି ଆକାରରେ ବିଶାଳ ଏବଂ ଏହାର ଚତୁର୍ପାର୍ଶ୍ୱରେ କାନ୍ଥ ନ ଥାଏ । ଏହାର ଚାରି ଦିଗ ଉନ୍ମୁକ୍ତ ଥାଏ । ମଣ୍ଡଘରର ମଝି ଚଟାଣରେ ନିୟମିତ କାଠ ଗଣ୍ଡିରେ ନିଆଁ ଜଳୁଥାଏ । ମଣ୍ଡଘରେ ଜଳୁଥିବା କାଠଗଣ୍ଡିର ଦୃଶ୍ୟ ଅନ୍ୟ କୌଣସି ଜନଜାତିଙ୍କ କ୍ଷେତ୍ରରେ ଦେଖିବାକୁ ମିଳି ନଥାଏ । ମଣ୍ଡଘର କାନ୍ଥରେ ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର, କୃଷି ଓ ଶିକାର ଉପକରଣ ଝୁଲୁଥାଏ । ଅନ୍ୟ ଏକ ପାର୍ଶ୍ୱରେ ଗାଁରେ ଅମଳ ହୋଇଥିବା

ଧାନ, ବିରି, ମାଣ୍ଡିଆ, ବାଜରା, ମକା ଆଦି ଶସ୍ୟ ମହଜୁଦ୍ ହୋଇ ରହିଥାଏ । କେବେକେମିତି ବହିରାଗତ ଅତିଥି ଗାଁକୁ ଆସିଲେ ସେମାନଙ୍କୁ ଏହି ମଣ୍ଡଘରେ ଆଶ୍ରୟ ଦିଆଯାଇଥାଏ । ଜୁଆଙ୍ଗମାନେ ଅତିଥିପ୍ରିୟ ଏବଂ ମଣ୍ଡଘର ହିଁ 'ଅତିଥି ନିବାସ'ର ଭୂମିକା ତୁଲେଇଥାଏ ।

ଜୁଆଙ୍ଗମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନକୁ ସର୍ବାଧିକ ପ୍ରଭାବିତ କରୁଥିବା ଏହି ମଣ୍ଡଘରଟି ସବୁ ଦିଗରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗାଁରେ ପର୍ବପର୍ବାଣି ପାଳନ ପୂର୍ବରୁ ଏଠାରେ ପ୍ରସ୍ତୁତି ବୈଠକ ବସିଥାଏ । ଚାଷବାସ ନେଇ ଜୁଆଙ୍ଗ ମୁଖିଆ 'ପଧାନ', 'ନାଗମ୍', 'ଡାଙ୍ଗୁଆ' ଓ 'ବାରଭାଇ' ଆଦି ମଣ୍ଡଘରେ ବସି ଗାଁର ଅନ୍ୟ ଜୁଆଙ୍ଗ ଭାଇମାନଙ୍କ ସହ ଆଲୋଚନା କରିଥାନ୍ତି । ଏହା ସାଙ୍ଗକୁ ଗାଁର ଯୁବକ, ଯୁବତୀମାନେ ନାଚଗୀତର ଆସର ଜମେଇବା ପାଇଁ ପ୍ରତି ସନ୍ଧ୍ୟାରେ ମଣ୍ଡଘରେ ହିଁ ଏକତ୍ରିତ ହୋଇଥାନ୍ତି । ଗାଁର ଜୁଆଙ୍ଗମାନଙ୍କ ମଧ୍ୟରେ ଭାଇଚାରା ବଜାୟ ରଖିବାରେ ମଣ୍ଡଘର ହିଁ ପ୍ରମୁଖ ଭୂମିକା ତୁଲେଇଥାଏ ।



▶ ପର୍ବ ପାଳନ ପୂର୍ବରୁ ଜୁଆଙ୍ଗ ସେଲାନ୍ (ଯୁବତୀ) ମଣ୍ଡଘରକୁ ଲିପାପୋଛା କରୁଛନ୍ତି



➢ ଜୁଆଙ୍ଗମାନଙ୍କ ଗ୍ରାମ ଦେବତା: ଗ୍ରାମଶିରି

ଜୁଆଙ୍ଗ ଯୁବକମାନେ ହିଁ ଏହି ମଣ୍ଡଘରଟିକୁ ନିର୍ମାଣ କରିଥାନ୍ତି । ନିକଟସ୍ଥ ଜଙ୍ଗଲରୁ କାଠ, ବାଉଁଶ ସଂଗ୍ରହ କରି ଯୁବକମାନେ ମଣ୍ଡଘରଟିକୁ ନିର୍ମାଣ କରିଥା'ନ୍ତି । ଯୁବତୀମାନେ ସପ୍ତାହରେ ଥରେ ଏହାର ଲିପାପୋଛା ଦାୟିତ୍ୱ ବହନ କରିଥା'ନ୍ତି । ମଣ୍ଡଘରଟିରେ ବହୁ ସଂଖ୍ୟାରେ ବଡ଼ବଡ଼ ଖୋଦେଇକରା କାଠ ଖୁଣ୍ଟମାନ ବ୍ୟବହାର କରାଯାଇଥାଏ । ଗାଁ ଦାଣ୍ଡର ପତ୍ତନଠାରୁ ଚାରି ପାଞ୍ଚ ଫୁଟ ଉଚ୍ଚର ଏକ ମାଟି ପିଣ୍ଡି (ବେଦୀ) ପ୍ରସ୍ତୁତ କରାଯାଇ ଏହାର ଚାରି ପାର୍ଶ୍ୱରେ ଚାରୋଟି କାଠ ଖୁଣ୍ଟ ପୋତାଯାଇଥାଏ । ଏହି କାଠ ଖୁଣ୍ଟମାନଙ୍କ ଉପରେ ଛପର କରାଯାଇଥାଏ । କାଠ ଖୁଣ୍ଟଗୁଡିକରେ ବିଭିନ୍ନ ପ୍ରକାର ଖୋଦେଇ କାମ ଓ ଚିତ୍ର ଦେଖିବାକୁ ମିଳିଥାଏ । ଏହି ଖୋଦେଇ ଚିତ୍ରକଳା ହିଁ ଜୁଆଙ୍ଗମାନଙ୍କ ମଣ୍ଡଘରର ଶୋଭା ବର୍ଦ୍ଧନ କରିଥାଏ । ମଣ୍ଡଘର ସମ୍ମୁଖରେ ଏକ ବଡ଼ ଅଗଣା ବା ସଦର ଦାଣ୍ଡ ଭଳି ବିସ୍ତୀର୍ଣ୍ଣ ଖୋଲା ସ୍ଥାନ ଥାଏ । ଏଠାରେ ଗ୍ରାମଦେବୀ **'ଗ୍ରାମଶିରି'ଙ୍କୁ** ସ୍ଥାପନା କରାଯାଇଥାଏ । ଏହି ସଦର ଦାଣ୍ଡରେ କଙ୍ଗେର୍ ଓ ସେଲାନ୍‌ମାନେ ନାଚଗୀତର ଆୟୋଜନ କରିଥା'ନ୍ତି ।


ଜୁଆଙ୍ଗମାନଙ୍କ ଗ୍ରାମ ଦେବତା: ଗ୍ରାମଶିରି

ମଣ୍ଡଘରେ ଆଶ୍ରୟ ନେଇଥିବା ସମସ୍ତ ଅବିବାହିତ ଜୁଆଙ୍ଗ ଯୁବକମାନଙ୍କୁ ଶୃଙ୍ଖଳିତ କରିବା, ସେମାନଙ୍କର ଦେଖାଶୁଣା କରିବା ଉଦେଶ୍ୟରେ ମଜାଙ୍ଗରେ ଜଣେ ବୟସ୍କ ଅବିବାହିତ ବୃଦ୍ଧ କିମ୍ବା ପତ୍ନୀହରା ବୟସ୍କ ଲୋକଙ୍କୁ ନିଯୁକ୍ତ କରାଯାଇଥାଏ । ଏମାନଙ୍କୁ **'ତଣ୍ଡକାର'** କୁହାଯାଏ । ତଣ୍ଡକାର ମଣ୍ଡଘରେ ରହୁଥିବା ଅବିବାହିତ ଯୁବକମାନଙ୍କର ସେବା, ଯତ୍ନ ଓ ଦାୟିତ୍ୱ ବହନ କରିଥାନ୍ତି । ଯେଉଁ ଯୁବକ କିଛି ଭୁଲ ବା ତ୍ରୁଟି କରେ ତଣ୍ଡକାର ସଂପୃକ୍ତ ଯୁବକକୁ ଦଣ୍ଡିତ କରିଥାଏ । ପର୍ବପର୍ବାଣି ସମୟରେ ତଣ୍ଡକାର୍ ସମସ୍ତ ଯୁବକ, ଯୁବତୀଙ୍କୁ ଖାଦ୍ୟ ପରିବେଷଣ କରିଥାନ୍ତି । ଏହି ଅବିବାହିତ ଯୁବକ, ଯୁବତୀମାନଙ୍କର ନାନା ପ୍ରକାର ସମସ୍ୟା ଓ ଭଲମନ୍ଦ ତଣ୍ଡକାର ବୁଝିଥାନ୍ତି ।

ମଣ୍ଡଘରର ବିକାଶ ଓ ପର୍ବପର୍ବାଣି ପାଇଁ ପ୍ରତି ଯୁବକମାନେ ଏକ ନିର୍ଦ୍ଦିଷ୍ଟ ପରିମାଣର ପାଣ୍ଠି ସଂଗ୍ରହ କରିଥାନ୍ତି । ନୂତନକରି ମଣ୍ଡଘରର ସଦସ୍ୟତା ଗ୍ରହଣ କରୁଥିବା ଯୁବକମାନେ ମଣ୍ଡଘରର ପାଣ୍ଠିକୁ କିଛି କିଛି ଚାନ୍ଦା ପ୍ରଦାନ କରିଥା'ନ୍ତି । କେଉଁ ଯୁବକମାନେ ମଣ୍ଡଘରର ସଦସ୍ୟ ହୋଇପାରିବେ ସେଥିନେଇ ନାନା ପ୍ରକାର ନିୟମ ରହିଥାଏ । ୮ ବର୍ଷରୁ କମ୍ ବୟସର ବାଳକମାନେ ମଣ୍ଡଘରର ସଦସ୍ୟ ପାଇଁ ଯୋଗ୍ୟ ବିବେଚିତ ହୋଇ ନଥାନ୍ତି । ଏହି ଶିଶୁମାନେ ନିଜନିଜର ପରିବାରରେ ବାପା, ମାଆଙ୍କ ସହ ରହିଥାନ୍ତି । ୮ ବର୍ଷରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁ ବୟସର ପୁରୁଷମାନେ ମଣ୍ଡଘରର ସଦସ୍ୟ



▶ ମଜାଙ୍ଗ୍ (ମଣ୍ଡଘର)ରେ ଜୁଆଙ୍ଗ ଯୁବକମାନେ ଚାଙ୍ଗୁ ବଜଉଛନ୍ତି ।

ହୋଇଥାନ୍ତି । ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ସବୁଠୁ ବୟସ୍କ ଅବିବାହିତ ଜୁଆଙ୍ଗ ଯୁବକକୁ **'ମାଟା କଙ୍ଗେର୍'** କୁହାଯାଏ । ମାଟା କଙ୍ଗେର୍ ମଣ୍ଡଘରର ସମସ୍ତ ଅବିବାହିତ ଯୁବକମାନଙ୍କର ନେତୃତ୍ୱ ନେଇଥା'ନ୍ତି । ମାଟା କଙ୍ଗେର୍ ନାଗମ୍‌ଙ୍କ ଭଳି ସମ୍ମାନ ପାଇଥାନ୍ତି ଏବଂ ସେ କିଛି ଧାର୍ମିକ କାର୍ଯ୍ୟ ସହ ସଂପୃକ୍ତ ମଧ୍ୟ ହୋଇଥାନ୍ତି । ମାଟା କଙ୍ଗେର୍ ମଣ୍ଡଘରେ ଥିବା ଚାଙ୍ଗୁ ଦେବତା ଭୀମା ବଡ଼ମା, କଉଁରୀ ଠାକୁରାଣୀଙ୍କୁ କୁକୁଡା, ଚାଉଳ ଦେଇ ପୂଜିଥା'ନ୍ତି । ଆମ୍ବ ନୂଆ ପର୍ବ ପାଳନବେଳେ ମାଟା କଙ୍ଗେର ହିଁ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲେଇଥା'ନ୍ତି ।

ଜୁଆଙ୍ଗ ଯୁବକମାନଙ୍କ 'ମଣ୍ଡଘର' ଭଳି ଯୁବତୀମାନଙ୍କ ନିମନ୍ତେ **'ମେଲାଇଁଜ୍ୟାନ୍'** *(youth dormitory)*ର ବ୍ୟବସ୍ଥା ଥିଲା । ଏଠାରେ ୮ ବର୍ଷରୁ ଉର୍ଦ୍ଧ୍ୱ ବୟସର ଅବିବାହିତ ଜୁଆଙ୍ଗ ଯୁବତୀମାନେ ଏକତ୍ର ରହୁଥିଲେ । ୮ ବର୍ଷରୁ କମ୍ ବୟସର ବାଳିକାମାନେ ନିଜନିଜର ପରିବାରରେ ବାପା, ମାଆଙ୍କ ସହିତ ରହୁଥିବାବେଳେ ବିବାହିତା ଜୁଆଙ୍ଗ ଯୁବତୀମାନେ ନିଜନିଜର ସ୍ୱାମୀଙ୍କ ସହ ଶାଶୂଘରେ ରହିଥାନ୍ତି । ମେଲାଇଁଜ୍ୟାନ୍‌ରେ କେବଳ ୮ ବର୍ଷ ବୟସରୁ ଉର୍ଦ୍ଧ୍ୱ ବୟସର ବାଳିକା ଓ ଅବିବାହିତ ଯୁବତୀମାନେ ରାତ୍ରିରେ ଶୟନ କରୁଥିଲେ । ଏମାନଙ୍କୁ ଦେଖାଶୁଣା ଓ ଜଗିବା ଉଦ୍ଦେଶ୍ୟରେ **'ମେଲାଇଁଜ୍ୟାନ୍'**ରେ ଜଣେ ବିଧବା ଜୁଆଙ୍ଗ କିମ୍ବା ଅବିବାହିତା ବୟସ୍କ ଜୁଆଙ୍ଗ ମହିଳା ନିଯୁକ୍ତ ହେଉଥିଲେ । ମାତ୍ର, ବିବାହ ହୋଇଗଲା ପରେ ଯୁବତୀମାନେ ଆଉ **ମେଲାଇଁଜ୍ୟାନ୍**ରେ ରହୁ

ନଥିଲେ । ତେବେ ଯୁବତୀମାନେ ରହିବା ପାଇଁ ବ୍ୟବହୃତ ମେଲାଇଁଙ୍ଘାନ୍‌ର ପ୍ରାସଙ୍ଗିକତା ଏବେ ଆଉ ନାହିଁ । ଏବେ ଯୁବତୀମାନେ ନିଜନିଜର ଘରେ ନିଜ ପରିବାରର ସଦସ୍ୟଙ୍କ ଗହଣରେ ରାତ୍ରୀଯାପନ କରୁଛନ୍ତି ।ଆଜିର ଦିନରେ କୌଣସି ଜୁଆଙ୍ଗ ଗାଁରେ ମେଲାଇଁଙ୍ଘାନ୍ ଦେଖିବାକୁ ମିଳେନାହିଁ ।



ମଜାଙ୍ଗ୍ (ମଣ୍ଡଘର) ବାହାରର ଦୃଶ୍ୟ

## ଜୁଆଙ୍ଗ ଗ୍ରାମ୍ୟ ପ୍ରାଶାସନିକ ବ୍ୟବସ୍ଥା

*(the village administrative system/political council)*

ଜୁଆଙ୍ଗ ଗାଁର ସାମାଜିକ ଓ ଶାସନ ବ୍ୟବସ୍ଥା ଅତି ଉଚ୍ଚମାନର । ଗାଁର ପ୍ରାଶାସନିକ ବ୍ୟବସ୍ଥାରେ ନାଗମ୍ (ବୁଇତା), ପଧାନ (ଗାଁ ମୁଖିଆ), ବାରଭାଇ, ଡାଙ୍ଗୁଆ, କାର୍ଜି, ଅଧିକାରୀ, ରାଉଳିଆ, ପାଞ୍ଜିଆଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏମାନଙ୍କୁ ନେଇ ଅତୀତରେ ଜୁଆଙ୍ଗ ଗାଁର ପ୍ରାଶାସନିକ ବ୍ୟବସ୍ଥା ଅଧିକ ସଂଗଠିତ ଥିଲା । ମାତ୍ର ବର୍ତ୍ତମାନ ଯୁଗରେ ଏଥିରେ ଅନେକ କିଛି ପରିବର୍ତ୍ତନ ଦେଖାଦେଇଛି ।



► **ଲେଖକ ମଣ୍ଡଘରେ ବସି ଜୁଆଙ୍ଗମାନଙ୍କ ସହ ଭଲମନ୍ଦ ଗପସପ କରୁଛନ୍ତି**

ଜୁଆଙ୍ଗମାନଙ୍କର ସାମାଜିକ ଜୀବନ ବଡ଼ ଶୃଙ୍ଖଳିତ । ଲୋକମାନଙ୍କର ସମସ୍ୟା ବୁଝିବା ପାଇଁ ପ୍ରତି ଜୁଆଙ୍ଗ ଗାଁରେ ଜଣେ ଲେଖାଏଁ ଗାଁ ମୁଖିଆ ରହିଥାନ୍ତି । ସେମାନଙ୍କୁ **'ପଧାନ'** କହନ୍ତି । ପ୍ରତ୍ୟକ ମୁଖିଆଙ୍କ ନିୟନ୍ତ୍ରଣରେ ଗୋଟିଏ ଗୋଟିଏ ବୈଚାରିକ ଗୋଷ୍ଠୀ ରହିଥାଏ । ଏହାକୁ **'ବାରଭାଇ'** ବୋଲି କୁହାଯାଏ । ଏହାବ୍ୟତୀତ ଜୁଆଙ୍ଗ ଗାଁରେ ଜଣେ ଧାର୍ମିକ ମୁଖିଆ ରହିଥାନ୍ତି । ସେମାନଙ୍କୁ **'ନାଗମ୍'** **(ବୁଇତା)** କହନ୍ତି । 'ପଧାନ'ଙ୍କୁ କାର୍ଯ୍ୟରେ ସହଯୋଗ କରିବା ପାଇଁ ଅନ୍ୟ ଜଣେ ସଦସ୍ୟ ରହିଥାନ୍ତି । ତାଙ୍କୁ **'ଡାଙ୍ଗୁଆ'** କହନ୍ତି । ଡାଙ୍ଗୁଆ ବିଶେଷକରି ଟହଲିଆ କାମ କରିଥାନ୍ତି । ପର୍ବପର୍ବାଣି ଓ ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ଡାଙ୍ଗୁଆ ଗାଁ ଲୋକମାନଙ୍କୁ ସୂଚନା ପ୍ରଦାନ କରିଥା'ନ୍ତି । ଏହାବ୍ୟତୀତ ବିଭିନ୍ନ ପର୍ବପର୍ବାଣି ସମୟରେ ପୂଜକ (ନାଗମ୍)ଙ୍କୁ ପୂଜା ଓ ଛେଦ କାମରେ ସହାୟତା କରୁଥିବା ଆଉ ଜଣେ ପ୍ରମୁଖ ବ୍ୟକ୍ତି ହେଉଛନ୍ତି **କାର୍ଜି** । ଗାଁରେ ପର୍ବପର୍ବାଣି ପାଳନ ବେଳେ କାର୍ଜିଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ ।

## ପଧାନ

*(the village head man)*

ପ୍ରତ୍ୟକ ଜୁଆଙ୍ଗ ଗାଁରେ ଜଣେ ପ୍ରାଶାସନିକ ମୁଖ୍ୟ ଥାଆନ୍ତି । ସେ ହେଉଛନ୍ତି **'ପଧାନ'** । ବାସ୍ତବରେ 'ପଧାନ' ହେଉଛନ୍ତି ଗ୍ରାମ୍ୟ ପ୍ରାଶାସନିକ ବ୍ୟବସ୍ଥାର ସର୍ବୋଚ୍ଚ ବ୍ୟକ୍ତି । ପ୍ରତି ଜୁଆଙ୍ଗ ଗାଁରେ ଜଣେ ଲେଖାଏଁ 'ପଧାନ' ଥାଆନ୍ତି । ଗାଁର ଭଲମନ୍ଦ, ନ୍ୟାୟ ନିଶାପ ସବୁ ଏହି 'ପଧାନ' ବୁଝିଥାନ୍ତି । ଗାଁରେ ଶାନ୍ତିଶୃଙ୍ଖଳା ରକ୍ଷା କରିବାରେ 'ପଧାନ' ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ଅପରପକ୍ଷେ, ଉତ୍ସବ, ପର୍ବପର୍ବାଣି ସମୟରେ 'ପଧାନ'ଙ୍କ ଭୂମିକା ଆହୁରି ଅଧିକ ବଢିଯାଇଥାଏ । ଯେକୌଣସି ପୂଜା କାର୍ଯ୍ୟରେ ଦିଆଯିବାକୁ ଥିବା ପଶୁ, ପକ୍ଷୀ ବଳି ପଧାନଙ୍କ ଦ୍ୱାରା ସମାହିତ ହୋଇଥାଏ । ପଧାନ ଏହି ପଶୁପକ୍ଷୀମାନଙ୍କୁ ହତ୍ୟା କରିଥା'ନ୍ତି । ପୁଷ୍ ପୁନେଇଁ ପର୍ବ ବେଳେ 'ଡଇଳା' (ଉଚ୍ଚ ଜମି) ଆବଣ୍ଟନରେ ପଧାନଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ରାଜାରାଜୁଡ଼ା ଅମଳରେ 'ପଧାନ'ମାନଙ୍କ ପ୍ରାସଙ୍ଗିକତା ଅନୁଭବ



କରି ହେଉଥିଲା, ମାତ୍ର ଏବେ ଏହି ବ୍ୟବସ୍ଥାରେ ବହୁ ପରିବର୍ତ୍ତନ ଦେଖା ଦେଇଛି । ପୂର୍ବେ ଗାଁର ନ୍ୟାୟିକ ବ୍ୟବସ୍ଥାରେ 'ପଧାନ' ଥିଲେ ସର୍ବେସର୍ବା । ମାତ୍ର, ବର୍ତ୍ତମାନ ସମୟରେ 'ପଧାନ'ଙ୍କର ଭୂମିକା ସଂକୁଚିତ ହୋଇଛି । ଯଦିଓ ଏବେ ସବୁ ଜୁଆଙ୍ଗ ଗାଁରେ ପଧାନ ଅଛନ୍ତି, ମାତ୍ର ତାଙ୍କର ଭୂମିକା ଗୌଣ ହୋଇଯାଇଛି । ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ନିର୍ବାଚିତ ପ୍ରତିନିଧିମାନେ ଗାଁର ସମସ୍ୟା ବୁଝିବାରେ ସହାୟକ ହେଉଛନ୍ତି । **'ମେମ୍ବର'** (ଓ୍ୱାର୍ଡମେମ୍ବର) ହେଉଛନ୍ତି ବର୍ତ୍ତମାନ ଜୁଆଙ୍ଗ ଗାଁର ରାଜନୈତିକ ମୁଖ୍ୟ । ମାତ୍ର ଗ୍ରାମର ସାଂସ୍କୃତିକ ଓ ଧାର୍ମିକ କାର୍ଯ୍ୟକ୍ରମରେ 'ପଧାନ'ଙ୍କୁ ହିଁ ଖୋଜା ପଡିଥାଏ । ସେଠାରେ ଓ୍ୱାର୍ଡମେମ୍ବରମାନଙ୍କର ବିଶେଷ ଭୂମିକା ନଥାଏ ।

**ନାଗମ୍:** *(the ritual head or the village priest)*

ଜୁଆଙ୍ଗ ଗାଁରେ ଦୁଇ ପ୍ରକାର ମୁଖିଆ ଥାଆନ୍ତି । 'ପଧାନ'ଙ୍କ ବ୍ୟତୀତ ଗାଁରେ ଧାର୍ମିକ ବ୍ୟବସ୍ଥାର ପରିଚାଳନା ନେଇ ଆଉ ଜଣେ ମୁଖିଆ ଥାଆନ୍ତି । ତାଙ୍କୁ **'ନାଗମ୍'** ବା **'ବୁଇତା'** କହନ୍ତି । ବୁଇତା ହେଉଛନ୍ତି ଗାଁର ଧାର୍ମିକ ମୁଖିଆ ଏବଂ ପୂଜକ । ଗାଁର ସମସ୍ତ ପ୍ରକାର ପୂଜା, ପର୍ବପର୍ବାଣିବେଳେ ନାଗମ୍ (ବୁଇତା)ମାନେ ଦେବାଦେବୀଙ୍କୁ ପୂଜା କରନ୍ତି । ଦେବଦେବୀଙ୍କ କୃପା ଲାଭ ପାଇଁ, ରୋଗ, ବଇରାଗରୁ ରକ୍ଷା ପାଇଁ, ଗାଈ, ଗୋରୁଙ୍କ ଆରୋଗ୍ୟ ପାଇଁ, ଭଲ ଫସଲ ପାଇଁ, ଭଲ ବର୍ଷା ପାଇଁ 'ନାଗମ୍' (ବୁଇତା)ମାନେ ସେମାନଙ୍କୁ ପୂଜା କରନ୍ତି ଏବଂ ଗ୍ରାମର ମଙ୍ଗଳ କାମନା କରନ୍ତି । ଏମାନଙ୍କୁ ଗାଁର ପ୍ରତି ପରିବାର ପକ୍ଷରୁ କିଛି ଶସ୍ୟ, ଫଳମୂଳ ଓ ଦିନକର ଶାରୀରିକ ଶ୍ରମ ଦାନ



କରାଯାଇଥାଏ । ପ୍ରତିବର୍ଷ ନାଗମ୍‌ଙ୍କୁ ଗାଁର ପ୍ରତି ପରିବାରରୁ ଗୋଟିଏ ଲେଖା **'ଭେଦା'** (ଶ୍ରମ) ପ୍ରଦାନ କରାଯାଇଥାଏ । ଅର୍ଥାତ୍ ପ୍ରତିବର୍ଷ ପ୍ରତି ପରିବାରରୁ ଜଣେ ଲେଖାଏ ଶ୍ରମିକ ମାଗଣାରେ ନାଗମ୍‌ଙ୍କର କାମ କରିଥା'ନ୍ତି । ଏଥିପାଇଁ ତାଙ୍କୁ ନାଗମ୍‌ଙ୍କ ପକ୍ଷରୁ କୌଣସି ପାରିଶ୍ରମିକ ଦେବାକୁ ପଡି ନଥାଏ । ବଂଶାନୁକ୍ରମିକ ଭାବେ 'ନାଗମ୍'ମାନଙ୍କୁ ନିର୍ବାଚିତ କରାଯାଇଥାଏ । ଗାଁ ଠାକୁରାଣୀ **'ଗ୍ରାମଶିରି'**ଙ୍କ ନିର୍ଦ୍ଦେଶ ଅନୁସାରେ 'ନାଗମ୍' ନିର୍ବାଚନ କରାଯାଇଥାଏ । ସାଧାରଣତଃ ବୟସ୍କ ବ୍ୟକ୍ତିଙ୍କୁ ନାଗମ୍ ନିର୍ବାଚିତ କରାଯାଇଥାଏ । ନାଗମ୍ ବୃଦ୍ଧ ହୋଇ ମୃତ୍ୟୁବରଣ କଲାପରେ ତାଙ୍କ ପୁତ୍ର ଉତ୍ତରାଧିକାରୀ ଭାବେ ନିର୍ବାଚିତ ହୋଇଥାଏ । ତେବେ ନାଗମ୍ ଅପୁତ୍ରିକ ଥିଲେ ଗ୍ରାମବାସୀଙ୍କ ସହମତିରେ ଅନ୍ୟ ଜଣେ ନୂତନ ନାଗମ୍‌ଙ୍କୁ ନିର୍ବାଚିତ କରାଯାଏ କିମ୍ବା ନାମଗଙ୍କ ମୃତ୍ୟୁ ହୋଇଗଲେ ତାଙ୍କ ବିଧବା ପତ୍ନୀଙ୍କୁ ନାଗମ୍ ଭାବେ ନିର୍ବାଚିତ କରାଯାଇଥାଏ । ଗୋଟିଏ ଗାଁ ପାଇଁ ଜଣେ ନାଗମ୍ ଥା'ନ୍ତି । ମାତ୍ର ବେଳେବେଳେ ଜଣେ ନାଗମ୍‌ଙ୍କୁ ଦୁଇରୁ ଉର୍ଦ୍ଧ୍ୱ ଗ୍ରାମର ପୂଜା, ପର୍ବପର୍ବାଣି ଓ ଅନ୍ୟାନ୍ୟ ଧାର୍ମିକ କାର୍ଯ୍ୟକ୍ରମ କଥା ବୁଝିବାକୁ ପଡିଥାଏ ।

**ଡାଙ୍ଗୁଆ**

*(the assistant to village head man)*

'ବୁଇତା' ଓ 'ପଧାନ'ଙ୍କୁ ଛାଡିଲେ ଗ୍ରାମ ସଂଗଠନରେ **'ଡାଙ୍ଗୁଆ'** ହେଉଛନ୍ତି ଜଣେ ପ୍ରମୁଖ ଅଂଶ । 'ଡ଼ାଙ୍ଗୁଆ' ଗାଁ ମୁଖିଆ 'ପଧାନ', 'ବୁଇତା' ଓ ଗ୍ରାମବାସୀଙ୍କ ମଧ୍ୟରେ ଏକ ଉତ୍ତମ ସମନ୍ୱୟ ରକ୍ଷା କରିବାରେ ସହାୟକ ହୋଇଥାନ୍ତି । ଡ଼ାଙ୍ଗୁଆମାନେ ବିଶେଷକରି ଗାଁ ମୁଖିଆ 'ପଧାନ'ଙ୍କର ସହଯୋଗୀ ବା ଦୂତ (ବୋଲକରା) ଭାବେ କାର୍ଯ୍ୟ କରିଥାନ୍ତି । ଗାଁ ମୁଖିଆଙ୍କ ନିର୍ଦ୍ଦେଶ ଅନୁଯାୟୀ ଗାଁଗାଁ ବୁଲି ସଭାସ୍ଥଳରେ ଯୋଗ ଦେବା ପାଇଁ ସମସ୍ତ ଲୋକଙ୍କ ନିକଟରେ ଖବର ପହଞ୍ଚାନ୍ତି । 'ଡ଼ାଙ୍ଗୁଆ' ନିକଟରୁ ସୂଚନା ପାଇ ଗାଁ ଲୋକେ ସଭାସ୍ଥଳରେ ପହଞ୍ଚନ୍ତି । ଦେଶ ସ୍ୱାଧୀନ ହେବା ପୂର୍ବରୁ 'ଡ଼ାଙ୍ଗୁଆ'ମାନେ ମୁଖ୍ୟତଃ ରାଜ ପ୍ରତିନିଧି ଭାବେ ଗାଁ ମୁଖିଆ, ଗ୍ରାମବାସୀ ଏବଂ ରାଜକର୍ମଚାରୀ ଯଥା- ପୋଲିସ, ଜଙ୍ଗଲ ଅଧିକାରୀ, ରାଜସ୍ୱ ଅଧିକାରୀଙ୍କ ମଧ୍ୟରେ ଏକ ଯୋଗସୂତ୍ର ରକ୍ଷା କରୁଥିଲେ । ଗାଁର ବିଭିନ୍ନ ପର୍ବପର୍ବାଣି, ଯାନିଯାତରା, ବିବାହ, ମୃତ୍ୟୁ ଉତ୍ସବ ଅବସରରେ ଗାଁ ମୁଖିଆ 'ପଧାନ' ଗାଁରେ ସଭା ଡକାନ୍ତି । ଡାଙ୍ଗୁଆ ଗାଁ ମୁଖିଆ ପଧାନଙ୍କଠାରୁ ନିର୍ଦ୍ଦେଶ ପାଇ ଗାଁ ଲୋକଙ୍କୁ ମଜାଙ୍ଗକୁ ଡାକି ଆଣନ୍ତି । ଡାଙ୍ଗୁଆମାନଙ୍କୁ ଏହି ସେବା ପାଇଁ ଗାଁଲୋକେ ଧାନ, ବିରି, କାଙ୍ଗୁ, ଗଙ୍ଗେଇ, ଟଙ୍କାପଇସା ଦେଇଥାନ୍ତି । ଗାଁ ଲୋକଙ୍କଠାରୁ ଏହି ସାହାଯ୍ୟ ସହଯୋଗ ପାଇ ଡ଼ାଙ୍ଗୁଆମାନେ ସେମାନଙ୍କ ଜୀବିକା ନିର୍ବାହ କରନ୍ତି । ଜୁଆଙ୍ଗ ଗାଁରେ ଥିବା ଦୁଇ ଜଣ ମୁଖିଆ 'ନାଗମ୍' ଏବଂ 'ପଧାନ'ଙ୍କ ନିର୍ଦ୍ଦେଶକୁ ଡାଙ୍ଗୁଆ ଗାଁ ଲୋକଙ୍କ ନିକଟରେ ପହଞ୍ଚାନ୍ତି ।ରାଜସ୍ୱ ଆଦାୟ ହେଉକି ଆଇନଶୃଙ୍ଖଳା ପାଇଁ ପୋଲିସ କିମ୍ବା ଜଙ୍ଗଲ ସମ୍ବନ୍ଧୀୟ ବ୍ୟାପାରରେ ଡାଙ୍ଗୁଆ ସରକାରୀ

ପଦାଧିକାରୀଙ୍କ ସହ ଯୋଗସୂତ୍ର ରକ୍ଷା କରନ୍ତି । ଯଦି ଜଙ୍ଗଲ ବିଭାଗ ଅଧିକାରୀ ଗାଁକୁ ଆସନ୍ତି, ଡାଙ୍ଗୁଆନେ ସେମାନଙ୍କ ରହିବା, ଖାଇବା, ପିଇବା ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଦାୟିତ୍ୱ ନିର୍ବାହ କରିଥାନ୍ତି । କ୍ଷୀର, କାଠ, ଚାଉଳ, ଡାଲି, ଘିଅ, କୁକୁଡ଼ା, ପନିପରିବା ଆଦି ଗାଁରୁ ଆଦାୟ କରାଯାଏ ଏବଂ ରୋଷେଇର ବ୍ୟବସ୍ଥା କରାଯାଏ । 'ଡାଙ୍ଗୁଆ' ଏହି ସମସ୍ତ କାର୍ଯ୍ୟର ତଦାରଖ କରନ୍ତି । ତେବେ ଆଜିର ଗଣତନ୍ତ୍ର ବ୍ୟବସ୍ଥାରେ ଜୁଆଙ୍ଗ ଗାଁରେ 'ଡାଙ୍ଗୁଆ'ଙ୍କ ଭୂମିକା ସେମିତି ଅନୁଭବ କରିହୁଏ ନାହିଁ । କେବଳ ଯାହା ପର୍ବପର୍ବାଣି, ରୀତିନୀତି ଓ ଧାର୍ମିକ କାର୍ଯ୍ୟରେ ଡାଙ୍ଗୁଆଙ୍କୁ ଖୋଜା ପଡିଥାଏ ।

## କାର୍ଜି

*(the assistant to the village priest)*

ଡ଼ାଙ୍ଗୁଆ ବ୍ୟତୀତ ଗ୍ରାମ ସଂଗଠନରେ ଆଉ ଜଣେ ପ୍ରମୁଖ ବ୍ୟକ୍ତିଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେ ହେଉଛନ୍ତି କାର୍ଜି । ବିଭିନ୍ନ ପର୍ବପର୍ବାଣି ସମୟରେ ପୂଜା କାର୍ଯ୍ୟରେ ଓ ପଶୁପକ୍ଷୀଙ୍କୁ ବଳି ଚଢାଇବା ସମୟରେ 'କାର୍ଜି' ନାଗମ୍‌ଙ୍କୁ ସହାୟତା କରିଥାନ୍ତି । 'ଡାଙ୍ଗୁଆ' ଗାଁ ମୁଖିଆ 'ପଧାନ'ଙ୍କ ପ୍ରମୁଖ ସହଯୋଗୀ ହୋଇଥିବାବେଳେ 'କାର୍ଜି' ଗାଁ ପୂଜକ 'ନାଗମ୍'ଙ୍କ ସହଯୋଗୀ ଭାବେ କାର୍ଯ୍ୟ କରିଥା'ନ୍ତି । ତେବେ ସବୁ ଜୁଆଙ୍ଗ ଗାଁରେ ଏହି 'କାର୍ଜି'ମାନେ ନଥା'ନ୍ତି ।

## ପାଙ୍ଗିଆ

*(astrologer)*

ଜୁଆଙ୍ଗ ଗାଁର ପ୍ରାଶାସନିକ ବ୍ୟବସ୍ଥାରେ ପାଙ୍ଗିଆ (ଜ୍ୟୋତିଷ)ଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ପାଙ୍ଗିଆ ଗଣନା କରି ଆଗତ ଭବିଷ୍ୟତ କଥା କହିଥା'ନ୍ତି । ବିବାହ ସମୟରେ ପୁତ୍ର-କନ୍ୟାର ଭବିଷ୍ୟ ଗଣନା କରି ସେମାନଙ୍କ ମଧ୍ୟରେ ବିବାହ ହୋଇପାରିବ କି ନାହିଁ କହିଥା'ନ୍ତି । ଏହା ସହିତ ଗାଁ ପ୍ରତି ବିପଦ ଆପଦ ଦେଖାଦେବା ପୂର୍ବରୁ ପାଙ୍ଗିଆ ଭବିଷ୍ୟବାଣି କରିଥା'ନ୍ତି । ପାଙ୍ଗିଆଙ୍କ ଭବିଷ୍ୟବାଣୀକୁ ଅବମାନନା କଲେ ଏହା ବହୁତ ଭୟଙ୍କର ସିଦ୍ଧ ହୋଇଥାଏ । ଏଣୁ ପାଙ୍ଗିଆଙ୍କ ଭବିଷ୍ୟବାଣୀକୁ ବିଶେଷ ଗୁରୁତ୍ୱ ଦିଆଯାଇଥାଏ । କେବଳ ପୁରୁଷମାନେ 'ପାଙ୍ଗିଆ' କାର୍ଯ୍ୟ କରିବେ ସେମିତି ଧରାବନ୍ଧା ନିୟମ ନଥାଏ । ମହିଳାମାନେ ମଧ୍ୟ ପାଙ୍ଗିଆ କାମ କରିଥା'ନ୍ତି ।

## ରାଉଳିଆ

*(diviner/witch doctor)*

ରାଉଳିଆ କହିଲେ 'ଗୁଣିଆ'କୁ ବୁଝାଯାଇଥାଏ । କେବଳ ଜୁଆଙ୍ଗ କାହିଁକି ପ୍ରତ୍ୟକ ଆଦିବାସୀ ସମାଜରେ ଭୂତ, ପ୍ରେତ, ଡାଆଣୀ, ଚିରୁଗୁଣୀ ଉପରେ ବହୁତ ବିଶ୍ୱାସ ଥାଏ । ସେମାନଙ୍କ ମଧ୍ୟରେ ତନ୍ତ୍ର, ମନ୍ତ୍ରର ବିଶେଷ ପ୍ରଭାବ ରହିଥାଏ । ରାଉଳିଆ ଭୂତ, ପ୍ରେତ, ଡାଆଣୀ, ପିଶାଚୁଣୀଙ୍କୁ ମନ୍ତ୍ର

ବଳରେ ଗ୍ରାମରୁ ଦୂର କରନ୍ତି । ଜୁଆଙ୍ଗ ମହିଳାଟି ଅତ୍ୟନ୍ତ ଗର୍ଭକଷ୍ଟ ଭୋଗୁଥିବାବେଳେ କିମ୍ବା କିଛି ଅଶୁଭ ସୂଚନା ମିଳିଲେ ସେତେବେଳେ ରାଉଳିଆକୁ ଡକାଯାଇଥାଏ । ଜୁଆଙ୍ଗମାନଙ୍କର ପିଢପୂଜାବେଳେ ରାଉଳିଆ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲେଇଥା'ନ୍ତି ।ଜୁଆଙ୍ଗମାନଙ୍କର ସମସ୍ତ ପର୍ବପର୍ବାଣି 'ନାଗମ୍'ଙ୍କ ତତ୍ତ୍ୱାବଧାନରେ ହେଉଥିବାବେଳେ 'ପିଢପୂଜା' କାମ 'ରାଉଳିଆ' କରିଥା'ନ୍ତି ।

## ଅଧିକାରୀ

*(the assistant to village head man)*

ଗାଁର ପ୍ରାଶାସନିକ ବ୍ୟବସ୍ଥାରେ ଅଧିକାରୀଙ୍କ ସେମିତି କିଛି ବିଶେଷ ଭୂମିକା ନଥାଏ । ଏମାନେ ଡାଙ୍ଗୁଆଙ୍କ ଭଳି ଗାଁ ମୁଖିଆଙ୍କ ସହଯୋଗୀ ଭାବେ କାର୍ଯ୍ୟ କରିଥା'ନ୍ତି । ଗାଁରେ ବସୁଥିବା ବୈଠକ ଓ ନ୍ୟାୟିକ ବ୍ୟବସ୍ଥାରେ ଅଧିକାରୀଙ୍କ ମତାମତକୁ ପ୍ରାଧାନ୍ୟ ଦିଆଯାଇଥାଏ । ସବୁ ଜୁଆଙ୍ଗ ଗାଁରେ ଅଧିକାରୀ ନଥା'ନ୍ତି ।

## ବାରଭାଇ

*(the eminent elders)*

ଗାଁର ପ୍ରାଶାସନିକ ଓ ଧାର୍ମିକ ବ୍ୟବସ୍ଥାରେ ଏହି ବାରଭାଇଙ୍କ ଭୂମିକା ବେଶ୍ ମହତ୍ୱପୂର୍ଣ୍ଣ । ପଧାନ, ନାଗମ୍‌ଙ୍କ ବ୍ୟତୀତ ଗ୍ରାମର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିରେ 'ବାରଭାଇ' ସକ୍ରିୟ ଅଂଶଗ୍ରହଣ କରିଥାନ୍ତି । ପଧାନ, ନାଗମ୍‌ଙ୍କୁ ଛାଡିଦେଲେ ଗ୍ରାମର କିଛି ବୟସ୍କ ବୃଦ୍ଧଶ୍ରେଣୀୟ ପ୍ରତିନିଧିଙ୍କୁ ନେଇ ଏହି 'ବାରଭାଇ' ଗଠନ କରାଯାଇଥାଏ । ଏମାନେ ବିଭିନ୍ନ ସାଂସ୍କୃତିକ, ଧାର୍ମିକ ଓ ସମାଜିକ କାର୍ଯ୍ୟକ୍ରମ ସମୟରେ ନାଗମ୍ ଓ ପଧାନଙ୍କୁ ସହାୟତା କରିଥା'ନ୍ତି । ଗାଁର ନ୍ୟାୟିକ ବ୍ୟବସ୍ଥାରେ 'ବାରଭାଇ'ଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ ।

## ପିଢ ସର୍ଦ୍ଦାର

*(head of the maximal juang territorial organization)*

ତତ୍କାଳୀନ ରାଜନୈତିକ ବ୍ୟବସ୍ଥାରେ କିଛି ଜୁଆଙ୍ଗ ବସବାସ କରୁଥିବା ଗ୍ରାମ ବା ଅଞ୍ଚଳକୁ ନେଇ ଗୋଟିଏ ଗୋଟିଏ ପିଢ ଗଠିତ ହୋଇଥିଲା । ପ୍ରତି **ଜୁଆଙ୍ଗ ପିଢ**ରେ ଅତି କମ୍‌ରେ ୬-୧୫ଟି ଗାଁ ଅନ୍ତର୍ଭୁକ୍ତ ହୋଇଥାଏ । ଏହି ପିଢ ବ୍ୟବସ୍ଥା ତତ୍କାଳୀନ ରାଜାଙ୍କ ଦ୍ୱାରା ସ୍ୱୀକୃତିଲାଭ କରିଥିଲା । ଏହିଭଳି ଭାବେ କେନ୍ଦୁଝର ଜୁଆଙ୍ଗ ଅଞ୍ଚଳକୁ ୬ ଗୋଟି **ଜୁଆଙ୍ଗ ପିଢ**ରେ ଭାଗ କରାଯାଇଥିଲା । ପ୍ରତି ପିଢରେ ଜଣେଜଣେ **ପିଢ ସର୍ଦ୍ଦାର** ମୁଖିଆ ହୋଇ ରହିଥିଲେ । ତତ୍କାଳୀନ କେନ୍ଦୁଝର ରାଜା ଏହି ୬ଟି ପିଢରେ ୬ ଜଣ ପିଢ ସର୍ଦ୍ଦାରଙ୍କୁ ନିଯୁକ୍ତ କରିଥିଲେ । ପିଢ ସର୍ଦ୍ଦାରମାନେ ଜୁଆଙ୍ଗ ଗ୍ରାମମାନଙ୍କରୁ ରାଜସ୍ୱ ଆଦାୟ କରି ରାଜାଙ୍କୁ ପ୍ରଦାନ କରୁଥିଲେ । ରାଜସ୍ୱ କହିଲେ ପନିପରିବା, ଶସ୍ୟ ଓ ଜଙ୍ଗଲଜାତ ଫଳମୂଳ ଆଦିକୁ ବୁଝାଯାଉଥିଲା । ଗୋଟିଏ ଗାଁ ଭିତରର ବିବାଦ ଗାଁ ମୁଖିଆ 'ପଧାନ'

ବୁଝୁଥିବାବେଳେ ଗ୍ରାମ ଗ୍ରାମ ମଧ୍ୟରେ ଥିବା ବିବାଦ ପିଢ ସର୍ଦ୍ଦାରଙ୍କ ନିକଟକୁ ଯାଉଥିଲା । ପିଢ ସର୍ଦ୍ଦାର ବିଭିନ୍ନ ଗ୍ରାମର ମୁଖିଆ 'ପଧାନ', 'ନାଗମ୍', ଡାଙ୍ଗୁଆ, ବାଦି, ପ୍ରତିବାଦିମାନଙ୍କ ଉପସ୍ଥିତିରେ ନିଜର ରାୟ ଶୁଣାଉଥିଲେ । ତେବେ ଆଜିର ପଞ୍ଚାୟତିରାଜ ବ୍ୟବସ୍ଥାରେ ପିଢ ସର୍ଦ୍ଦାରଙ୍କ ଭୂମିକା ସଂପୂର୍ଣ୍ଣ ମାତ୍ରାରେ ନ ହେଲେ ଅନେକାଂଶରେ ହ୍ରାସ ପାଇଯାଇଛି । ଆଜି 'ପଧାନ'ଙ୍କ ସ୍ଥାନ ଗାଁ ୱାର୍ଡ ମେମ୍ବର ନେଇଥିବାବେଳେ 'ପିଢ ସର୍ଦ୍ଦାର'ଙ୍କ ସ୍ଥାନ ନିର୍ବାଚିତ 'ସରପଞ୍ଚ' ନେଇଛନ୍ତି ।ତଥାପି ଅନେକ ଜୁଆଙ୍ଗ ଗାଁମାନଙ୍କରେ ଆଜି ବି ପିଢ ସର୍ଦ୍ଦାରଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି । ତଥାପି ଆଜିର ଦିନରେ ପିଢ ସର୍ଦ୍ଦାରମାନେ ସେମାନଙ୍କ ରାୟ ଶୁଣାଇବା ସହିତ ଅନେକ ବିବାଦର ସମାଧାନ କରିବାରେ ସଫଳ ହୋଇପାରୁଛନ୍ତି । ତେବେ ଆଜିର ଦିନରେ ଅଧିକାଂଶ ମାମଲା ଥାନା, କୋର୍ଟ କଚେରୀକୁ ଚାଲି ଯାଉଥିବାରୁ ପିଢ ସର୍ଦ୍ଦାରଙ୍କ ହୁକୁମ୍ ଆଉ କାମ କରୁନି ।

## ଜୁଆଙ୍ଗଙ୍କ ସ୍ୱାସ୍ଥ୍ୟ ଓ ରୋଗ ଚିକିତ୍ସା

*(health and diseases of the Juang)*

ରୋଗ ବଇରାଗ ହେଲେ ଜୁଆଙ୍ଗମାନେ ଡାକ୍ତରଖାନାକୁ ଯିବା କିମ୍ବା ଡାକ୍ତରଙ୍କୁ ଦେଖାଇବା ପରିବର୍ତ୍ତେ ଜଙ୍ଗଲରୁ ମିଳୁଥିବା ଚେରମୂଳି କିମ୍ବା ଝଡ଼ାଫୁଙ୍କା ଉପରେ ବେଶି ନିର୍ଭର କରିଥା'ନ୍ତି । ଆଧୁନିମଧ୍ୟ



ଜୁଆଙ୍ଗମାନେ ଏକ ଶିଶୁକୁ କାନ୍ଧରେ ବୋହି ଡାକ୍ତରଖାନାକୁ ନେଉଛନ୍ତି ।



ହେହସାରା ଘାଆ ଭର୍ତ୍ତି ପିଲାମାନେ ଖେଳୁଛନ୍ତି

ଦେବଦେବୀ କୋପ କଲେ କିମ୍ବା ପୂର୍ବପୁରୁଷଙ୍କ ଆତ୍ମା ଅସନ୍ତୁଷ୍ଟ ହେଲେ ରୋଗବଇରାଗ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏଣୁ ଦେବଦେବୀ ଓ ପୂର୍ବପୁରୁଷଙ୍କ ଆତ୍ମାକୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ସେମାନଙ୍କୁ ଧୂପଦୀପ, ପଣା, ଭୋଗ ଓ ପଶୁପକ୍ଷୀ ବଳି ଦେଇ ସନ୍ତୁଷ୍ଟ କରିଥା'ନ୍ତି । ସଂପ୍ରତି ଜୁଆଙ୍ଗମାନେ ସ୍ୱାସ୍ଥ୍ୟ ସଚେତନ ହେଲେଣି । 'ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ୍' ଭଳି କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ବିଭିନ୍ନ ସ୍ୱାସ୍ଥ୍ୟ ଯୋଜନାରେ ଜୁଆଙ୍ଗମାନେ ସାମିଲ୍ ହୋଇ ଡାକ୍ତରଖାନାକୁ ଆସିବାକୁ ଆଗ୍ରହ ପ୍ରକାଶ କଲେଣି ।

ଜୁଆଙ୍ଗମାନେ ବିଭିନ୍ନ ରୋଗବଇରାଗକୁ ପାରଂପରିକ ପଦ୍ଧତିରେ ଚିକିତ୍ସା କରିଥା'ନ୍ତି । ଶରୀରର ଯେକୌଣସି ଅଂଶରେ ଯନ୍ତ୍ରଣା ହେଲେ ଗୁଣିଆ ମନ୍ତ୍ର ଫୁଙ୍କି 'ଝିପ୍ରି' ପତ୍ରର ସିଝା ପାଣିର ଶେକ ଦେଲେ ଭଲ ହୋଇଯାଏ । ଗୋଡ ଗୋଦର ହୋଇଥିଲେ 'ଅମରୀ' ଗଛର କ୍ଷୀର ଲଗେଇ ଦେଲେ ଭଲ ହୋଇଯାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେହିଭଳି ଗୋଦର ରୋଗ ହୋଇଥିଲେ

'ମିନିମାନି' ଗଛର ଛାଲିକୁ ବାଟି ଗାଇ ଦୁଧ ସହିତ ମିଶାଇ ଗୋଦର ଗୋଡରେ ଲଗେଇଲେ ଭଲ ହୋଇଯାଇଥାଏ । ଅଣ୍ଟା ଯନ୍ତ୍ରଣା ହେଉଥିଲେ ଏଥିରୁ ମୁକ୍ତି ପାଇଁ ଜୁଆଙ୍ଗମାନେ 'ଝିପ୍ରି' ଡାଳର ସିଝା ପାଣି ପିଅନ୍ତି । ମ୍ୟାଲେରିଆ ରୋଗଜନିତ ଜ୍ୱର ହେଲେ ଜୁଆଙ୍ଗମାନେ ସଂପୃକ୍ତ ରୋଗୀଙ୍କୁ ଗୋଠିଖଡିକା (ଗଙ୍ଗଶିଉଳି) ପତ୍ର ସହିତ ଗୋଲମରିଚ ବାଟି ସେଥିରେ କିଛି ମହୁ ମିଶାଇ ପିଆଇଥା'ନ୍ତି । ଏହାବ୍ୟତୀତ ଗଣ୍ଡିସର ପତ୍ରକୁ ସିଝାଇ ତାର ପାଣିକୁ ମଧ୍ୟ ଜୁଆଙ୍ଗମାନେ ପିଇଥାନ୍ତି । ଏହାଦ୍ୱାରା ମ୍ୟାଲେରିଆ ଜ୍ୱର ଭଲ ହୋଇଯାଇଥାଏ । ପାଦ ଫାଟୁଥିଲେ ଜୁଆଙ୍ଗମାନେ 'ଚିତାକୁଣିଆ'ର ବଳ୍କଳକୁ ଗୋଡରେ ଗୁଡେଇ ପିନ୍ଧନ୍ତି । ଶୀତଳିଆ ରୋଗ ହେଲେ ଜୁଆଙ୍ଗମାନେ ଭାଲିଆ (କାଜୁମଞ୍ଜି) ଚେଙ୍କ ଦେଇଥାନ୍ତି । ଆଖିଫୁଲା ରୋଗ ହେଲେ ଜୁଆଙ୍ଗମାନେ ତୁଳସୀପତ୍ର ଓ ହଳଦିକୁ ଏକତ୍ର ବାଟି ଏହାର ରସକୁ ଲେପନ କରିଥାନ୍ତି । ଆଖିରେ ତୁଳସୀ ରସ ମଧ୍ୟ ପକେଇଥା'ନ୍ତି । ସେହିଭଳି 'ଆଖିଧରା' ରୋଗ ହୋଇଥିଲେ ନିପାଣିଆ ଗଛର କ୍ଷୀରକୁ ଆଖିରେ ପକେଇଲେ 'ଆଖିଧରା' ଭଲ ହୋଇଯାଇଥାଏ । ନାକରୁ ରକ୍ତ ପଡିଲେ ଜୁଆଙ୍ଗମାନେ ସଦ୍ୟ ଗୋବରର ଗନ୍ଧକୁ ଆଘ୍ରାଣ କରନ୍ତି । ଓଠ ଫାଟିଲେ



▶ ଜଣେ ଅନ୍ତୁଣୀ ଜୁଆଙ୍ଗ ମା' କୋଳରେ ତା' ରୋଗିଣା ଶିଶୁ



ଜୁଆଙ୍ଗଟି ନିଜ ପାଦରେ ହୋଇଥିବା ଘା'ରେ ଶୁଖିଲା 'ଖେଲା' ଫଳ, ଶୁଖିଲା ଜୁଳୁଚି ଏବଂ ଶୁଖିଲା କୁସୁମ ଛାଲିକୁ ଗୁଣ୍ଡ କରି ଲଗାଉଛି ।

ପାତାଳଗରୁଡ ଚେରକୁ ବାଟି ତାହାର ରସକୁ ଓଠରେ ପ୍ରଲେପ ଦିଅନ୍ତି । କଣନଖା ହେଲେ କୁସୁମ ମଞ୍ଜିକୁ ପାଣିରେ ମିଶେଇ ଶିଳରେ ବାଟି ତାହାର ରସକୁ ନଖରେ ଲେପ ଦିଅନ୍ତି । ନବ ଜନ୍ମିତ ଶିଶୁମାନଙ୍କର ନାଭି ପଚିଗଲେ ସେଥିରେ ପୋଡାକନା ପାଉଁଶର ପ୍ରଲେପ ଦେଇଥାନ୍ତି । ପେଟକାଟିଲେ କିମ୍ବା ଟାଣିଲେ ଡୁଆଙ୍ଗମାନେ 'କୁଚୁଲା' ଫଳର ରସ ପିଇଥା'ନ୍ତି । ହାତଗୋଡ ଭାଙ୍ଗିଲେ ଡୁଆଙ୍ଗମାନେ ଗରମ ଜଡ଼ାତେଲ କିମ୍ବା ସୋରିଷ ତେଲ ମାଲିସ କରନ୍ତି । ମୁଣ୍ଡରେ ରୂପି ଦୂର କରିବା ପାଇଁ ଡୁଆଙ୍ଗମାନେ ନିମ ତେଲ ଏବଂ ସୋରିଷ ତେଲ ଲଗାନ୍ତି । ଦାନ୍ତରେ ପୂଜ ହେଲେ ବା ବିନ୍ଧାବିନ୍ଧି କଲେ 'କାଠିଆସିନ୍ଧୁ' ଡାଳର ରସକୁ ଦାନ୍ତମୂଳରେ ଲେପନ ଦିଅନ୍ତି । ଉକୁଣି ଦୂର କରିବା ପାଇଁ ଡୁଆଙ୍ଗମାନେ 'ଅରକନା' ବକ୍କଳକୁ ଶୁଖେଇ ଗୁଣ୍ଡ କରି ସେହି ଗୁଣ୍ଡକୁ ମୁଣ୍ଡରେ ବୋଳିଥା'ନ୍ତି । ମୁଣ୍ଡବିନ୍ଧିଲେ 'ଅକାଣ୍ଡବିନ୍ଦୁ' କିମ୍ବା 'ଅଗ୍ନିଜଳ'ର ମୂଳକୁ ଶିଳରେ ବାଟି ଏହାର ରସକୁ ମୁଣ୍ଡରେ ଲେପିଲେ ଭଲ ହୋଇଯାଏ ବୋଲି ବିଶ୍ୱାସ ରହିଛି । ପେଟ ବିନ୍ଧିଲେ 'କୁଳିକା' ଚେରର ଗୁଣ୍ଡ ଖାଆନ୍ତି । ତରଳ ଝାଡା ହେଲେ 'ଅକାଣ୍ଡବିନ୍ଦୁ'ର ରସ ପିଅନ୍ତି । ବଦହଜମି ହେଲେ ଶୁଣ୍ଠି ଗୁଣ୍ଡ ଖାଆନ୍ତି । ଥଣ୍ଡା, ଛିଙ୍କ,



ଡୁଆଙ୍ଗ ଶିଶୁଟିକୁ ଥଣ୍ଡା, ସର୍ଦ୍ଦିରୁ ରୋକିବା ଉଦ୍ଦେଶ୍ୟରେ ତା' ମୁଣ୍ଡରେ ଶୁଆମ୍ବ ଗଛର ଛାଲି ସହିତ ଶୋରିଷ ଓ ରସୁଣକୁ ବାଟି ଲଦା ଯାଇଛି ।



ଜଣେ ଜୁଆଙ୍ଗ ମହିଳାର କୋଳରେ ତା' ରୋଗିଣା ଶିଶୁ

କାଶ ହେଲେ ତୁଳସୀପତ୍ର ସହ ମହୁ ଖାଆନ୍ତି । କୁଚୁଲା ଫଳକୁ ବେକରେ ମାଳି କରି ଗୁଡାଇଲେ ଛୋଟ ଶିଶୁମାନେ ମାଟି ଖାଇବା ଛାଡି ଦେଇଥା'ନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଛୋଟ ଶିଶୁମାନଙ୍କର ଥଣ୍ଡା, ସର୍ଦ୍ଦି କାଟିବା ପାଇଁ ଶୁଆମ୍ବ ଗଛର ଛାଲି ସହିତ ରସୁଣ, ସୋରିଷକୁ ବାଟି ମୁଣ୍ଡରେ ଲଦାଯାଇଥାଏ । ଫାଳିକିଆ ମୁଣ୍ଡ ବିନ୍ଧିଲେ ଜୁଆଙ୍ଗମାନେ 'ଶାରକା' ଗଛର ରସକୁ ମୁଣ୍ଡରେ ଲଗାଇଥା'ନ୍ତି । ଆଣ୍ଠୁଗଣ୍ଠି ବାତକୁ 'ପୁଟୁକୁଳି' ଗଛର ଚେର ଅବ୍ୟର୍ଥ ଔଷଧ ଭାବେ କାମ ଦେଇଥାଏ । ଏହି 'ପୁଟୁକୁଳି' ଗଛର ଚେରକୁ ବାଟି ତାହାର ରସକୁ ଆଣ୍ଠୁଗଣ୍ଠିରେ ଲେପନ କରାଯାଇଥାଏ । ଗୋଡରେ ଘା' ହୋଇଥିଲେ କିମ୍ବା ପାଣିଖିଆ ହୋଇଥିଲେ ଜୁଆଙ୍ଗମାନେ ଶୁଖିଲା ଖେଲା ଫଳକୁ ଗୁଣ୍ଡ କରି ସେଥିରେ ଶୁଖିଲା କୁଳୁଚି ଚେର ଗୁଣ୍ଡ ଏବଂ କିଛି କୁସୁମ ଛାଲି ଗୁଣ୍ଡକୁ ମିଶେଇ ଘା'ରେ ଲଗାଯାଏ । ଜଙ୍ଗଲକୁ କାଠ କାଟି ଯାଇଥିବାବେଳେ ଟାଙ୍ଗିଆ ପଡି ଯଦି କେହି ଜୁଆଙ୍ଗର ଗୋଡ କଟିଯାଏ ତେବେ ତତ୍କ୍ଷଣାତ୍ କୁଂଭି ଗଛର ଛାଲକୁ କ୍ଷତ ସ୍ଥାନରେ ଗୁଡେଇ ଦିଆଯାଏ । ଗୋଡ

କଟିଯାଇଥିଲେ କିମ୍ବା ପଚି ଘା' ହୋଇଯାଇଥିଲେ 'ଖଣ୍ଡାଖାଇ' ଗଛର ଛାଲିକୁ ବାଟି ଏହାର ରସକୁ ଲେପନ କରାଯାଇଥାଏ । ଆହୁରି ମଧ୍ୟ 'କୁରୁକୁଟି' ବା 'କାଇ' ହେଉଛି ଜୁଆଙ୍ଗମାନଙ୍କର ଅନ୍ୟ ଏକ ଅବ୍ୟର୍ଥ ଔଷଧ । ଜ୍ୱର, କାଶ, ଥଣ୍ଡା, ଛିଙ୍କ, ସର୍ଦ୍ଦି ହେଉଥିଲେ ଏହି 'କୁରୁକୁଟି' (କାଇ ଓ କାଇ ଅଣ୍ଡା)କୁ ବାଟି ତାହାର ରସକୁ ମହୁ ସହିତ ମିଶେଇ ପିଇଲେ ଭଲ କାମ ଦେଇଥାଏ । ଜୁଆଙ୍ଗମାନଙ୍କୁ ହଇଜା ଲାଗିଲେ 'ଠାକୁରାଣି' କୋପ କରିଛନ୍ତି ବୋଲି ଜୁଆଙ୍ଗମାନେ ଧରି ନେଇଥା'ନ୍ତି । ଏଣୁ 'ହଇଜା ଠାକୁରାଣି'ଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ନିଜନିଜର ଗ୍ରାମ ଦେବଦେବୀଙ୍କ ଉଦ୍ଦେଶ୍ୟରେ 'ପାଣି ଧରା' କରିଥା'ନ୍ତି । ଏହାର ଅର୍ଥ ହଇଜା ଭଲ ହେବା ପାଇଁ ଜୁଆଙ୍ଗମାନେ ଦେବଦେବୀଙ୍କ ଉଦ୍ଦେଶ୍ୟରେ କୁକୁଡା, ଛେଳି, ମେଣ୍ଢା, ଘୁଷୁରୀ, ମଦ ଆଦି ମାନସିକ ରଖିଥା'ନ୍ତି । ଅବଶ୍ୟ ଏବେ ଗାଁରେ ହଇଜା ଲାଗିଲେ ଜୁଆଙ୍ଗମାନେ ଠାକୁରାଣିଙ୍କୁ 'ପାଣି ଧରିବା' ସହିତ ଡାକ୍ତରଖାନାକୁ ଆସୁଥିବାର ଲକ୍ଷ୍ୟ କରାଗଲାଣି ।

## ଜୁଆଙ୍ଗ ଶିଶୁ ଜନ୍ମ ବିଧି ଓ ନାମକରଣ ଉତ୍ସବ

*(birth rite and name giving ceremony of Juang )*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ଉପରଚଂପେଇ**

**ଗ୍ରାମ ପଞ୍ଚାୟତ: ତଳଚଂପେଇ**

**ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।**

**ତଥ୍ୟ ପ୍ରଦାନକାରୀ: ଉପରଚଂପେଇ ଗ୍ରାମର ଯମୁନା ଜୁଆଙ୍ଗ, ଅଙ୍ଗଦ ଜୁଆଙ୍ଗ, ଜେମା ଜୁଆଙ୍ଗ, ରେବତୀ ଜୁଆଙ୍ଗ, କୁଶ ଜୁଆଙ୍ଗ, ଧନୁ ଜୁଆଙ୍ଗ, ଜଟିଆ ଜୁଆଙ୍ଗ**

ଶିଶୁ ଜନ୍ମ ଉତ୍ସବକୁ ଜୁଆଙ୍ଗମାନେ ବେଶ୍ ଧୁମ୍‌ଧାମ୍‌ରେ ପାଳନ କରିଥା'ନ୍ତି । ସନ୍ତାନ ଜନ୍ମ କରିବାରେ ଜୁଆଙ୍ଗମାନେ ବିଶେଷ ଆନନ୍ଦ ଅନୁଭବ କରନ୍ତି । ବିବାହର ଚାରି ପାଞ୍ଚବର୍ଷ ପର୍ଯ୍ୟନ୍ତ ଯଦି ଜୁଆଙ୍ଗ ମହିଳାଟିଏ ଶିଶୁ ଜନ୍ମ କରିବାରେ ଅକ୍ଷମ ହୁଏ, ତେବେ ସେହି ନାରୀକୁ ଜୁଆଙ୍ଗ ସମାଜରେ ଘୃଣା ଦୃଷ୍ଟିରେ ଦେଖାଯାଏ । ପର୍ବପର୍ବାଣିମାନଙ୍କରେ ଏଭଳି ବନ୍ଧ୍ୟା ନାରୀମାନଙ୍କୁ ଯଥାସମ୍ଭବ ଦୂରେଇ ରଖାଯାଏ । ଏଭଳି ସ୍ଥଳେ ସଂପୃକ୍ତ ଜୁଆଙ୍ଗ ପୁରୁଷଟି ଅନ୍ୟ ଜଣେ ଯୁବତୀକୁ ବିବାହ କରିବାକୁ ଅନୁମତିପ୍ରାପ୍ତ ହୋଇଥାଏ । ଗ୍ରାମର ମୁଖିଆ ଓ ବୟସ୍କ ବ୍ୟକ୍ତିଙ୍କ ଦ୍ୱାରା ଏହି ନିଷ୍ପତ୍ତି ନିଆଯାଏ ।



▶ **ମାତୃତ୍ୱ: ଜଣେ ଜୁଆଙ୍ଗ ମା' ତା'ର ଶିଶୁକୁ ସ୍ତନ୍ୟପାନ କରାଉଛି ।**

ତେବେ ବହୁତ ସଂଖ୍ୟାରେ ଛୁଆ ଜନ୍ମ କରିବା ଜୁଆଙ୍ଗ ସମାଜରେ ଏକ ସମ୍ମାନଜନକ କାର୍ଯ୍ୟ ବୋଲି ଗଣାଯାଏ ।

ଗର୍ଭ ଧାରଣ କରିବା ପରଠାରୁ ଜୁଆଙ୍ଗ ମହିଳାଙ୍କୁ ମାଛ, ମାଂସ ଭଳି ଆମିଷ ଦ୍ରବ୍ୟ ଖାଇବା ମନା ହୋଇଥାଏ । ବିଶେଷକରି ପର୍ବପର୍ବାଣି ସମୟରେ ଦେବଦେବୀଙ୍କ ନିକଟରେ ବଳି ଚଢାଯାଇଥିବା

ପଶୁ ମାଂସ ଖାଇବାକୁ ଗର୍ଭବତୀ ନାରୀମାନଙ୍କୁ ସଂପୂର୍ଣ୍ଣ ବାରଣ କରାଯାଇଥାଏ । ଜଣେ ଗର୍ଭବତୀ ଜୁଆଙ୍ଗ ରମଣୀଟିକୁ ମୃତ ଶବ ଦେଖିବା, ବିଜୁଳି, ଘଡ଼ଘଡ଼ି ଶବ୍ଦ ଶୁଣିବା ବାରଣ କରାଯାଇଥାଏ । ଗର୍ଭ ଧାରଣ କରିବାର ସାତ ମାସ ପର୍ଯ୍ୟନ୍ତ ଜୁଆଙ୍ଗ ମହିଳାଟି ନିଜର ସ୍ୱାମୀଙ୍କୁ ତଇଲାରେ ସବୁ ପ୍ରକାର କାର୍ଯ୍ୟରେ ସହାୟତା କରିଥାଏ । ଗର୍ଭଧାରଣ କରିଥିବାବେଳେ ଜୁଆଙ୍ଗ ସ୍ତ୍ରୀଲୋକଟିକୁ ନଦୀ ପାରହେବା ମନା ହୋଇଥାଏ । ଯଦି କୌଣସି ଏକ ଜରୁରୀ ପରିସ୍ଥିତିରେ ନଦୀ ପାର ହେବାକୁ ପଡିଥାଏ, ତେବେ ସେ ହାତରେ ଏକ ଛୋଟ ପଥର ଖଣ୍ଡ ଧରି ପାର ହୋଇଥାଏ । ନଦୀ ଆରପାରିରେ ପହଞ୍ଚିଗଲା ପରେ ସଂପୃକ୍ତ ଗର୍ଭବତୀ ମହିଳାଟି ପଥରଟିକୁ ନଦୀ କୂଳରେ ପୋତି ଦେଇ ନିଜର ଗନ୍ତବ୍ୟସ୍ଥଳକୁ ଯାଏ ଏବଂ ଫେରିଲାବେଳେ ପୁନର୍ବାର ସେହି ପଥରଟିକୁ ଧରି ନଦୀ ପାର ହୋଇଥାଏ । ଘରକୁ ଫେରିଲା ପୂର୍ବରୁ ସେହି ପଥରଟିକୁ ପୁନର୍ବାର ନଦୀକୂଳରେ ପୋତିଦିଏ । ଗର୍ଭବତୀ ଜୁଆଙ୍ଗ ସ୍ତ୍ରୀଲୋକଟିକୁ ଶସ୍ୟଅମଳ ସ୍ଥଳକୁ ଯିବାକୁ ବାରଣ କରାଯାଇଥାଏ । ଏହା କରିବା ଦ୍ୱାରା ପରବର୍ଷ ଶସ୍ୟ ଅମଳରେ ବାଧାପ୍ରାପ୍ତ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଗର୍ଭବତୀ ମହିଳାଟି ଖୁଣ୍ଟରେ ବନ୍ଧାଯାଇଥିବା ଗୋରୁ ପଘାକୁ କୌଣସି ପ୍ରକାରେ ଡେଇଁ ଯିବା ଉଚିତ୍


ମାତୃତ୍ୱ: ଜଣେ ଜୁଆଙ୍ଗ ମା' ତା'ର ଶିଶୁକୁ ସ୍ତନ୍ୟପାନ କରାଉଛି ।


ପିଲାଦିନ ଧୂଳି ଖେଳ

ନୁହେଁ । କାରଣ ଏମିତିକଲେ ଶିଶୁ ଜନ୍ମ ହେଲାବେଳେ ତା' ମୁହଁରେ ଏକ ଗାର ଚିହ୍ନ ରହିଯାଏ । ଗର୍ଭାବସ୍ଥାରେ ଜୁଆଙ୍ଗ ମହିଳାଟିଏ ଦେହରେ ତେଲ, ହଳଦି ଲଗାଇବା ମନା ହୋଇଥାଏ ଏବଂ ଦର୍ପଣରେ ମୁହଁ ଦେଖିବା ମଧ୍ୟ ବାରଣ କରାଯାଇଥାଏ । ସେହିଭଳି ଜଣେ ଗର୍ଭବତୀ ଜୁଆଙ୍ଗ ମହିଳାଙ୍କୁ ଗଛ ଚଢିବା, ପାହାଡ ଚଢିବା, ସମ୍ବର ମାଂସ ଖାଇବା, ବରୁଗୁଡି (ରୁମା) ଖାଇବା, କ୍ଷୀର ପିଇବା, ଛେନା ଖାଇବା ମଧ୍ୟ ବାରଣ ହୋଇଥାଏ ।

ଗର୍ଭାବସ୍ଥାରେ ଜୁଆଙ୍ଗ ମହିଳାଟି ପାଇଁ ଭୂତ, ପ୍ରେତ, ଡାହାଣୀର ଭୟ ଯଥେଷ୍ଟ ଥାଏ । କାରଣ ଏମାନେ ଗର୍ଭ ନଷ୍ଟ କରିଦେଇଥାନ୍ତି ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଯଦି ଗର୍ଭବତୀ ମହିଳାଟି ଶୋଇଲାବେଳେ ଅନ୍ୟ ଏକ ଗର୍ଭବତୀ ମହିଳାକୁ ସ୍ୱପ୍ନରେ ଦେଖିଥାଏ, ତେବେ ଅକାଳ ଗର୍ଭପାତ ହୋଇଯିବାର ଆଶଙ୍କା ସୃଷ୍ଟି ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଜୁଆଙ୍ଗମାନେ କେବେହେଲେ ଗର୍ଭନଷ୍ଟ କରିବାକୁ ଉଦ୍ୟମ କରନ୍ତି ନାହିଁ । ଅଧିକ ସଂଖ୍ୟାରେ ଶିଶୁ ଜନ୍ମ କରି ବଂଶ ବିସ୍ତାର କରିବା ଜୁଆଙ୍ଗମାନଙ୍କର ଲକ୍ଷ୍ୟ ହୋଇଥାଏ ।

ଗର୍ଭକଷ୍ଟ ହେବାକୁ ଅଳ୍ପ ସମୟ ବାକି ଥିଲାବେଳେ ଜୁଆଙ୍ଗ ମହିଳାଟିକୁ ସଂପୂର୍ଣ୍ଣ ବିଶ୍ରାମ ଦିଆଯାଇଥାଏ । ଅତୀତରେ ଧାଇମାନେ ଶିଶୁ ଜନ୍ମ କରାଉଥିଲେ । ମାତ୍ର, ଏବେଏବେ ଜୁଆଙ୍ଗମାନଙ୍କ ମଧ୍ୟରେ ସଚେତନତା ଦେଖାଦେଇଥିବାରୁ ସେମାନେ ଡାକ୍ତରଖାନାରେ ପ୍ରସବ କରାଉଥିବାର ଲକ୍ଷ୍ୟ କରାଯାଉଛି । ଯଦି ଜୁଆଙ୍ଗ ଗର୍ଭବତୀ ମହିଳାଟି ଶିଶୁ ଜନ୍ମ ଦେବାବେଳେ ଅତ୍ୟଧିକ ଗର୍ଭକଷ୍ଟ ଭୋଗେ, ତେବେ ତା' ଉପରେ କୌଣସି ସୈତାନ କିମ୍ବା ପିଶାଚୁଣିର ଆଖି ପଡିଥାଇପାରେ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । କୌଣସି କାରଣରୁ ପିତୃପୁରୁଷଙ୍କ ଆତ୍ମା ଯଦି ଅସନ୍ତୁଷ୍ଟ ଥା'ନ୍ତି, ତେବେ ଜୁଆଙ୍ଗ ମହିଳାଟି ଗର୍ଭକଷଣ ଭୋଗିଥାଏ । ଏମିତିକି ବେଳେବେଳେ ଏହି କାରଣରୁ ନବଜାତ ଶିଶୁଟିର ମୃତ୍ୟୁ ହୋଇଯାଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ତେବେ ଏହି ଦୁଷ୍ଟ ଆତ୍ମାକୁ ଘଉଡାଇବା ପାଇଁ ଗୁଣିଆ (ରାଉଳିଆ)ଙ୍କୁ ଡକାଯାଏ । ରାଉଳିଆ ମନ୍ତ୍ରପାଠ କରି ଚେରମୂଳି ଦେଇ ପରିସ୍ଥିତିକୁ ସ୍ୱାଭାବିକ କରିବାକୁ ଉଦ୍ୟମ କରିଥାଏ । ଏହା ସତ୍ତ୍ୱେ ଗର୍ଭାବସ୍ଥାରେ ଯଦି କିଛି ଅସ୍ୱାଭାବିକ ଲକ୍ଷଣ ଦେଖାଯାଏ ତେବେ ଗାଁର ବୁଇତା (ଦେହୁରୀ) ଦେବଦେବୀଙ୍କ ଉଦ୍ଦେଶ୍ୟରେ କୁକୁଡା, ଧୂଆଁପତ୍ର, ମହୁଲି ମଦ, ପଣା ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରନ୍ତି । ଯଦି ଗର୍ଭବତୀ ମହିଳାଟିକୁ ଡାଆଣୀ, ଚିରୁଗୁଣୀ, ପିଶାଚୁଣୀ ଗ୍ରାସ କରିଥାଏ ତେବେ ମହିଳା ରାଉଳିଆକୁ ଡକାଯାଏ । କିନ୍ତୁ ଯଦି ଭୂତ, ପ୍ରେତ ସବାର ହୋଇଥାଏ ସେତେବେଳେ ପୁରୁଷ ରାଉଳିଆ ଆସି ନିଜର କର୍ମକାଣ୍ଡ କରିଥାଏ । ଯଦି ଶିଶୁଟି ମା' ଗର୍ଭରୁ ବାହାରକୁ ବାହାରିବାରେ କଷ୍ଟ ଅନୁଭୂତ ହୁଏ ସେତେବେଳେ ରାଉଳିଆର ପରାମର୍ଶରେ ଗର୍ଭବତୀ ମହିଳାକୁ ପିତାଳୁର ଚେରକୁ ବାଟି ପିଆଇ ଦିଆଯାଏ । ଏହା ଫଳରେ ସହଜରେ ଶିଶୁଟି ମା' ଗର୍ଭରୁ ପଦାକୁ ବାହାରି ଆସିଥାଏ । ଆହୁରି ମଧ୍ୟ ଗର୍ଭବତୀଟି ଅତ୍ୟନ୍ତ ଗର୍ଭକଷ୍ଟ ଭୋଗୁଥିଲେ ରାଉଳିଆ ଏକ ଲମ୍ବା ବାଉଁଶ ଦଣ୍ଡରେ ଆଙ୍କୁଡି ଲଗାଇ ଛପର ଉପରୁ କିଛି ଟାଣି ଆଣିବା ଭଳି ସାତ ଥର କରିଥାଏ । ରାଉଳିଆ ବାଉଁଶ ଦଣ୍ଡ ସହାୟତାରେ ଛପରକୁ ଏଭଳି ଟାଣିବା ଦ୍ୱାରା ସମାନ୍ତରାଳ ଭାବେ ଗର୍ଭବତୀର ଗର୍ଭରୁ ଶିଶୁଟି ବାହାରକୁ ଟାଣି ହୋଇ ଆସିଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ଯଦି ସମୟ ପୂର୍ବରୁ ଗର୍ଭପାତ ହୋଇଯାଏ, ତେବେ ଏହାକୁ ଏକ ଅଶୁଭ ସୂଚନା ବୋଲି ମନେ କରାଯାଇଥାଏ । ଗର୍ଭପାତ ହେବାର ପ୍ରଥମ ଦିନ (ରାତ୍ରି ସମୟରେ) ଉଭୟ ଶିଶୁର ପିତା ଓ ମାତା ନିକଟସ୍ଥ ନଦୀକୁ ଯାଇ ସ୍ନାନ ସାରି କିଛି ପିତା (ନିମ ପତ୍ର) ଖାଇ ଘରକୁ ଫେରନ୍ତି ଏବଂ ସାତ ଦିନ ପର୍ଯ୍ୟନ୍ତ ଏକ ନିଭୃତ କୋଠରୀରେ ରହନ୍ତି । କାହାକୁ ଦେଖା ଦିଅନ୍ତି ନାହିଁ । ସପ୍ତମ ଦିନ ପୁନର୍ବାର ନିକଟସ୍ଥ ନଦୀ କିମ୍ବା ଝରଣାରେ ସ୍ନାନ ସାରି ତୁଳସୀପତ୍ର ଓ ସାମାନ୍ୟ ଗୋବରପାଣି ପାଟିରେ ନେଇ ପବିତ୍ର ହୁଅନ୍ତି ।

ଶିଶୁ ଜନ୍ମହେବା ପରେପରେ ଧାଇ କିମ୍ବା ଯେକୌଣସି ଜଣେ ପ୍ରୌଢା ମହିଳାଟି ତା'ର ନାଭି

କାଟି ସେଥିରେ ହଳଦି ଓ ତେଲ ଲଗେଇ ଦେଇ ଶିଶୁକୁ ସଙ୍ଗେସଙ୍ଗେ ଗାଧୋଇ ଦିଏ । ମାତ୍ର, ଏଥିରେ ସଂକ୍ରମଣ ହେବାର ସଂଭାବନା ବେଶି ଥାଏ । ଏବେଏବେ ଜୁଆଙ୍ଗ ମହିଳାମାନେ ଡାକ୍ତରଖାନାରେ ଶିଶୁ ଜନ୍ମ କରୁଥିବାରୁ ଏଭଳି ପାରଂପରିକ ରୀତିନୀତି ପ୍ରଦର୍ଶିତ କରାଯାଉଥିବାର ଦେଖାଯାଏନାହିଁ । ଶିଶୁ ଜନ୍ମ ହେବା ପରଠାରୁ ୭ ଦିନ ପର୍ଯ୍ୟନ୍ତ ଜନ୍ମଦାତ୍ରୀ ଓ ଗୃହ ଅଶୁଦ୍ଧି ରହିଥାଏ । ଏତିକିବେଳେ ଜୁଆଙ୍ଗ ପୁରୁଷଟି ଶିଶୁ ଜନ୍ମ ଦେଇଥିବା ପ୍ରସୂତି ସ୍ତ୍ରୀଟିର ସମସ୍ତ ପ୍ରକାର ସେବାଶୁଶ୍ରୁଷା କରିଥାଏ । ପ୍ରସବ ପୂର୍ବରୁ ଓ ପ୍ରସବ ପରେ ଜୁଆଙ୍ଗ ସମାଜରେ ପ୍ରସୂତି ସ୍ତ୍ରୀଟି ପାଇଁ ନାନା ପ୍ରକାର ଖାଦ୍ୟଦ୍ରବ୍ୟ ନିଷେଧ ହୋଇଥାଏ । ଯଦି ଶିଶୁଟି ପୁତ୍ର ସନ୍ତାନ ହୋଇଥାଏ ତେବେ ଏକ ତୀର ସାହାଯ୍ୟରେ ନାଭି କଟାଯାଇଥାଏ । ଯଦି ଶିଶୁଟି କନ୍ୟା ସନ୍ତାନ ହୋଇଥାଏ ତେବେ ସାଧାରଣ ଲୁହା ଛୁରି କିମ୍ବା କଟୁରୀରେ କଟାଯାଇଥାଏ । କଟାଯାଇଥିବା ନାଭିକୁ ଶାଳପତ୍ରର ଚୌପତିରେ ପୂରେଇ ଘର ପଛପଟେ ଗାତ ଖୋଳି ପୋତି ଦିଆଯାଏ ।



ଶିଶୁଟିର ନାଭି ଶୁଖି ଝଡିଗଲେ ଏହି ଶୁଷ୍କ ନାଭି ସହ ଅରୁଆ ଚାଉଳ, ହଳଦି ମିଶାଇ ଏକ ଶାଳପତ୍ର ଚୌପତିରେ ବାନ୍ଧି ଘର ଚାଳରେ ଖୋସିଦିଆଯାଏ । ଏହାଦ୍ୱାରା ସଂପୃକ୍ତ ଜୁଆଙ୍ଗ ମହିଳାଟି ବହୁ ସଂଖ୍ୟାରେ ଶିଶୁ ଜନ୍ମ ଦେଇପାରିବ ବୋଲି ବିଶ୍ୱାସ ରହିଛି । ଶିଶୁଟି ଜନ୍ମ ହେବାର ପାଞ୍ଚ ମାସ ମଧ୍ୟରେ ଜୁଆଙ୍ଗ ଦଂପତି ସହବାସ କରି ନଥା'ନ୍ତି ।

ଶିଶୁ ଜନ୍ମ ହେବାର ପଞ୍ଚମ ଦିନରେ ନାମକରଣ ଉତ୍ସବ ପାଳିତ ହୋଇଥାଏ । ଏହାକୁ **'ନିମିଞ୍ଚା'** *(name giving ceremony)* କୁହାଯାଏ । ଏହି ଦିନ ସକାଳୁ ମା' ସ୍ନାନ କରେ ଏବଂ ପୁରୁଣା ଲୁଗାପଟା ସଫା ହୁଏ । ଜନ୍ମ ସମୟରେ ବ୍ୟବହୃତ ପୁରୁଣା କପଡା ଓ ଅନ୍ୟାନ୍ୟ ସାମଗ୍ରୀକୁ ବାହାରେ ଫିଙ୍ଗି ଦିଆଯାଏ । ସାଧାରଣତଃ ଜୁଆଙ୍ଗ ସମାଜରେ ନବଜାତ ଶିଶୁଟିକୁ ପୂର୍ବପୁରୁଷଙ୍କ ନାମ ଦିଆଯାଇଥାଏ । ଏହିଦିନ ନବଜାତ ଶିଶୁର ପରିବାର ପକ୍ଷରୁ ଗ୍ରାମବାସୀଙ୍କୁ ଭୋଜି ଓ ମଦ ଦ୍ୱାରା ଆପ୍ୟାୟିତ କରାଯାଏ । ଏହି ଅବସରରେ ପରିବାରର ପ୍ରମୁଖ ସଦସ୍ୟ (ଶିଶୁର ବାପା) ନିଜର ପୂର୍ବପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ କୁକୁଡା, ମଦ ଅର୍ପଣ କରିଥାନ୍ତି । ଶିଶୁର ପିତା କିମ୍ବା ଜେଜେ ମଦକୁ ନିଜ ହାତ ଆଞ୍ଜୁଳା ମଧ୍ୟରେ ଧୀରେଧୀରେ ଭୂମି ଉପରେ ଢାଳି ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ପିତୃପୁରୁଷ, ଧରମ୍ ଦେବତା ଏବଂ ଧରିତ୍ରୀ ମାତାକୁ ମଦ ଦେଲେ ଶିଶୁର ମଙ୍ଗଳ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଶିଶୁର ପିତା ବସୁମତି ମାତା, ଧରମ୍ ଦେବତା, ଗ୍ରାମଶିରି ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରି ନିଜ ଶିଶୁକୁ ଆଶିର୍ବାଦ ପ୍ରଦାନ କରିବା ପାଇଁ ନିବେଦନ କରନ୍ତି ।

ଜୁଆଙ୍ଗମାନେ ନିଜ ଶିଶୁଙ୍କର ନାମ ସ୍ଥାନୀୟ ଅଞ୍ଚଳର ଗଛଲତା, ପଶୁପକ୍ଷୀ, ଫୁଲ, ବାର, ମାସ ଆଦି ନାମାନୁସାରେ ପ୍ରଦାନ କରିଥା'ନ୍ତି ।ତେବେ ବର୍ତ୍ତମାନ ଜୁଆଙ୍ଗ ସମାଜରେ ଆଧୁନିକ ନାମକରଣ କରାଯାଉଥିବାର ଦେଖାଗଲାଣି । ଏଭଳିକି ଉଦ୍ଭଟ ଇଂରାଜୀ ନାମକରଣ ମଧ୍ୟ ଜୁଆଙ୍ଗ ସମାଜରେ ସଂଭବ ହେଲାଣି । ଧରାଯାଉ, କନ୍ୟାଟିଏ ରବିବାର ଦିନ ଜନ୍ମ ହେଲା, ସେ କ୍ଷେତ୍ରରେ ତାହାର ନାମ 'ରଇବାରୀ' ରଖାଯାଇଥାଏ । ସେହିଭଳି 'ସୋମବାରୀ', 'ଗୁରୁବାରୀ' 'ବୁଧେଇ', 'ମଙ୍ଗଳା' ଆଦି ନାମକରଣ କରାଯାଇଥାଏ । ଶିଶୁ ସନ୍ତାନ କ୍ଷେତ୍ରରେ 'ଗୁରୁବାରୁ', 'ଶୁକୁରା', 'ରଇବାରିଆ', 'ଶନିଆ' ଭଳି ନାମକରଣ ହୋଇଥାଏ । ଆଜିକାଲି ଜୁଆଙ୍ଗ ସମାଜରେ 'ଡନ୍', 'ଦାଦା', 'କଲେକ୍ଟର', 'ଡାକ୍ତର', 'ତହସିଲ୍‌ଦାର', 'ପିଅନ୍', 'ଅମିନ୍', 'କିରାଣି', 'ପୋଲିସ' ଭଳି ଉଦ୍ଭଟ ନାମକରଣ ମଧ୍ୟ ସଂଭବ ହେଲାଣି ।

ଜନ୍ମ ଉତ୍ସବ ପାଳନ ସମୟରେ ଯେଉଁ ନାମ ପ୍ରଦାନ କରାଯାଇଥାଏ ପରବର୍ତ୍ତୀ ସମୟରେ ଏହି ନାମ ମଧ୍ୟ ପରିବର୍ତ୍ତନ ହୋଇଥାଏ । ଅବଶ୍ୟ ଏଥିପାଇଁ କୌଣସି ଉତ୍ସବର ଆୟୋଜନ କରାଯାଇ ନଥାଏ । ନବଜାତ ଶିଶୁକୁ ଏକୋଇଶି ଦିନ ହୋଇଗଲେ ଏକୋଇଶା' *(twenty first day)*

ମଧ୍ୟ ପାଳନ କରାଯାଏ । ଏହିଦିନ ଶିଶୁର ବାପା ପୂର୍ବପୁରୁଷ, ଧରମ୍ ଦେବତା, ବସୁମତି ମାତା ଓ ଗ୍ରାମଶିରିଙ୍କ ଉଦ୍ଦେଶ୍ୟରେ କୁକୁଡା, ମଦ ଆଦି ପ୍ରଦାନ କରିଥାଏ । ଏହି ଅବସରରେ ଶିଶୁର ପିତା ନିଜର ସକ୍ଷମ ଅନୁସାରେ ନିଜର ପଡୋଶୀ ଭାଇମାନଙ୍କୁ ଭୋଜି ଦେଇଥାଏ ।

ଯଦି ଶିଶୁଟିଏ ଜନ୍ମ ହେବା ସମୟରେ ଦାନ୍ତ ଉଠିଥାଏ, ତେବେ ଏହାକୁ ଅଶୁଭ ସୂଚନା ବୋଲି ଧରାଯାଏ । ଏହି ଶିଶୁଟି ଜୁଆଙ୍ଗମାନଙ୍କୁ ଧ୍ୱଂସ କରିଦେବ ବୋଲି ସେମାନେ ଆଶଙ୍କା ପ୍ରକାଶ କରନ୍ତି । ଯାଆଁଳା ଶିଶୁ ଜନ୍ମ ହେଲେ ଏହା ଜୁଆଙ୍ଗମାନଙ୍କ ପାଇଁ ଶୁଭ ହୋଇଥାଏ । ଯାଆଁଳା ଶିଶୁ ଜନ୍ମ ସଂପର୍କରେ ଜୁଆଙ୍ଗ ସମାଜରେ ନାନା କଥା ଶୁଣିବାକୁ ମିଳିଥାଏ । ଯଦି ଜୁଆଙ୍ଗ ମହିଳାଟି ଯାଆଁଳା କଦଳୀ କିମ୍ବା ବାଇଗଣ ଖାଇଦିଏ, ତେବେ ସେ ଜାଆଁଳା ଶିଶୁଙ୍କୁ ଜନ୍ମ ଦେଇଥାଏ । ସେହିଭଳି ଜୁଆଙ୍ଗ ମହିଳାଟି ଗର୍ଭରେ ଶିଶୁ ଧାରଣ କରିଥିବା ଅବସ୍ଥାରେ ଯଦି ପୁରୁଷଟି ଅତି ଜୋର୍‌ରେ ତା' ସହ ଯୌନକ୍ରିୟା କରିଥାଏ, ଏହି ସମୟରେ ଗର୍ଭସ୍ଥ ଶିଶୁଟି ଦୁଇ ଭାଗ ହୋଇ ଯାଆଁଳା ଶିଶୁ ଜନ୍ମର କାରଣ ହୋଇଥାଏ ବୋଲି ବିଶ୍ୱାସ କରାଯାଏ । ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ସେମାନଙ୍କ ପୂର୍ବପୁରୁଷମାନେ ପୁନର୍ବାର ତାଙ୍କ ପରିବାରରେ ଜନ୍ମ ଗ୍ରହଣ କରନ୍ତି ।

ଜୁଆଙ୍ଗ ପ୍ରସୂତୀର କ୍ଷୀର ନ ହେଲେ ନାନା ପ୍ରକାର ଉପଚାର କରାଯାଇଥାଏ । ଅତୀତରେ ପ୍ରସୂତିର ସ୍ୱାମୀ ଜଙ୍ଗଲରୁ ବାଘ କ୍ଷୀର ଆଣି ନିଜ ପତ୍ନୀକୁ ଦେଲେ ଭଲ କ୍ଷୀର ହେଉଥିଲା ବୋଲି ଜୁଆଙ୍ଗମାନେ କହନ୍ତି । ବେଳେବେଳେ ପ୍ରସୂତୀର କ୍ଷୀର ନ ହେଲେ ଏକ ଚୌପତିରେ ଦୁଧରା ପତ୍ର, ହଳଦି ଓ ଚାଉଳ ପୂରେଇ ତା' ମୁଣ୍ଡରେ ଲଦିଲେ ଭଲ କ୍ଷୀର ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ପ୍ରସୂତୀର ଭଲ କ୍ଷୀର ହେବା ନେଇ ଅନ୍ୟ ଏକ ଉପଚାର ରହିଛି । ଜିଆକୁ ଭାଜି ଭାତ ସହିତ ପ୍ରସୂତିକୁ ଖାଇବାକୁ ଦେଲେ ଭଲ କ୍ଷୀର ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଭାତରେ ଅଧିକ ଲୁଣ ଖାଇଲେ କିମ୍ବା ମାଣ୍ଡିଆ ପେଜ ପିଇଲେ ଭଲ କ୍ଷୀର ହୋଇଥାଏ । ଏହା ସହିତ ଅମୃତଭଣ୍ଡା, ଲାଉ ସିଝା ଖାଇଲେ କ୍ଷୀର ଭଲ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରିଥାନ୍ତି ।

ଜୁଆଙ୍ଗମାନେ ବହୁ ସଂଖ୍ୟାରେ ଜନ୍ମ କରିବାକୁ ଭଲ ପାଆନ୍ତି । ସାଧାରଣତଃ ଦ୍ୱିତୀୟ ଶିଶୁ ଜନ୍ମ ହେବା ପର୍ଯ୍ୟନ୍ତ ପ୍ରଥମ ଶିଶୁ ସ୍ତନ୍ୟପାନ କରିଥାଏ । ତେବେ ଶିଶୁର କ୍ଷୀର ଛାଡିବା ପାଇଁ ଜୁଆଙ୍ଗ ମହିଳାମାନେ ନିଜ ସ୍ତନାଗ୍ରରେ ଗୋବର, ଲଙ୍କା, ନିମପତ୍ର ଗୁଣ୍ଡ ଆଦି ବୋଳି ଦିଅନ୍ତି । କ୍ଷୀର ଛାଡିବା ପାଇଁ ବେଳେବେଳେ ମାଆମାନେ ଶିଶୁକୁ ନାନା ପ୍ରକାର ଭୟ ଦେଖେଇଥା'ନ୍ତି । ସେଠାରେ ସାପ ଅଛି, ବାଘ ଡରେଇବ, ଆଉ ଗୋଟିଏ ପିଲା ଅଛି ପିଟିବ ଆଦି କହି ମାଆମାନେ ସେମାନଙ୍କ ଶିଶୁର କ୍ଷୀର ଛାଡିବାକୁ ପ୍ରୟାସ କରନ୍ତି । ଶିଶୁମାନଙ୍କର ଯେବେ କ୍ଷୀରଖିଆ ଦାନ୍ତ ପଡିଯାଏ, ସେତେବେଳେ ମାଆମାନେ ଶିଶୁକୁ ଶିଖାଇ ଦିଅନ୍ତି- 'ମୂଷା, ମୂଷା, ମୋ' ପୁରୁଣା ଦାନ୍ତ ନେ, ତୋ ନୂଆ ଦାନ୍ତ ମୋତେ ଦେ' ।

# ଜୁଆଙ୍ଗ ଯୁବକ, ଯୁବତୀଙ୍କ ଯୌବନପ୍ରାପ୍ତି ସମ୍ବନ୍ଧୀୟ କର୍ମକର୍ମାଣି

*(puberty rites of juang youth)*

[ ତଥ୍ୟ ସହାୟତା

ଶାନ୍ତିଲତା ଜୁଆଙ୍ଗ, ଗ୍ରାମ: ଗୁଡଗଙ୍ଗା, ବ୍ଲକ୍: ବାଂଶପାଳ

ବାସନ୍ତୀ ଜୁଆଙ୍ଗ, ଗ୍ରାମ: କଦଳୀବାଡି, ବ୍ଲକ୍: ବାଂଶପାଳ

କୁନ୍ତଳା ଜୁଆଙ୍ଗ, ଗ୍ରାମ: ଗୁଡଗଙ୍ଗା, ବ୍ଲକ୍: ବାଂଶପାଳ

ଜାଇ ଜୁଆଙ୍ଗ, ଗ୍ରାମ: ବାୟାପଣ୍ଡାଦର, ବ୍ଲକ୍: ବାଂଶପାଳ

ଶ୍ରୀକାନ୍ତ ଜୁଆଙ୍ଗ, ଗ୍ରାମ: ଗୋନାସିକା, ବ୍ଲକ୍: ବାଂଶପାଳ ]

ଯେଉଁ ଦିନ ଜୁଆଙ୍ଗ ସେଲାନ୍ (ଯୁବତୀ) ପ୍ରଥମକରି ରଜୋବତୀ ହୁଏ ତାକୁ ନାନା ପ୍ରକାର ନୀତିନିୟମ ପାଳନ କରିବାକୁ ପଡିଥାଏ । ସେଲାନ୍‌ଟିର ଋତୁସ୍ରାବ ଆରମ୍ଭ ହେବା ପରଠାରୁ ୭ ଦିନ ପର୍ଯ୍ୟନ୍ତ



ତାକୁ ସଂପୂର୍ଣ୍ଣ ନିର୍ଜନ ଓ ଏକାକୀ ଏକ ନିବୁଜ ଘର ଭିତରେ ରଖାଯାଏ ଏବଂ ବାହାରକୁ ଆସିବାକୁ ଦିଆଯାଏ ନାହିଁ । ଛଅ ଦିନ ପର୍ଯ୍ୟନ୍ତ ସେ ନ ଗାଧୋଇ ବିନା ପ୍ରସାଧନୀରେ ଏକାକୀ ଏକ ଅନ୍ଧାର ଘରେ ରହିଥାଏ । ସପ୍ତମ ଦିନ ଗାଁର କିଛି ମହିଳା ସଂପୃକ୍ତ ସେଲାନ୍‌କୁ ନିକଟସ୍ଥ ନଦୀ କିମ୍ବା ଝରଣା କୂଳକୁ ଗାଧୋଇବାକୁ ନିଅନ୍ତି । ସେଠାରେ ଯୁବତୀ ବ୍ୟବହାର କରିଥିବା ଋତୁସ୍ରାବ କପଡାକୁ ଫିଙ୍ଗିଦିଆଯାଏ । ଗାଧୋଇ ସାରିବା ପରେ ଯୁବତୀଟି ନୂତନ କପଡ଼ା ପରିଧାନ କରି ଘରକୁ ଫେରେ । ଯୁବତୀର ମାଆ ତାକୁ ତେଲ, ହଳଦି ଲଗେଇ ଦିଏ । ପରେ ଏକ ପାତ୍ରରେ ଥିବା ତୁଳସୀପତ୍ର ପାଣି ସଂପୃକ୍ତ ଯୁବତୀ ଉପରେ ସିଞ୍ଚନ କରାଯାଏ । ଏହା ଦ୍ୱାରା ସେ ଶୁଦ୍ଧପବିତ୍ର ହୋଇଥାଏ । ଯୁବତୀଟିକୁ ଯେଉଁ ଘରେ ସାତ ଦିନ ଧରି ରଖାଯାଇଥାଏ, ସେହି ଘରକୁ ଗୋବରପାଣିରେ ଲିପାଯାଇ ଶୋଧନ କରାଯାଏ । ଏହାପରେ କିଛି ଛୋଟଛୋଟ ପିଲାଙ୍କୁ ଏକ ଛୋଟ ଧରଣର ଭୋଜି ଦିଆଯାଏ । ଋତୁସ୍ରାବ ସମୟରେ ଜୁଆଙ୍ଗ ଯୁବତୀଟିକୁ କୌଣସି ଯୁବକ, ଘରର ସାମଗ୍ରୀ, ଯେକୌଣସି ଜୀବନ୍ତ ପ୍ରାଣୀ କିମ୍ବା ବୃକ୍ଷଲତାକୁ ସ୍ପର୍ଶକରିବା ବାରଣ କରାଯାଇଥାଏ । ସେମାନଙ୍କୁ ଶସ୍ୟକ୍ଷେତ, ବାଡ଼ିବଗିଚା କିମ୍ବା ଗୋରୁ ଗୁହାଳକୁ ଆସିବାକୁ ମନା କରାଯାଇଥାଏ । ଧାନ କୁଟା, ରୋଷେଇ କରିବା, ନାଚଗୀତ କରିବା ଆଦି ବାରଣ ହୋଇଥାଏ । ସେ ଏହି ସମୟରେ ଗାଁର କୌଣସି ଯୁବକ କିମ୍ବା ଯୁବତୀ ସହ ମିଶି ନଥାଏ । ଏହି ସମୟରେ ଯୁବତୀଟି ଯଦି କୌଣସି ଯୁବକ ସହ ସହବାସ କରେ ତେବେ ସହବାସ କରୁଥିବା ସଂପୃକ୍ତ ପୁରୁଷର ବହୁତ କ୍ଷତିସାଧନ ହୋଇଥାଏ । ଯଦି ଏହି ସମୟରେ ଯୁବତୀଟି କୌଣସି ଯୁବକକୁ ଛୁଇଁଦିଏ ସଂପୃକ୍ତ ଯୁବକ ଝାଉଁଳିଯାଏ କିମ୍ବା ତାର ମୃତ୍ୟୁ ହୋଇଯାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେହିଭଳି ଋତୁବତୀ ଯୁବତୀଟି ଯଦି ଗଛଲତାକୁ ଛୁଇଁଦିଏ ତେବେ ସେହି ଗଛ ମରିଯାଏ ବୋଲି ଜୁଆଙ୍ଗମାନଙ୍କ ମଧ୍ୟରେ ବିଶ୍ୱାସ ରହିଛି । ଋତୁବତୀ ହୋଇଥିବା ସମୟରେ ଯଦି ବିବାହ ପ୍ରସ୍ତାବ ଆସେ ତେବେ ଝିଅଘର ପକ୍ଷରୁ ଏହାକୁ ମନା କରି ଦିଆଯାଏ । ବାହାଘର ପ୍ରସ୍ତାବ ନେଇ ଆସିଥିବା ବରପକ୍ଷ ଲୋକଙ୍କୁ ଝିଅର ବାପା, ମାଆ କହନ୍ତି- 'ଆମ ଝିଅକୁ ଜ୍ୱର, ସପ୍ତାହ ପରେ ଆସନ୍ତୁ' । ଋତୁସ୍ରାବ ସମୟରେ ଝିଅର ବାହାଘର କଲେ ଝିଅର ମୃତ୍ୟୁ ହୋଇଯାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେହିଭଳି ବିବାହିତ ଜୁଆଙ୍ଗ ଯୁବକଟିକୁ ମଧ୍ୟ ନିଜ ପତ୍ନୀର ଋତୁସ୍ରାବ ପାଇଁ କିଛି ନିୟମ ପାଳନ କରିବାକୁ ପଡିଥାଏ । ପତ୍ନୀର ଋତୁସ୍ରାବ ହୋଇଥିବା ସମୟରେ ସ୍ୱାମୀ ହଳ କରିବା, ମଣ୍ଡଘରକୁ ଯିବା, ଅନ୍ୟ ଯୁବକମାନଙ୍କ ସହ ମିଶିବା ମଧ୍ୟ ବାରଣ କରାଯାଇଥାଏ । ସେହିଭଳି ଜୁଆଙ୍ଗ କଙ୍ଗେର୍ (ଯୁବକ)ର ଯୌବନପ୍ରାପ୍ତ ହେଲାପରେ ତାକୁ ମଣ୍ଡଘରର ସଦସ୍ୟ କରାଯାଏ । 'ଆମ୍ବ ନୂଆଖିଆ' ପର୍ବ ପାଳନ ବେଳେ ଏହି ଯୁବକ, ଯୁବତୀମାନଙ୍କୁ ସଂସ୍କାର କରାଯାଇ 'ମଣ୍ଡଘର'ର ନିୟମିତ ସଦସ୍ୟ କରାଯାଏ ।

# ଜୁଆଙ୍ଗ ସମାଜରେ ମୃତ୍ୟୁ ସମ୍ବନ୍ଧୀୟ କର୍ମକର୍ମାଣି

*(death rite and funeral ceremony of the Juang)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ଉପରରତୁଆଁ**

**ଗ୍ରାମ ପଞ୍ଚାୟତ: ତଳଚଂପେଇ**

**ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।**

**ତଥ୍ୟ ପ୍ରଦାନକାରୀ: ଉପରରତୁଆଁ ଗ୍ରାମର ପରବାସିଆ ଜୁଆଙ୍ଗ (ପଧାନ),**

**ମଣିଆ ଜୁଆଙ୍ଗ (ନାଗମ୍), ନାରଦ ଜୁଆଙ୍ଗ (କାର୍ଜି),**

**ଚେମନ୍ ଜୁଆଙ୍ଗ (ଡ଼ାଙ୍ଗୁଆ), ଗୋବିନ୍ଦ ଜୁଆଙ୍ଗ, ବଙ୍ଗାଳି ଜୁଆଙ୍ଗ,**

**ବେନୁ ଜୁଆଙ୍ଗ, ବିନୋଦ ଜୁଆଙ୍ଗ ଏବଂ ପ୍ରାଣବଲ୍ଲଭ ଘଣା ।**

ଜଣେ ଜୁଆଙ୍ଗର ସ୍ୱାଭାବିକ ମୃତ୍ୟୁ ହୋଇଗଲେ, ମୃତ ବ୍ୟକ୍ତିର ପରିବାରର ଜଣେ ସଦସ୍ୟ ପ୍ରଥମେ **ମଜାଙ୍ଗ** (ମଣ୍ଡଘର)କୁ ଆସି ମୃତ୍ୟୁ ଖବର ସମସ୍ତ ଗ୍ରାମବାସୀଙ୍କୁ ଜଣାଇଥାଏ । ଏହା ପରେ ଗ୍ରାମର ଅନ୍ୟ ଜୁଆଙ୍ଗମାନେ ତକାହକା ହୋଇ ମୃତ ବ୍ୟକ୍ତିର ଘରେ ପହଞ୍ଚି ମୃତକଙ୍କ ପରିବାର ଉଦ୍ଦେଶ୍ୟରେ ସମବେଦନା ଜଣାଇଥାନ୍ତି । ବ୍ୟକ୍ତିର ମୃତ୍ୟୁ ହୋଇଗଲେ ପରିବାରର ସଦସ୍ୟମାନେ ଗୀତ ମାଧ୍ୟମରେ କାନ୍ଦିକାନ୍ଦି ସେମାନଙ୍କର ସମବେଦନା ଜଣାନ୍ତି । ପରିବାରରେ 'ବାପା'ଙ୍କର ମୃତ୍ୟୁ ହେଲେ ପୁତ୍ର, କନ୍ୟା ଏବଂ ପତ୍ନୀ ଗୀତ ଗାଇ କାନ୍ଦିକାନ୍ଦି ନିଜର ଅସହାୟତା ପ୍ରକାଶ କରିଥା'ନ୍ତି । ସେହିଭଳି ପୁତ୍ର କିମ୍ବା କନ୍ୟାର ମୃତ୍ୟୁ ହେଲେ ବାପା, ମାଆ, ଭାଇ, ଭଉଣୀମାନେ ଗୀତ ଗାଇ ସମବେଦନା ଜ୍ଞାପନ କରନ୍ତି ।

ପରିବାରର ଯେକୌଣସି ସଦସ୍ୟଙ୍କର ମୃତ୍ୟୁ ହୋଇଗଲେ ଶବକୁ ଶୋଭାଯାତ୍ରା ମାଧ୍ୟମରେ ମଶାଣିକୁ ନେଇ ସେଠାରେ ଦାହ କରାଯାଇଥାଏ । ଚାରି ଛଅ ଜଣ ଜୁଆଙ୍ଗ ଶବଟିକୁ ମଶାଣି ପର୍ଯ୍ୟନ୍ତ ବୋହି ନେଇଥା'ନ୍ତି । ଶବ ଶୋଭାଯାତ୍ରା ସହିତ ଗ୍ରାମର ଅନ୍ୟ ଜୁଆଙ୍ଗ ଭାଇମାନେ ଉପସ୍ଥିତ ରହନ୍ତି । ଛଅଖଣ୍ଡ କାଠରେ କୋକେଇ ନିର୍ମାଣ କରାଯାଇଥାଏ । ଏହି କୋକେଇ ଉପରେ ଶବକୁ ରଖି ମୃତ ପରିବାର ପକ୍ଷରୁ ଶବ ଉପରେ ଏକ କପଡା ଘୋଡେଇ ଦିଆଯାଏ । ଜୁଆଙ୍ଗ ସମାଜରେ ଶବାଧାରରେ କିଛି ଧୂଆଁପତ୍ର ରଖିବାର ବିଧି ରହିଛି । ସାଧାରଣତଃ ଜୁଆଙ୍ଗମାନଙ୍କର ଶ୍ମଶାନ ଜଙ୍ଗଲ ମଧ୍ୟରେ ଏବଂ ନାଳ ବା ଝରଣା କୂଳରେ ଅବସ୍ଥିତ ଥାଏ । ଜୁଆଙ୍ଗମାନେ ଜଙ୍ଗଲରୁ

କାଠ ସଂଗ୍ରହ କରି ଏକ ଚିତା ନିର୍ମାଣ କରନ୍ତି । ଏଥିରେ ଶବଟିକୁ ରଖି ଅଗ୍ନି ସଂଯୋଗ କରାଯାଇଥାଏ । ଶବ ସତ୍କାର ପରେ ମୃତ ପରିବାର ପକ୍ଷରୁ ଗୋଟିଏ ଘୁଷୁରି କିମ୍ବା ଗୋଟିଏ ମେଣ୍ଢା, କୁକୁଡା, ହାଣ୍ଡିଆ, ମହୁଲି, ଚାଉଳ, ଧୂଆଁପତ୍ର ଆଦି ଗାଁ ଲୋକଙ୍କୁ ଦିଆଯାଏ ।

ଜୁଆଙ୍ଗମାନେ ସାଧାରଣତଃ ଶବକୁ ଦାହ କରନ୍ତି । କିଛି ବିଶେଷ ପରିସ୍ଥିତିରେ ଶବକୁ ପୋତି ଦିଆଯାଏ । ବସନ୍ତ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିବା ଜୁଆଙ୍ଗମାନଙ୍କ ଶବ, ନାମ ଦିଆ ହୋଇ ନଥିବା ପୂର୍ବରୁ ମୃତ ଶିଶୁର ଶବ ଏବଂ ବାଘ ଖାଇଥିବା ଲୋକର ଶବକୁ ମାଟି ତଳେ ପୋତାଯାଏ । ବାଘ ଖାଇଥିବା ଶବକୁ ଘଞ୍ଚ ଜଙ୍ଗଲ ମଧ୍ୟରେ ପୋତାଯିବାର ବିଧି ରହିଛି । ଏହା ବ୍ୟତୀତ ଗର୍ଭବତୀ ଅବସ୍ଥାରେ ଜୁଆଙ୍ଗ ସ୍ତ୍ରୀଲୋକଟିଏ ମରିଗଲେ ତାର ଶବକୁ ମଧ୍ୟ ମାଟି ଖୋଳି ପୋତି ଦିଆଯାଏ । ମୃତ ବ୍ୟକ୍ତି ଯଦି କୁଷ୍ଠ ବା ଫୁଲା ରୋଗରେ କିମ୍ବା ପୋକ ହୋଇ ମରେ କିମ୍ବା ତାକୁ ବାଘ ଖାଇଯାଏ ତେବେ ସେହି ପରିବାରର ଜାତି ଗଲା ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏହା ବ୍ୟତୀତ ସାପ କାମୁଡା ଓ ହଇଜାରେ ମୃତ୍ୟୁବରଣ କରୁଥିବା ଜୁଆଙ୍ଗ, ପ୍ରସବକାଳରେ ମୃତ୍ୟୁବରଣ କରୁଥିବା ଜୁଆଙ୍ଗ ମହିଳା, ହତ୍ୟା କିମ୍ବା ଆତ୍ମହତ୍ୟା କରିଥିବା ଜୁଆଙ୍ଗମାନଙ୍କର ଶବଦାହ ପରିବର୍ତ୍ତେ ପୋତାଯାଇଥାଏ ।

ମୃତ୍ୟୁକୁ ନେଇ ଜୁଆଙ୍ଗ ସମାଜରେ ନାନା ପ୍ରକାର ଲୋକବିଶ୍ୱାସ ରହିଛି । ଯଦି ଗାଁରେ କୁକୁର, ମଇଁଷି, କୋକିଶିଆଳି ଭଳି ପଶୁମାନେ ଜୋର୍‌ରେ ଭୁକନ୍ତି କିମ୍ବା ବିକଟାଳ ଶବ୍ଦ କରନ୍ତି ତେବେ ଗାଁକୁ ବିପଦ ପଡିଥାଏ । ଏହି ପଶୁମାନେ ଅସ୍ୱାଭାବିକ ଭାବେ ଭୁକିଲେ ଗାଁରେ କାହାର ମୃତ୍ୟୁ ହୋଇପାରେ ବୋଲି ଜୁଆଙ୍ଗମାନେ ଅନୁମାନ କରନ୍ତି । ଯେଉଁ ଜୁଆଙ୍ଗ ଘର ପଛପଟେ ରାତିରେ ଚଢେଇ କ୍ରନ୍ଦନର ଶବ୍ଦ ଶୁଭେ ତେବେ ସେହି ପରିବାରରୁ କାହାର ନା କାହାର ମୃତ୍ୟୁ ସୁନିଶ୍ଚିତ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଯଦି ଜଣେ ଜୁଆଙ୍ଗ ପଶୁ, ପକ୍ଷୀର ମାଂସ ସଂପର୍କିତ ସ୍ୱପ୍ନ ଦେଖେ ତେବେ ନିଶ୍ଚିତ ସେହି ପରିବାରରେ କାହାର ମୃତ୍ୟୁ ହୋଇଥାଏ । ଯଦି କୌଣସି ଜୁଆଙ୍ଗ ଜ୍ୱର, ଝାଡା, ବାନ୍ତିରେ ଆକ୍ରାନ୍ତ ହୋଇ ଚୁପ୍‌ଚାପ୍ ରୁହେ ଏବଂ ପାଟି ଖୋଲେନାହିଁ, ଜୁଆଙ୍ଗମାନେ ଭାବନ୍ତି ସଂପୃକ୍ତ ବ୍ୟକ୍ତିକୁ ଭୂତ ସବାର ହୋଇଛି । ଯଦି ଜ୍ୱର, ଝାଡାରେ ଲୋକଟିର ପ୍ରାଣ ଚାଲିଯାଏ, ତେବେ ଭୂତ ତାକୁ ଖାଇଗଲା ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଆହୁରି ମଧ୍ୟ ଗୁଣିଗାରେଡି କାରଣରୁ କିଛି ଲୋକଙ୍କର ମୃତ୍ୟୁ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଯଦି ଗୋଟିଏ କୁକୁଡା ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଅପକ୍ୱ ଅଣ୍ଡା ଦେଇଥାଏ, ତେବେ ଏହା ଗ୍ରାମ ଏବଂ ସଂପୃକ୍ତ ପରିବାର ପ୍ରତି ବିପଦ ବୋଲି ବିବେଚନା କରାଯାଏ । ଏ କ୍ଷେତ୍ରରେ ଅପରିପକ୍ୱ ଅଣ୍ଡା ଦେଇଥିବା କୁକୁଡାଟିକୁ ମାରି ଜୁଆଙ୍ଗମାନେ ଭୋଜି କରି ଖାଇ ଦିଅନ୍ତି । ଯଦି କୌଣସି ଜଣେ ଜୁଆଙ୍ଗର ମୁଣ୍ଡ ଉପରେ ହଠାତ୍ ଗଛର ଡାଳଟିଏ ଖସିପଡେ ତେବେ ସେହି ଜୁଆଙ୍ଗର ମୃତ୍ୟୁ ସମୟ ଆସନ୍ନ ବୋଲି ବିଶ୍ୱାସ ରହିଛି ।

ଘର ଛପରରେ ପେଚା ବସିଲେ ସେହି ପରିବାରରୁ କାହାର ମୃତ୍ୟୁ ହୋଇଯିବ ବୋଲି ଆଶଙ୍କା ପ୍ରକାଶ ପାଏ ।

ଯେକୌଣସି ଜୁଆଙ୍ଗର ମୃତ୍ୟୁ ଉତ୍ସବରେ ଗାଁ ମୁଖିଆ, ପିଢ ସର୍ଦ୍ଦାର ଏବଂ ଗ୍ରାମର ବୟସ୍କ ବ୍ୟକ୍ତିମାନେ ମୃତ ବ୍ୟକ୍ତିର ଘରେ ପହଞ୍ଚନ୍ତି ।ମୃତ୍ୟୁକାଳୀନ ସଂସ୍କାର କାର୍ଯ୍ୟକ୍ରମରେ ମୃତ ବ୍ୟକ୍ତିର ମାମୁ *(maternal uncle)* ପହଞ୍ଚିବା ନିତାନ୍ତ ବାଞ୍ଛନୀୟ । ମୃତ ବ୍ୟକ୍ତିର ମାମୁଁ ନ ପହିଞ୍ଚିଲେ ମୃତ୍ୟୁ ସଂସ୍କାର କାମ ଅସମ୍ଭବ ହୋଇପଡେ ।

**ପ୍ରଥମ ଦିନ/ଦ୍ୱିତୀୟ ଦିନ:** ଜୁଆଙ୍ଗଟିଏ ମରିଗଲାପରେ ମୃତ ବ୍ୟକ୍ତିର କୁଟୁମ୍ବର ଯେକୌଣସି ସଦସ୍ୟ ପ୍ରଥମେ ମଣ୍ଡଘରେ ପହଞ୍ଚି ଗ୍ରାମବାସୀ ଏବଂ ବନ୍ଧୁମାନଙ୍କୁ ଖବର ପହଞ୍ଚାଏ । ମଣ୍ଡଘର ଜରିଆରେ ମୃତ୍ୟୁ ଖବର ଗ୍ରାମର ସମସ୍ତ ପରିବାରରେ ପହଞ୍ଚିଯାଏ । ଏ ଖବର ପାଇବା ପରେ ଗ୍ରାମର ସମସ୍ତ ଜୁଆଙ୍ଗ ଓ ଅନ୍ୟ ବନ୍ଧୁମାନେ ମୃତକର ପରିବାର ନିକଟରେ ଉପସ୍ଥିତ ହୋଇ ମୃତ ବ୍ୟକ୍ତି ଉଦେଶ୍ୟରେ ସମବେଦନା ଜ୍ଞାପନ କରନ୍ତି । ସେଠାରେ ଏକ ଶୋକାକୁଳ ପରିବେଶ ସୃଷ୍ଟି ହୁଏ । ଏହାପରେ ମୃତ ବ୍ୟକ୍ତିର କୁଟୁମ୍ବ ସଦସ୍ୟ, ବନ୍ଧୁ, ପରିଜନ ଶାଳ କାଠରେ 'କୋକେଇ' ପ୍ରସ୍ତୁତ କରନ୍ତି । କୋକେଇକୁ ଜୁଆଙ୍ଗ ଭାଷାରେ 'କାଠଗୁଡି' କହନ୍ତି । ଏହା ପରେ ଶବ ଦେହରେ ହଳଦି, ତେଲ ଲଗେଇ ତାକୁ କୋକେଇ ଉପରେ ଉପରକୁ ମୁହଁକରି ଶୁଆଇ ଦିଆଯାଏ । ଶବଟିକୁ କୋକେଇରେ ବାନ୍ଧି ଚାରିରୁ ଆଠ ଜଣ ଜୁଆଙ୍ଗ ମଶାଣିକୁ ବୋହିକରି ନିଅନ୍ତି । ଏହି ଶବ ଶୋଭାଯାତ୍ରାରେ ଛୋଟ ପିଲାମାନଙ୍କୁ ସାମିଲ୍ କରାଯାଇ ନଥାଏ । ମୃତ ବ୍ୟକ୍ତିର ଆତ୍ମା ଛୋଟ ପିଲାଙ୍କ ଶରୀରରେ ପ୍ରବେଶ କରିବାର ସଂଭାବନା ଥିବାରୁ ଶବ ଶୋଭାଯାତ୍ରାବେଳେ ଶିଶୁମାନଙ୍କୁ ଯଥାସଂଭବ ଦୂରେଇ ରଖାଯାଏ । ସ୍ତ୍ରୀଲୋକମାନଙ୍କୁ ଶବଦାହ ସ୍ଥଳକୁ ଯିବା ମନା ହୋଇଥାଏ । ସ୍ତ୍ରୀଲୋକମାନେ ଶବଦାହ ସ୍ଥଳର କିଛି ଦୂରରେ ରହି କନ୍ଦାକଟା କରନ୍ତି ଏବଂ ସେଠାରେ ମୃତ ବ୍ୟକ୍ତିର ବିଧବା ସ୍ତ୍ରୀ ହାତରୁ କାଚ ଭଙ୍ଗାଯାଇଥାଏ । ଶବ ମଶାଣିରେ ପହଞ୍ଚିଲା ପରେ ଜୁଆଙ୍ଗମାନେ ଏହାକୁ ଦାହ କରିବା ପାଇଁ କାଠ ସଂଗ୍ରହ କରନ୍ତି । ଏହାପରେ ଚିତା ପ୍ରସ୍ତୁତ କରାଯାଏ ।

ଚିତା ପ୍ରସ୍ତୁତି ବେଳେ ଗ୍ରାମର ଜଣେ ବୃଦ୍ଧ ଜୁଆଙ୍ଗ ପ୍ରଥମେ ଜାମୁଡାଳଟିଏ ଭାଙ୍ଗି ଆଣେ ଏବଂ ଏହି ଡ଼ାଳଟିକୁ ଶବଟିର ମୁହଁରେ କିଛି ସମୟ ବୁଲାଏ । ବୃଦ୍ଧ ଜୁଆଙ୍ଗ ନିକଟସ୍ଥ ଝରଣାରୁ ଶାଳପତ୍ର ଠୋଲା (ଚୌପତି)ରେ କିଛି ପାଣି ଆଣି ଶବଟିର ପାଟିରେ ଦିଏ । ଶ୍ମଶାନ ସ୍ଥଳରେ କାଠରେ ପ୍ରସ୍ତୁତ କରାଯାଇଥିବା ଚିତା ଉପରେ ପୂର୍ବ ଦିଗକୁ ମୁହଁ କରି ଶବଟିକୁ ଲଦାଯାଏ । ଏହାପରେ ଏହି ଚିତାରେ ଅଗ୍ନି ସଂଯୋଗ କରାଯାଏ । ଶବଟିକୁ ଦାହ କରିବା ପରେ ଶବବାହକ ଓ ଶବ ସାଥୀରେ ଯାଇଥିବା ଜୁଆଙ୍ଗମାନେ ନିକଟସ୍ଥ ନଦୀ କିମ୍ବା ଝରଣାରେ ଗାଧୋଇ ଏକମୁହାଁ ହୋଇ ଘରକୁ

ଫେରନ୍ତି । ସେମାନେ କୌଣସି ପ୍ରକାରେ ଆଉ ପଛକୁ ଫେରି ଚାହାଁନ୍ତିନାହିଁ । ଶବବାହକ ଓ ଶବ ଶୋଭାଯାତ୍ରାରେ ଯାଇଥିବା ଅନ୍ୟାନ୍ୟ ଜୁଆଙ୍ଗମାନେ ସାଥୀରେ ନେଇଥିବା କୋଡି, କୋଦାଳ, ଟାଙ୍ଗିଆ ଆଦିକୁ ମଶାଣିରେ ଛାଡି ଦେଇ ନିକଟସ୍ଥ ନଦୀ (ନାଳ)ରେ ସ୍ନାନସାରି ମୃତ ବ୍ୟକ୍ତିର ଘରକୁ ଫେରନ୍ତି । ଏତିକିବେଳକୁ ମୃତ ବ୍ୟକ୍ତିର ଘର ସାମ୍ନା ଚଟାଣ ଗାଈ ଗୋବରରେ ଲିପାପୋଛା କରି ଶୁଦ୍ଧ କରାଯାଇଥାଏ । ମୃତ ବ୍ୟକ୍ତିର ଘର ଦରଜା ସାମ୍ନାରେ ଏକ ଶାଳପତ୍ର ଚୌପତି*(leaf cup)*ରେ ପାଣି ଭର୍ତ୍ତି କରି ସେଥିରେ କିଛି ତମ୍ବା ମୁଦ୍ରା, ଦୁବଘାସ ପକାଯାଇଥାଏ । ଶ୍ମଶାନରୁ ଫେରିବା ପରେ ଶବବାହକ ଏବଂ ଅନ୍ୟ ଜୁଆଙ୍ଗମାନେ ଏହି ପାଣିକୁ ଶରୀରରେ ସିଞ୍ଚନ କରି ନିଜକୁ ଶୁଦ୍ଧ କରିଥା'ନ୍ତି ।ଜୁଆଙ୍ଗମାନେ **ଦ୍ୱିତୀୟ ଦିନ**ରେ ପିତା ଖାଆନ୍ତି । ମୃତକଙ୍କ ଘର ସାମ୍ନାରେ ନିମପତ୍ର, ଅରୁଆ ଚାଉଳ ରଖାଯାଇଥାଏ । ଜୁଆଙ୍ଗମାନେ ଏହି ପିତା (ତିକ୍ତ) ଖାଇବା ପରେ ମୃତକଙ୍କ ପରିବାର ପକ୍ଷରୁ ଯାହା କିଛି ରୋଷେଇ କରାଯାଇଥାଏ ତାହାକୁ ଖାଇ ନିଜନିଜ ଘରକୁ ଫେରନ୍ତି ।

**ଦଶମ ଦିନ:** ମୃତ୍ୟୁର ଦଶମ ଦିବସ ବା ଦଶାହ କାର୍ଯ୍ୟଟି ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ମୃତକର କୁଟୁମ୍ବ ଓ ବନ୍ଧୁ, ସଂପର୍କୀୟ ଜୁଆଙ୍ଗମାନେ ପୁନର୍ବାର ଶବଦାହ ସ୍ଥଳକୁ ଯାଇ ବାକି କ୍ରିୟାକର୍ମ ସଂପନ୍ନ କରନ୍ତି । ମୃତ ବ୍ୟକ୍ତି ବ୍ୟବହାର କରୁଥିବା ଧନୁ, ତୀର, କୋଦାଳ, ଟାଙ୍ଗିଆ, କଟୁରି, ଖଣତି, ବାସନକୁସନ, ଛତା, ପଖିଆ ଆଦି ଶ୍ମଶାନକୁ ନିଆଯାଇଥାଏ । ଯଦି ମହିଳାଟିଏର ମୃତ୍ୟୁ ହୋଇଥାଏ ତେବେ ସେ ବ୍ୟବହାର କରୁଥିବା ଶାଢ଼ି, ଅଳଙ୍କାର, ଚୁଡି, କଙ୍କଣ, ସିନ୍ଦୁର, ଅଳତା ମଧ୍ୟ ଶ୍ମଶାନକୁ ନିଆଯାଇଥାଏ । ଯଦି ଛୋଟ ପିଲାର ମୃତ୍ୟୁ ହୋଇଥାଏ, ତେବେ ସେ ବ୍ୟବହାର କରୁଥିବା ଖେଳନା, ବାସନକୁସନ, ଚାମୁଚ, ଔଷଧପତ୍ର ଆଦି ଶ୍ମଶାନକୁ ନିଆଯାଇ ଫିଙ୍ଗି ଦିଆଯାଏ । ଏହାସହିତ ଶବଦାହ ସ୍ଥଳରେ କିଛି ଚାଉଳ ଓ ଏକ ଶାଳପତ୍ର ଚୌପତି*(leaf cup)*ରେ କିଛି ଭାତ ପୂରାଇ ଫିଙ୍ଗାଯାଏ । ଶବଦାହ ସ୍ଥଳରୁ ପାଉଁଶସବୁକୁ ସଫା କରି ସେଠାରୁ ଏକ 'ଅସ୍ଥି'ର ଅଂଶବିଶେଷ ସଂଗ୍ରହ କରାଯାଏ । ଏହାପରେ ଜଣେ ବୃଦ୍ଧ ଜୁଆଙ୍ଗ (ମୃତ ବ୍ୟକ୍ତିର ମାମୁଁ) ମାଟି କାଦୁଅରେ ଭୂମି ଉପରେ ଶୟନ କରିଥିବା ଠାଣିରେ ମଣିଷ ଆକୃତିର ଏକ ମୂର୍ତ୍ତି ନିର୍ମାଣ କରି ତାହାର ଛାତିରେ ଏକ ଜାମୁ ଡାଳ ଖୋସିଦିଏ । ମୃତକର ଘରୁ ଅଣାଯାଇଥିବା ଅରୁଆ ଚାଉଳ ଉକ୍ତ ମୂର୍ତ୍ତିକୁ ଅର୍ପଣ କରାଯାଏ । ଏହାପରେ ସଂପୃକ୍ତ ବୃଦ୍ଧଟି ମୃତ ବ୍ୟକ୍ତିର ଆତ୍ମାର ସଦ୍‌ଗତି ନିମନ୍ତେ ବସୁମତିମାତା ଓ ଧରମ୍ ଦେବତାଙ୍କୁ ଆବାହନ କରେ । କର୍ମକାଣ୍ଡ କରୁଥିବା ବୃଦ୍ଧ ବ୍ୟକ୍ତିଟି ଶ୍ମଶାନରେ ଶବଦାହ ସ୍ଥଳରେ ହଳଦିଗୁଣ୍ଡରେ କୋଠରୀ ଭଳି ଗାର ଟାଣେ । ମାଟି ହାଣ୍ଡିରେ ଛୋଟ କଣା କରି ସେଥିରେ ପାଣି ପୂରାଇ ମାଟିରେ ନିର୍ମିତ ହୋଇଥିବା ମୂର୍ତ୍ତି ଉପରେ ଝୁଲାଇ ଦିଆଯାଏ । ମାଟିହାଣ୍ଡିର ଛୋଟ କଣା ଦେଇ ଟୋପା ଟୋପା ଜଳ ବିନ୍ଦୁ ମୂର୍ତ୍ତି ଉପରେ ପଡିଥାଏ । ଏହାପରେ ସେଠାରେ ଉପସ୍ଥିତ ଥିବା

ଜୁଆଙ୍ଗମାନେ ମୃତବ୍ୟକ୍ତିର ଆତ୍ମା ଉଦ୍ଦେଶ୍ୟରେ ସମ୍ବୋଧନ କରନ୍ତି- "ହେ, ପରଲୋକଗତ ଆତ୍ମା, ତମେ ଆଂଭମାନଙ୍କୁ ଛାଡି ଚାଲିଗଲ । ଆମେମାନେ ଆପଣଙ୍କର ଯାହା କିଛି ବ୍ୟବହୃତ ବସ୍ତୁସବୁକୁ ଏଠାରେ ଆପଣଙ୍କୁ ସମର୍ପଣ କରୁଛୁ । ଆପଣ ସ୍ୱର୍ଗଲୋକକୁ ଯାଇ ଯମ ଦେବତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇବେ ।" ଏହାପରେ ପୂର୍ବଦିନ ଶ୍ମଶାନରେ ଛାଡି ଆସିଥିବା କୋଡି, କୋଦାଳ, କୁରାଢି, ଟାଙ୍ଗିଆ ଧରି ଜୁଆଙ୍ଗମାନେ ନିକଟସ୍ଥ ଝରଣାରେ ସ୍ନାନ ସାରି ଘରକୁ ଫେରନ୍ତି ।

ସାଧାରଣତଃ ମୃତ ବ୍ୟକ୍ତିର ମାଆଙ୍କର ଭାଇ (ମାମୁ) ଶ୍ମଶାନ କର୍ମ କରିଥାନ୍ତି । ଯଦି ମାମୁଁ ବଞ୍ଚି ନଥା'ନ୍ତି ତେବେ ପରିବାରର ଅନ୍ୟ ଜଣେ ବୟସ୍କ ସଦସ୍ୟ ଏ କାମ କରିଥା'ନ୍ତି । ଶ୍ମଶାନରୁ ଘରକୁ ଫେରିଲାପରେ କର୍ମ କରୁଥିବା ବୃଦ୍ଧଜଣକ ଗୋଟିଏ କୁକୁଡା ମାରି ତାହାର ରକ୍ତ ଓ ଜଡ଼ା ତେଲକୁ ମୃତ ବ୍ୟକ୍ତିର ଘରର ଚଟାଣ ଉପରେ ସିଞ୍ଚନ କରିଥାଏ । ଏହାଦ୍ୱାରା ଭୂମି ଶୋଧନ ହୋଇଥାଏ । ପରେ କ୍ରିୟାକର୍ମ କରୁଥିବା ସଂପୃକ୍ତ ବୟସ୍କ ବ୍ୟକ୍ତିଟି ଏକ ତମ୍ବା ପାତ୍ରରେ ଥିବା ପାଣିକୁ ଶ୍ମଶାନକୁ ଯାଇଥିବା ମୃତବ୍ୟକ୍ତିର ସଂପର୍କୀୟଙ୍କ ଶରୀରରେ ସିଞ୍ଚନ କରନ୍ତି । ଏହାଦ୍ୱାରା ଶ୍ମଶାନକୁ ଯାଇଥିବା ଶବବାହକ ଓ ଅନ୍ୟ ଜୁଆଙ୍ଗମାନେ ସଂସ୍କାର ହୋଇଥାନ୍ତି ।

ଶବଦାହ ପରଠାରୁ ଦଶ ଦିନ ପର୍ଯ୍ୟନ୍ତ ମୃତ ଜୁଆଙ୍ଗ ବ୍ୟକ୍ତିର ପରିବାରରେ ନାନା ପ୍ରକାର ରୀତିନୀତି ପାଳିତ ହୋଇଥାଏ । ଦଶ ଦିନ ପର୍ଯ୍ୟନ୍ତ ଘର, ଅଗଣାରେ ଝାଡୁ ମରାଯାଏନାହିଁ କି କିଛି କପଡ଼ା, ଆସବାବପତ୍ର ସଫା କରାଯାଏନାହିଁ । ମୃତବ୍ୟକ୍ତିର ପରିବାରର ସମସ୍ତ ସଦସ୍ୟ ମୁଣ୍ଡରେ ତେଲ କିମ୍ବା ପାନିଆ ବ୍ୟବହାର କରନ୍ତିନାହିଁ । ଖାଦ୍ୟରେ ତେଲ, ମସଲା ବ୍ୟବହାର କରନ୍ତିନାହିଁ । ଏହି ଦଶଦିନ ମଧ୍ୟରେ ପରିବାରରେ ଆମିଷ ଦ୍ରବ୍ୟର ପ୍ରବେଶ ହୁଏନାହିଁ । ସ୍ତ୍ରୀଲୋକମାନେ ମୁଣ୍ଡରେ ତେଲ ଲଗାନ୍ତି ନାହିଁ କି ନଖ କାଟନ୍ତି ନାହିଁ । ସେମାନେ କୌଣସି ପ୍ରସାଧନୀ ସାମଗ୍ରୀ ମଧ୍ୟ ବ୍ୟବହାର କରନ୍ତି ନାହିଁ । ପୁରୁଷମାନେ ମୁଣ୍ଡବାଳ, ନିଶ, ଦାଢି କିମ୍ବା ନଖ କାଟନ୍ତି ନାହିଁ । ଶରୀରରେ ତେଲ, ହଳଦି ଲଗାନ୍ତିନାହିଁ । ମୃତ ବ୍ୟକ୍ତିର ବିଧବା ପତ୍ନୀ ପ୍ରତିଦିନ ସକାଳୁ ଏବଂ ସନ୍ଧ୍ୟାରେ ଦାନ୍ତକାଠି, ପାଣି, କିଛି ଖାଦ୍ୟ ନେଇ ଶବଦାହ ସ୍ଥଳରେ ତାଙ୍କର ସ୍ୱର୍ଗତ ସ୍ୱାମୀଙ୍କ ଆତ୍ମା ଉଦ୍ଦେଶ୍ୟରେ ଅର୍ପଣ କରିଥା'ନ୍ତି । ମହିଳାଟିର ମୃତ୍ୟୁ ହୋଇଥିଲେ ତାଙ୍କ ସ୍ୱାମୀ ମଧ୍ୟ ଏହି କାମ କରିଥା'ନ୍ତି ।

ଦଶାହ ଦିନ ମୃତ ବ୍ୟକ୍ତିର ସମସ୍ତ ପରିବାର ସଦସ୍ୟ ସକାଳୁ ଉଠି ଘର, ଅଗଣାକୁ ଗୋବର ପାଣିରେ ସଫା କରନ୍ତି । ମୃତ୍ୟୁର ପ୍ରଥମ ଦିନରୁ ଦଶ ଦିନ ପର୍ଯ୍ୟନ୍ତ ରୋଷେଇ ଘରେ ବ୍ୟବହୃତ ହୋଇଥିବା ସମସ୍ତ ପୁରୁଣା ମାଟି ହାଣ୍ଡି ମାଟିପାତ୍ରକୁ ନେଇ ନିକଟସ୍ଥ ନଦୀ (ନାଳ)ରେ ଫିଙ୍ଗିଦିଆଯାଏ । ସ୍ତ୍ରୀଲୋକମାନେ ଘରର ଯାବତୀୟ ପୁରୁଣା ବସ୍ତ୍ର, ବାସନକୁସନ, କନ୍ଥା, କପଡା, ମସିଣା ନିକଟସ୍ଥ ନାଳ (ଝରଣା)ରେ ସଫା କରି ଖରାରେ ଶୁଖାଇଥା'ନ୍ତି । ପୁରୁଷମାନେ ନିଶ, ଦାଢି, ନଖ କାଟି

ଏବଂ ମୁଣ୍ଡରେ ସାବୁନ୍, ତେଲ ଲଗେଇ ସଂସ୍କାର କରନ୍ତି । ସ୍ତ୍ରୀଲୋକମାନେ ନଖ କାଟିବା ସହିତ ଶରୀରରେ ତେଲ, ହଳଦି ଲଗେଇ ନିଜକୁ ଶୁଦ୍ଧ କରନ୍ତି ।

ଦଶାହ ଦିନ ସକାଳୁ ମୃତ ବ୍ୟକ୍ତିଙ୍କ ଘରର ଗୋଟିଏ କୋଣରେ ଏକ ବଡ଼ ଶିଆଳି ପତ୍ରରେ କିଛି ମାଣ୍ଡିଆ ଚୁନା ବିଛେଇ ରଖାଯାଏ । ଏହା ଉପରେ ଏକ ଟୋକେଇ ଘୋଡେଇ ଦିଆଯାଏ । ସେହି ସମୟରେ ଗୃହକୁ କୌଣସି ବ୍ୟକ୍ତିକୁ ପ୍ରବେଶ କରିବା ମନା ଥାଏ । ଠିକ୍ ଏହି ସମୟରେ ଶବବାହକମାନେ ଶ୍ମଶାନ ନିକଟକୁ ଯାଇ ମୃତ ବ୍ୟକ୍ତିର ଆତ୍ମା ଉଦ୍ଦେଶ୍ୟରେ କିଛି ରନ୍ଧା ଖାଦ୍ୟ (ଭାତ) ପ୍ରଦାନ କରନ୍ତି । ଭାତ ପ୍ରଦାନ କରିବା ସମୟରେ ଶବବାହକମାନେ ଭାଗବତ ନାମ ଜପ କରିକରି ପୁନଶ୍ଚ ଏକମୁହାଁ ହୋଇ ଘରକୁ ଫେରନ୍ତି । ସେମାନେ ଆସି ମୃତ ବ୍ୟକ୍ତିର ଘର ଦରଜା ସମ୍ମୁଖରେ ଠିଆ ହୋଇ ରହନ୍ତି । ଏହି ସମୟରେ ଘର ଭିତରୁ ଥାଇ ମୃତ ବ୍ୟକ୍ତିର ଘର ଲୋକେ ଶବବାହକଙ୍କ ଉଦ୍ଦେଶ୍ୟରେ କହନ୍ତି:

"-ତମେମାନେ କାହିଁକି ଏଠାକୁ ଆସିଛ?"

ଶବବାହକମାନେ ଉତ୍ତର ଦିଅନ୍ତି:

"-ଆମେ ଦୁଃଖ ଫେରାଇ ସୁଖ ଆଣିଛୁ ।"

ଏହାପରେ ଶବବାହକ ଘର ଭିତରକୁ ପଶି ଟୋକେଇ ଭିତରେ ଘୋଡାଯାଇଥିବା ଏବଂ ପତ୍ରରେ ବିଛା ଯାଇଥିବା ମାଣ୍ଡିଆ ଚୁନା ସଂପର୍କରେ ଅଧିକ ଅନୁଧ୍ୟାନ କରନ୍ତି । ଯଦି ଏହି ମାଣ୍ଡିଆ ଚୁନା ଉପରେ ଗୋଟିଏ ଲୋକର ପାଦ ଚିହ୍ନ ଦେଖିବାକୁ ମିଳେ, ମୃତ ବ୍ୟକ୍ତିକୁ କେହି ତାନ୍ତ୍ରିକ ଭକ୍ଷଣ କରି ଦେଇଛି ବୋଲି ବିଶ୍ୱାସ କରାଯାଏ । ଯଦି ଏହି ମାଣ୍ଡିଆ ଚୁନା ଉପରେ କିଛି ପଶୁ, ପକ୍ଷୀଙ୍କ ପାଦ ଚିହ୍ନ ଦେଖିବାକୁ ମିଳେ, ତେବେ ମୃତ ବ୍ୟକ୍ତିଙ୍କୁ କେହି ଦେବତା ଭକ୍ଷଣ କରିଛି ବୋଲି ବିଶ୍ୱାସ କରାଯାଏ । ସେହିପରି ଯଦି ଏହି ମାଣ୍ଡିଆ ଚୁନା ଉପରେ କୌଣସି ପାଦ ଚିହ୍ନ ଦେଖିବାକୁ ମିଳେନାହିଁ, ତେବେ ମୃତ ବ୍ୟକ୍ତିକୁ ମୃତ୍ୟୁ ଦେବତା ଯମ ନେଇ ଯାଇଛନ୍ତି ବୋଲି ଧରି ନେବାକୁ ପଡେ ।

**ଏକାଦଶ ଦିନ:** ଏକାଦଶ ଦିନ ମୃତ ବ୍ୟକ୍ତିର ବନ୍ଧୁ, ପରିଜନମାନେ ନିଜର ସକ୍ଷମ ଅନୁସାରେ ସାଥୀରେ କିଛି ଭେଟି ଆଣିଥାନ୍ତି । ଏମାନେ ଚାଉଳ, ଡାଲି, ପନିପରିବା, ମସଲା, କପଡା, କୁକୁଡା, ଛେଳି, ଗହମ, ମକା, ଗଙ୍ଗେଇ, ଜାଳେଣୀକାଠ, ତେଲ, ଲୁଣ, ବିଡ଼ି, ଧୂଆଁପତ୍ର ଆଣି ମୃତବ୍ୟକ୍ତିର ପରିବାରର ସଦସ୍ୟଙ୍କୁ ପ୍ରଦାନ କରିଥା'ନ୍ତି । ମୃତ ବ୍ୟକ୍ତିର ପରିବାର ପକ୍ଷରୁ ଧୂଆଁପତ୍ର, ବିଡ଼ି, ପାନ ଆଦି ବନ୍ଧୁମାନଙ୍କୁ ଯୋଗେଇ ଦିଆଯାଏ । ସମସ୍ତେ ମଡାଙ୍କ (ମଣ୍ଡଘର)ରେ ଏକତ୍ରିତ ହୁଅନ୍ତି । ଶେଷରେ ପରିବାର ପକ୍ଷରୁ ଏକ ଗଣଭୋଜିର ଆୟୋଜନ କରାଯାଏ । ବନ୍ଧୁ, କୁଟୁମ୍ବ ଓ ଗ୍ରାମବାସୀ ଏହି ଭୋଜିରେ ସାମିଲ୍ ହୋଇଥାନ୍ତି ।

# ଜୁଆଙ୍ଗ ବିବାହ

*(Juang marriage)*

ତଥ୍ୟ ସଂଗ୍ରହ ବିବରଣୀ

ଅଧ୍ୟୟନ କ୍ଷେତ୍ର:

ଗ୍ରାମ: ଉପରରାଇଡିହା, ଗ୍ରାମ ପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ

ଅଧ୍ୟୟନ ଦିନ: ୩୧ ମାର୍ଚ୍ଚ ୨୦୧୩, ୧ ଏପ୍ରିଲ୍ ୨୦୧୩ ଏବଂ ୬ ଏପ୍ରିଲ୍ ୨୦୧୩

ତଥ୍ୟ ପ୍ରଦାନକାରୀ: ଉପରରାଇଡିହା ଗ୍ରାମର କାଶିଆ ଜୁଆଙ୍ଗ (ପଧାନ ଏବଂ ବରପିତା), ଅନ୍ଧାରୁ ଜୁଆଙ୍ଗ (ବୁଇତା/ନାଗମ୍), କ୍ଷେତ୍ରବାସୀ ଜୁଆଙ୍ଗ, ଚନ୍ଦ୍ରମଣି ଜୁଆଙ୍ଗ, ଦାସ ଜୁଆଙ୍ଗ, ରମେଶ ଜୁଆଙ୍ଗ (କମାଣ୍ଡରିଆ/ମଧ୍ୟସ୍ଥି), ବିନୋଦ ଜୁଆଙ୍ଗ । ଗୋନାସିକା ଗ୍ରାମର ବନମାଳି ଜୁଆଙ୍ଗ ଏବଂ ବୀରବର ନାୟକ ।

ବର: ସନାତନ ଜୁଆଙ୍ଗ । ବୟସ: ୨୦ । ଗ୍ରାମ: ଉପରରାଇଡିହା

ଗ୍ରାମ ପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ

ବରପିତା: କାଶିଆ ଜୁଆଙ୍ଗ (ଗ୍ରାମର ମୁଖିଆ 'ପଧାନ') ।

କନ୍ୟା: ପ୍ରମିଳା ଜୁଆଙ୍ଗ । ବୟସ: ୧୮ । ଗ୍ରାମ: ତଳଚଂପେଇ

ଗ୍ରାମ ପଞ୍ଚାୟତ: ତଳଚଂପେଇ, ବ୍ଲକ୍: ବାଂଶପାଳ

କନ୍ୟାପିତା: ଘାସିଆ ଜୁଆଙ୍ଗ

ବିବାହ ପ୍ରକାର: କମାଣ୍ଡରିଆ କନିଆ ବିଭା *(arranged marriage)*

(ବି.ଦ୍ର: ଉପରରାଇଡିହା ଗ୍ରାମର ଏହି ବିବାହ କାର୍ଯ୍ୟକ୍ରମର ସମସ୍ତ ବିବରଣୀ 'କମାଣ୍ଡରିଆ କନିଆ ବିଭା' ସ୍ତମ୍ଭରେ ବର୍ଣ୍ଣନା କରାଯାଇଛି ।)

ଜୁଆଙ୍ଗ ସମାଜରେ ବିବାହକୁ ଏକ ପବିତ୍ର କାର୍ଯ୍ୟ ଭାବେ ଗ୍ରହଣ କରାଯାଇଥାଏ । ବିବାହ ସମୟରେ କିଛି ବିଶେଷ ଦିଗ ପ୍ରତି ଧ୍ୟାନ ଦିଆଯାଇଥାଏ । ଜୁଆଙ୍ଗମାନଙ୍କ କ୍ଷେତ୍ରରେ ସମଗୋତ୍ରୀ (କୁଟୁମ୍ବ)ଙ୍କ ମଧ୍ୟରେ ବିବାହ ସଂଭବ ହୋଇ ନଥାଏ । ସମାନ ଗୋତ୍ର ବା ପରିବାରର ସଦସ୍ୟମାନେ ଗୋଟିଏ 'କୁଟୁମ୍ବ'ର ଅନ୍ତର୍ଭୁକ୍ତ ହୋଇଥାନ୍ତି । ଏଣୁ ସମଗୋତ୍ରୀଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପନ



▶ ବର, କନ୍ୟା

ହୁଏନାହିଁ । ଭିନ୍ନ କୁଟୁମ୍ବଙ୍କ ମଧ୍ୟରେ ବୈବାହିକ ସଂପର୍କ ସ୍ଥାପନ ହେବାପରେ ସେମାନଙ୍କ ମଧ୍ୟରେ 'ବନ୍ଧୁ' ସମ୍ବନ୍ଧ ଗଢିଉଠେ । ତେବେ ଗୋଟିଏ କୁଟୁମ୍ବର ସଦସ୍ୟଙ୍କ ମଧ୍ୟରେ କୌଣସି ପରିସ୍ଥିତିରେ ବିବାହ ହୋଇ ନଥାଏ, ବରଂ ବନ୍ଧୁ ବନ୍ଧୁ-ବନ୍ଧୁଙ୍କ ମଧ୍ୟରେ ବିବାହ କାର୍ଯ୍ୟ ସମାପନ ହୋଇଥାଏ ।

ବିବାହ ପୂର୍ବରୁ ପୁତ୍ର ଓ କନ୍ୟାଙ୍କ ବୈବାହିକ ଜୀବନ ନେଇ **'ରାଉଳିଆ'** ଭବିଷ୍ୟବାଣୀ କରିଥା'ନ୍ତି । ରାଉଳିଆଙ୍କ ଏହି ଭବିଷ୍ୟବାଣୀ କରିବାର ପ୍ରକ୍ରିୟାଟି ଅତ୍ୟନ୍ତ ଭିନ୍ନ ଧରଣର । ରାଉଳିଆ ପ୍ରଥମେ ଭୂମି ଉପରେ ଚାରିଗୋଟି ଅକ୍ଷତ ଅରୁଆ ଚାଉଳକୁ ଥାକଥାକ କରି ରଖି ତା' ଉପରେ ଏକ ଟୋକେଇ ଘୋଡ଼େଇ ଦିଅନ୍ତି । ଟୋକେଇଟିକୁ ଚାଉଳ ଉପରେ ଏଭଳି ଘୋଡାଯାଏ, ଯେମିତିକି ଏହା ମଧ୍ୟକୁ ପିଂପୁଡି କି ଜନ୍ତୁ ପ୍ରବେଶ କରିପାରିବେ ନାହିଁ, ସେଥିପ୍ରତି ଧ୍ୟାନ ଦେବାକୁ ପଡିଥାଏ । ଏହି ଚାରିଗୋଟି ଚାଉଳ ବରର ସ୍ୱାସ୍ଥ୍ୟ, କନ୍ୟାର ସ୍ୱାସ୍ଥ୍ୟ, ସେମାନଙ୍କ ବୈବାହିକ ଜୀବନ ଓ ଭବିଷ୍ୟତରେ ସେମାନଙ୍କଠାରୁ ଜନ୍ମ ହେବାକୁ ଥିବା ସନ୍ତାନମାନଙ୍କର ଭବିଷ୍ୟତ ସଂପର୍କରେ ଭବିଷ୍ୟବାଣୀ କରିଥାଏ । ମାଟି ଉପରେ ଥାକ କରି ରଖାଯାଇଥିବା ଏହି ଚାଉଳ ଉପରେ ୮ରୁ

୧୦ ଘଣ୍ଟା କାଳ ଟୋକେଇ ଘୋଡେଇ ରଖିବା ପରେ ସମସ୍ତଙ୍କ ଉପସ୍ଥିତିରେ ଏହାକୁ କାଢି ନିଆଯାଏ । ଯଦି ଚାଉଳ ପୂର୍ବଭଳି ନିଜ ସ୍ଥିତିରେ ଅପରିବର୍ତ୍ତିତ ରହିଥାଏ, ତେବେ ବିବାହ ଶୁଭ ବୋଲି ଧରାଯାଏ । ଯଦି ଚାଉଳ ଉଭାନ୍ ହୋଇଯାଇଥାଏ କିମ୍ବା ବିକ୍ଷୁରିତ ହୋଇଯାଇଥାଏ ତେବେ ବିବାହ ଶୁଭଙ୍କର ନୁହେଁ ବୋଲି **ଲାଉଳିଆ** ମତବ୍ୟକ୍ତ କରନ୍ତି । ସଙ୍ଗେସଙ୍ଗେ ପ୍ରସ୍ତାବ ପଡିଥିବା ବିବାହକୁ ବାତିଲ୍ କରିଦିଆଯାଏ । ନିଜ ମା'ଙ୍କ ଭାଇର ଝିଅ ଏବଂ ବାପାଙ୍କ ଭଉଣୀର ପୁଅ ଏବଂ କୁଟୁମ୍ବ ଅନ୍ତର୍ଗତ ସଂପର୍କୀୟଙ୍କ ମଧ୍ୟରେ ବିବାହ ହୋଇ ନଥାଏ ।

ଜୁଆଙ୍ଗମାନେ ଏକପତ୍ନୀ ଗ୍ରହଣ କରିଥା'ନ୍ତି । ମାତ୍ର ପତ୍ନୀ ଯଦି ବନ୍ଧ୍ୟା ହୁଏ ତେବେ ଦ୍ୱିତୀୟ ପତ୍ନୀ ଗ୍ରହଣ କରିବାରେ କୌଣସି ପ୍ରତିବନ୍ଧକ ନଥାଏ । ବର୍ଷର ପ୍ରାୟ ସବୁ ସମୟରେ ବିବାହ ଅନୁଷ୍ଠିତ ହୋଇଥାଏ । ଜୁଆଙ୍ଗ ସମାଜରେ ସ୍ଥିରୀକୃତ ବିବାହ ସଂଖ୍ୟା କମ୍ ଦେଖାଯାଏ । ମକର, ରଜ କିମ୍ବା ଅନ୍ୟାନ୍ୟ ପର୍ବପର୍ବାଣିମାନଙ୍କରେ ପୁଅ ଝିଅଙ୍କ ମଧ୍ୟରେ ପ୍ରେମ ଆରଂଭ ହୁଏ । ପ୍ରେମରୁ



► ବିବାହ ବେଦୀରେ ବର, କନ୍ୟା



▶ ବିବାହ ବେଦୀରେ ବର, କନ୍ୟା

ଭାବ ବିନିମୟ ଓ ମନ ଦିଆନିଆ ଚାଲେ ଏବଂ ଶେଷରେ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହୁଅନ୍ତି । ଅନେକ ସମୟରେ ପ୍ରେମ କରୁଥିବା ଯୁବକ-ଯୁବତୀଙ୍କ ବିବାହ ପାଇଁ ନିଜ ସମାଜ କିମ୍ବା ଗାଁ ପ୍ରତିବନ୍ଧକ ସାଜିଥାଏ । ଏ କ୍ଷେତ୍ରରେ ସଂପୃକ୍ତ ଯୁବକ-ଯୁବତୀ ସାଥୀ ହୋଇ ଗାଁରୁ କେଉଁଆଡେ ପଳାୟନ କରିଥାନ୍ତି । ସଂପୃକ୍ତ ଯୁବକ ତାର ପ୍ରେମିକାକୁ ଅପହରଣ କରି ନିଜ ଗାଁଠାରୁ ବହୁ ଦୂରକୁ ଚାଲି ଯାଏ । ଏଭଳି ଅପହରଣ ବିବାହ *( marriage by capture)* ଜୁଆଙ୍ଗ ସମାଜରେ ବହୁମାତ୍ରାରେ ଦେଖିବାକୁ ମିଳେ । ତେବେ ଗୋଟିଏ ଗାଁର ଯୁବକ, ଯୁବତୀ ଏବଂ ସମାନ ଗୋତ୍ରର ଯୁବକ ଯୁବତୀଙ୍କ ମଧ୍ୟରେ ବିବାହ ଅନୁଷ୍ଠିତ ହୋଇ ନଥାଏ । ସ୍ଥିରୀକୃତ ବିବାହ ପାଇଁ ବରପକ୍ଷଙ୍କୁ ବହୁତ ଅର୍ଥ ଖର୍ଚ୍ଚ କରିବାକୁ ପଡିଥାଏ । ଏଣୁ ଅପହରଣ ବିବାହ ଜୁଆଙ୍ଗ ସମାଜରେ ଏକ ସହଜ ଏବଂ ଗ୍ରହଣୀୟ ବିବାହ ପ୍ରଥା ଭାବେ ପ୍ରଚଳିତ । ଏହି ଅପହରଣ ବିବାହ ବା **'ଡ଼ିଗର କନିଆ ବିଭା'** ଜୁଆଙ୍ଗ ସମାଜରେ ବେଶି ମାତ୍ରାରେ ଦେଖିବାକୁ ମିଳିଥାଏ ।

ଜୁଆଙ୍ଗ ସମାଜରେ ପୂର୍ବେ କନ୍ୟାସୁନା *(bride price)* ପ୍ରଥା ପ୍ରଚଳିତ ଥିଲା ଏବଂ ଏବେ

ମଧ୍ୟ ଏହା ବଳବତ୍ତର ରହିଛି । ବରପକ୍ଷ କନ୍ୟା ପକ୍ଷଙ୍କୁ କିଛି ଟଙ୍କା, ମଦ, କୁକୁଡା, ଧୂଆଁପତ୍ର ଆଦି ପ୍ରଦାନ କରିଥା'ନ୍ତି । ଧନୀ ପରିବାରର ଜୁଆଙ୍ଗ ବରମାନେ କନ୍ୟା ପକ୍ଷଙ୍କୁ ଛେଳି, ମେଣ୍ଢା କିମ୍ବା ଘୁଷୁରି ଆଦି ପ୍ରଦାନ କରିଥାନ୍ତି । ସାଧାରଣ ଗରିବ ଜୁଆଙ୍ଗ ବରପକ୍ଷ ଅତି କମ୍‌ରେ କିଛି ମଦ, ଧୂଆଁପତ୍ର ଓ କୁକୁଡା ଦେଇପାରିଲେ ବିବାହ ଅନୁଷ୍ଠିତ ହୋଇଥାଏ । ବରପକ୍ଷ ପ୍ରଦାନ କରିଥିବା କୁକୁଡା, ଛେଳି, ମେଣ୍ଢା ମାଂସରେ ଏକ ସମୂହ ଭୋଜିର ଆୟୋଜନ ହୋଇଥାଏ ।

ଜୁଆଙ୍ଗ ସମାଜରେ ବିଭିନ୍ନ ପ୍ରକାର ବିବାହ ଦେଖିବାକୁ ମିଳେ । ବିବାହ କରିବାକୁ ଥିବା କନ୍ୟାର ଗୁଣ, ପ୍ରକାର, ଚରିତ୍ର ଅନୁସାରେ ଜୁଆଙ୍ଗ ସମାଜରେ ବିଭିନ୍ନ ପ୍ରକାର ବିଭାଘର ଦେଖିବାକୁ ମିଳେ । ସେଗୁଡିକ ହେଲା-

୧. କମାଣ୍ଡରିଆ କନିଆ ବିଭା *(arranged marriage)*



ବିବାହ ବେଦୀରେ ବର, କନ୍ୟା

୨. ଟାଙ୍କେଇ ଓଟି ବିଭା *(arranged marriage)*

୩. ଡ଼ିଗର କନିଆ ବିଭା *( marriage by capture)*

୪. ମନମାନି ବିଭା *(love marriage)*

୫. ସୁରୁମ୍ କନିଆ ବିଭା *(marriage by elopement)*

୬. ଉଡୁଙ୍ଗ୍ କନିଆ ବିଭା *(marriage after the girl gets pregnant)*

୭. ଓ୍ୱାଡି କନିଆ ବିଭା *(child marriage)*

୮. ବୁର୍ହୀ କନିଆ ବିଭା *(widow re-marriage)*

୯. ଡାକି କନିଆ ବିଭା *(re-marriage of the divorced women)*

୧୦. ଘର ଜୋଇଁଆ *(son-in-law in house)*

୧୧. ହାଟୁଆ କନିଆ ବିଭା *(Hindu type of marriage)*



❀ ବର, କନ୍ୟାଙ୍କ ଗହଣରେ ଲେଖକ

## ୧. କମାଣ୍ଡରିଆ କନିଆ ବିଭା *(arranged marriage)*

ଏହି ପ୍ରକାର ବିବାହ ଉଭୟ ବର ଓ କନ୍ୟା ପରିବାରର ସଦସ୍ୟମାନଙ୍କ ଦ୍ୱାରା ପାରଂପରିକ ଭାବେ ସ୍ଥିର କରାଯାଇଥାଏ । ଏହି ବିବାହ ବେଳେ ପ୍ରଥମେ ବର ପିତା ଓ ବୟସ୍କ ଜ୍ଞାତି କୁଟୁମ୍ବ ମଧ୍ୟସ୍ଥି ଜରିଆରେ କନ୍ୟା ଘରକୁ ଯାଇ କନ୍ୟା ପିତାମାତାଙ୍କୁ ବିବାହ ପ୍ରସ୍ତାବ ଦେଇଥାନ୍ତି । ବିବାହରେ ପ୍ରମୁଖ ଭୂମିକା ତୁଲାଉଥିବା ମଧ୍ୟସ୍ଥିକୁ **କମାଣ୍ଡରିଆ** କହନ୍ତି । **କମାଣ୍ଡରିଆ** ମହାଶୟ ଉଭୟ ବର ଓ କନ୍ୟା ଘର ମଧ୍ୟରେ ଯୋଗସୂତ୍ର ରକ୍ଷା କରୁଥିବାରୁ ଏହି ବିବାହକୁ **କମାଣ୍ଡରିଆ କନିଆ ବିଭା** କହନ୍ତି ।

୨୦୧୩ ମସିହା ମାର୍ଚ୍ଚ ମାସ ୩୧ ତାରିଖର ଏକ ଗ୍ରୀଷ୍ମକାଳୀନ ସନ୍ଧ୍ୟା ଆମେ ବାଂଶପାଳ ବ୍ଲକ୍‌ର ଜୁଆଙ୍ଗବହୁଳ ତଳଚଂପେଇ ଗ୍ରାମରେ କଟାଇଥିଲୁ । ସେଦିନ ତଳଚଂପେଇ ଗ୍ରାମର ଘାସିଆ



▶ ପୁରୋହିତ ବର, କନ୍ୟାଙ୍କୁ ଆଶିର୍ବାଦ କରୁଛନ୍ତି

ଜୁଆଙ୍ଗଙ୍କର କନିଷ୍ଠ କନ୍ୟା ପ୍ରମିଳା ଜୁଆଙ୍ଗଙ୍କର ଉପରରାଇଡିହା ଗ୍ରାମର କାଶିଆ ଜୁଆଙ୍ଗଙ୍କ ଜ୍ୟେଷ୍ଠ ପୁତ୍ର ସନାତନ ଜୁଆଙ୍ଗଙ୍କ ସହ ଶୁଭ ପରିଣୟ କାର୍ଯ୍ୟକ୍ରମ ଥିଲା । ସନ୍ଧ୍ୟା ପୂର୍ବରୁ ଉପରରାଇଡିହା ଗ୍ରାମର ଅର୍ଥାତ୍ ବରପକ୍ଷ ଲୋକେ କନ୍ୟାକୁ ନେବା ପାଇଁ ତଳଚଂପେଇ ଗ୍ରାମରେ ପହଞ୍ଚି ସାରିଥା'ନ୍ତି । ବରପକ୍ଷରୁ **'କନ୍ୟାମୂଲ'** ବାବଦକୁ ୪ଟା କୁକୁଡା, ଦୁଇ ଡ଼ବା ମଦ (ହାଣ୍ଡିଆ), ୬ ବୋତଲ ମହୁଲି ମଦ, ତିନି କାଣ୍ଡି ଚାଉଳ, ଧାନ, ପନିପରିବା ଧରି କନ୍ୟା ଗ୍ରାମରେ ପହଞ୍ଚିବା ପରେ ସନ୍ଧ୍ୟାରୁ ବିଳମ୍ବିତ ରାତି ପର୍ଯ୍ୟନ୍ତ ଭୋଜିଭାତର ଆୟୋଜନ ହୋଇଥିଲା । ଆମେ ବି ସେମାନଙ୍କ ଭୋଜିରେ ସାମିଲ୍ ହୋଇଥିଲୁ । ଭୋଜି ଶେଷ ହେବା ପରେ ସେହି ରାତିରେ ହିଁ ବରପକ୍ଷ କନ୍ୟାକୁ ଧରି ବରର ଗ୍ରାମ ଉପରରାଇଡିହାକୁ ଆସିଥିଲେ । ଉପରରାଇଡିହାରେ ପର ଦିନ ଅର୍ଥାତ୍ ଏପ୍ରିଲ୍ ୧ ତାରିଖ (ଉତ୍କଳ ଦିବସ) ଦିନ ବିବାହ କାର୍ଯ୍ୟ ସଂପନ୍ନ ହୋଇଥିଲା । ଏପ୍ରିଲ୍ ୧ ତାରିଖ ସକାଳ ୮ଟା ବେଳକୁ ବିବାହ କାର୍ଯ୍ୟ ଆରମ୍ଭ ହୋଇ ଦିନ ଦୁଇଟା ବେଳକୁ ଶେଷ ହୋଇଥିଲା । ବିବାହ କାର୍ଯ୍ୟ ପରେ ବରଘର ପକ୍ଷରୁ ଏକ ସମୂହ ଭୋଜିର ବ୍ୟବସ୍ଥା ହୋଇଥିଲା । ବର ଗ୍ରାମବାସୀ ଓ କନ୍ୟା ସାଥୀରେ ଆସିଥିବା କୁଣିଆମାନେ ପଙ୍‌କ୍ତି ଭୋଜନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବା ସହ ଟିକେଟିକେ ମଦପାଣି ନେଇଥିଲେ । ଏହାପରେ ସଞ୍ଜ ବୁଡିବା ଆରମ୍ଭ ହେବାରୁ ଗ୍ରାମରେ ସେଲାନ୍, କଙ୍ଗେର୍‌ମାନେ ଚାଙ୍ଗୁ ନାଚ ଓ ଗୀତର ଆସର ଜମେଇଥିଲେ । ବିବାହର ଷଷ୍ଠ ଦିନରେ **'କାଦଘାଟି'** ପର୍ବ ପାଳିତ ହୋଇଥିଲା ।

**ବିବାହ ବର୍ଣ୍ଣନା:** ରୀତି ଅନୁସାରେ ପ୍ରଥମେ ପୁଅ ଘର ପକ୍ଷରୁ ପୁଅର ପିତା, ଜ୍ଞାତିକୁଟୁମ୍ବ ଏବଂ ମଧ୍ୟସ୍ଥି (କମାଣ୍ଡରିଆ) ଝିଅ ଘରକୁ ପ୍ରସ୍ତାବ ନେଇ ଯାଆନ୍ତି । **'କମାଣ୍ଡରିଆ'**ଙ୍କ ମୁଖ୍ୟ ଭୂମିକା ହେଉଛି, ସେ ବରଘର ପକ୍ଷରୁ କନ୍ୟା ଘରକୁ ପ୍ରସ୍ତାବ ନେଇ ଯାଆନ୍ତି । ଏମାନେ କନ୍ୟା ଗ୍ରାମର ମଣ୍ଡଘରେ ଅତିଥି ହୋଇଥା'ନ୍ତି । କନ୍ୟାଗ୍ରାମବାସୀ ଓ ବରପକ୍ଷଙ୍କ ମଧ୍ୟରେ ମଣ୍ଡଘରେ ଆପୋଷ ଆଲୋଚନା ହୋଇଥାଏ । ବରଘରର ସାମାଜିକ ପ୍ରତିଷ୍ଠା, ବରର ରୂପ, ଗୁଣ ସଂପର୍କରେ କମାଣ୍ଡରିଆ କନ୍ୟା ଘରପକ୍ଷଙ୍କୁ ବର୍ଣ୍ଣନା କରନ୍ତି ଏବଂ ବିଭାଘରର ଘଟସୂତ୍ର ଭାବେ କାର୍ଯ୍ୟ କରନ୍ତି । ଯଦି କନ୍ୟାଘର ପକ୍ଷରୁ ଉକ୍ତ ପ୍ରସ୍ତାବରେ ସମ୍ମତି ପ୍ରକାଶ କରାଯାଏ, ତେବେ ଏହି ବିଭାଘର ଗୃହୀତ ହେଲା ବୋଲି ଧରି ନିଆଯାଏ । ପ୍ରଥମ ଥର କନ୍ୟା ଦେଖା କାମ ସରିଗଲା ପରେ ପୁନର୍ବାର ବରଘର ପକ୍ଷରୁ କନ୍ୟା ଗ୍ରାମକୁ ଯାଇଥାନ୍ତି । କମାଣ୍ଡରିଆ ସହିତ ବରଘରର ଲୋକେ କନ୍ୟା ଘରକୁ ସାଥୀରେ ନଡ଼ିଆ, କଦଳୀ, ଚାଉଳ, ମଦ, କୁକୁଡା, ଛେଳି, ମେଣ୍ଢା ଓ ଟଙ୍କା ଧରି ଆସନ୍ତି । ଏହାକୁ **'କନ୍ୟା ମୂଲ'** କୁହାଯାଏ । କନ୍ୟା ଘରେ ବିବାହର ଦିନ ଧାର୍ଯ୍ୟ କରାଯାଏ । ଏହା ପରେ ବରଘର ପକ୍ଷରୁ ଆସିଥିବା ଏହି କନ୍ୟାମୂଲକୁ କନ୍ୟା ଘର ପକ୍ଷରୁ ଗ୍ରହଣ କରାଯାଏ । ବିବାହ ପ୍ରସ୍ତାବ ସ୍ଥିର ହେବା ପରେ ବିବାହର ଦିନ ଧାର୍ଯ୍ୟ ହୁଏ । ବିଭାଘର ପୂର୍ବ ଦିନ ବର ସହିତ ବରଘର ପକ୍ଷରୁ

ବରଯାତ୍ରୀମାନେ କନ୍ୟା ଘରକୁ ଆସନ୍ତି । କନ୍ୟା ଘରେ ଗାଁର ମଣ୍ଡଘର ନିକଟରେ ଏକ ଅସ୍ଥାୟୀ ବେଦୀ ପ୍ରସ୍ତୁତ ହୋଇଥାଏ । ଏଠାରେ ବରଘର ପକ୍ଷରୁ ଆସିଥିବା ଚାଉଳ, ପନିପରିବା, କୁକୁଡା କିମ୍ବା ଛେଳି ରୋଷେଇ ହୁଏ । ବରପକ୍ଷ ଓ କନ୍ୟାଗ୍ରାମବାସୀ ମିଳିତ ଭାବେ ଭୋଜିଭାତ ଖାଇ ବରଘରୁ ଆସିଥିବା ମଦ ପିଇ ନାଚଗୀତର ଆସର ଜମେଇଥା'ନ୍ତି । ଏ ସମସ୍ତ କାର୍ଯ୍ୟକ୍ରମ ଶେଷହେବା ପରେ ବରପକ୍ଷ କନ୍ୟାକୁ ସାଥୀରେ ଧରି ବର ଗାଁକୁ ଫେରନ୍ତି । ପରଦିନ ବର ଗାଁରେ ବିବାହ କାର୍ଯ୍ୟ ଯଥା ବିଧି ମୁତାବକ ଅନୁଷ୍ଠିତ ହୋଇଥାଏ ।

ଗ୍ରାମର ବୟସ୍କ ବ୍ୟକ୍ତିମାନେ ବିବାହ କାର୍ଯ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ବର ପକ୍ଷର ବୟସ୍କ ବ୍ୟକ୍ତିମାନେ ପ୍ରସ୍ତାବ ନେଇ କନ୍ୟା ଗ୍ରାମକୁ ଯାଆନ୍ତି । ଏମାନେ କନ୍ୟା ଗୃହର ଦ୍ୱାରଦେଶରେ ଗୋଟିଏ ବାଡି ରଖିଦେଇ ଆସନ୍ତି । ସଂପର୍କ ସ୍ଥିର ହେଲାପରେ କୌଣସି ଦିନ ବରପକ୍ଷରୁ ଦୁଇତିନି ଜଣ ବୟସ୍କ ବ୍ୟକ୍ତି କନ୍ୟାର ଗ୍ରାମକୁ ଯାଇ ଗ୍ରାମଶିରିଙ୍କ ନିକଟରେ ଭୋଗବନ୍ଦୀ କରନ୍ତି । ଏହାପରେ କନ୍ୟା ଗ୍ରାମର ବୟସ୍କ ଲୋକମାନଙ୍କ ସହ ବସି ବିବାହର ଦିନ ଧାର୍ଯ୍ୟ କରାଯାଇଥାଏ । ନିର୍ଦ୍ଧାରିତ ଦିନ ଧାନ, ଲୁଗା, ମଦ, କୁକୁଡା, ଛେଳି, ଚାଉଳ ଧରି **କମାଣ୍ଡରିଆ (ମଧ୍ୟସ୍ଥି)** ସହିତ ବୟସ୍କ ଲୋକମାନେ ପୁନର୍ବାର କନ୍ୟା ଗ୍ରାମକୁ ଯାଇ କନ୍ୟାକୁ ବର ଗାଁକୁ ନେଇ ଆସନ୍ତି । ବିବାହ ବର ଗାଁରେ ହୋଇଥାଏ । ସାଧାରଣତଃ, କନ୍ୟାକୁ ବିଦାୟ ଦେବା ପାଇଁ କନ୍ୟା ଗ୍ରାମରୁ ବୁଢା, ବୁଢି, ଯୁବକ, ଯୁବତୀ ସମେତ ଶତାଧିକ ଲୋକ ଆସିଥାନ୍ତି । ବରପକ୍ଷରୁ ସେମାନଙ୍କୁ ଗାଁ ମୁଣ୍ଡରେ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଏ । କନ୍ୟା ବର ଘର ନିକଟରେ ପହଞ୍ଚିଲା ପରେ ଦ୍ୱାରଦେଶରେ କନ୍ୟାକୁ ବନ୍ଦାପନା କରାଯାଏ । ବର ଘରୁ ଯାଇଥିବା ଚାଉଳରେ କନ୍ୟାଘରେ ପ୍ରସ୍ତୁତ ହୋଇଥିବା ପିଠାକୁ ଛୋଟଛୋଟ କରି କଟାଯାଏ । ଗୋଟିଏ କୁକୁଡାର ମାଂସକୁ ଭାଜି ଛୋଟଛୋଟ ଖଣ୍ଡ କରାଯାଏ । କୁକୁଡା ମାଂସ, ପିଠା ସହିତ ମହୁଲି ପ୍ରଦାନ କରି ଗ୍ରାମଶିରିଙ୍କୁ ସନ୍ତୁଷ୍ଟ କରାଯାଏ । ଗ୍ରାମଶିରିଙ୍କ ନିକଟରେ ଭୋଗ ଲଗାଯିବା ପରେ ଏହି ମହୁଲିକୁ ଉପସ୍ଥିତ ସମସ୍ତଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଏହାକୁ 'ଜୁରି' କୁହାଯାଏ । ଏହି ଅବସରରେ ଗାଁରେ ସେଲାନ୍, କଂଗେର୍‌ମାନେ ମଦ ପିଇ ଚାଙ୍ଗୁ ଧରି ନାଚଗୀତର ଆସର ଜମେଇଥାନ୍ତି । ବିବାହଉତ୍ସବ ସମୟରେ ଜୁଆଙ୍ଗ ଗ୍ରାମରେ ଚାଙ୍ଗୁ ନାଚର ବିଶେଷ ଆସର ଜମେ । ଏହି ସମୟରେ ସାତ ଦିନ ସାତ ରାତି ଧରି ଚାଙ୍ଗୁ ନାଚ ଚାଲେ । ଗାଁର ପୂଜକ (ନାଗମ୍) ଚାଙ୍ଗୁ ନାଚର ଘୋଷଣା କରିଥାନ୍ତି ।ଉଭୟ କନ୍ୟା ଓ ବର ଗ୍ରାମର ଯୁବକ, ଯୁବତୀମାନେ ଏକତ୍ର ରାତିସାରା ଉଜାଗର ରହି ଚାଙ୍ଗୁନାଚ କରିଥାନ୍ତି । କୁକୁଡା କିମ୍ବା ଛେଳି ମାଂସ, ମହୁଲି, ହାଣ୍ଡିଆ ପିଇ କଙ୍ଗେର୍, ସେଲାନ୍‌ମାନେ ନାଚଗୀତର ଆସର ଜମେଇଥାନ୍ତି । ଏହାପରେ କନ୍ୟା ଗ୍ରାମରୁ ଆସିଥିବା ଯୁବକ, ଯୁବତୀମାନେ

ନିଜ ଗ୍ରାମକୁ ଫେରି ଯାଆନ୍ତି ।

ବିବାହର ଦ୍ୱିତୀୟ ଦିନରେ ବର, କନ୍ୟାଙ୍କ ପାଇଁ ଗୋଟିଏ ହାଣ୍ଡିରେ ଗରମ ପାଣି କରାଯାଏ । ଉଭୟ ବର, କନ୍ୟାଙ୍କୁ ଏହି ଗରମ ପାଣିରେ ସ୍ନାନ କରାଯାଏ । ସ୍ନାନ କରାଯିବା ସମୟରେ କନ୍ୟାଟିକୁ ଉଲଗ୍ନ କରାଯାଇ ତା'ର ସତୀତ୍ୱ ପରୀକ୍ଷା କରାଯାଏ । ଏହି କାମ ବରର ସଂପର୍କୀୟ ମହିଳାମାନେ କରନ୍ତି । ଏହାପରେ ଉଭୟଙ୍କୁ ନୂତନ ବସ୍ତ୍ର ପରିଧାନ କରାଯାଏ । ବିବାହ କାଳରେ ବରକନ୍ୟା ଆମିଷ ଭୋଜନ କରନ୍ତି ନାହିଁ ।

ତୃତୀୟ ଦିନ **କାଦଘାଟି** ପର୍ବ ଆୟୋଜନ ହୋଇଥାଏ । ଅନେକ ବିବାହରେ 'କାଦଘାଟି' ପର୍ବ ପଞ୍ଚମ କିମ୍ବା ଷଷ୍ଠ ଦିନରେ ମଧ୍ୟ ପାଳିତ ହୋଇଥାଏ । ହାଣ୍ଡିଆ ମଦ ପଚିବା ଉପରେ କାଦଘାଟି ପର୍ବ ପାଳନର ଦିନ ନିର୍ଦ୍ଧାରଣ କରାଯାଇଥାଏ । ଉପରରାଇଡିହା ଗ୍ରାମର କାଶିଆ ଜୁଆଙ୍ଗଙ୍କ ପୁତ୍ର ସନାତନ ଜୁଆଙ୍ଗଙ୍କ ବିବାହରେ ଷଷ୍ଠ ଦିନରେ କାଦଘାଟି ଖେଳ କରାଯାଇଥିଲା । କାରଣ ଉପରରାଇଡିହା ଗ୍ରାମରେ ପ୍ରସ୍ତୁତ କରାଯାଇଥିବା ହାଣ୍ଡିଆ ପଚିବାକୁ ଛଅ ଦିନ ସମୟ ଲାଗିଯାଇଥିଲା । ସବୁଠୁ ବଡ଼ କଥା ହେଉଛି, କାଦଘାଟି ପର୍ବ ପାଳନ ହେବା ପର୍ଯ୍ୟନ୍ତ ଚତୁର୍ଥୀ ପିଣ୍ଡ ପଡି ନଥିଲା । ବର ଓ କନ୍ୟା ଅଲଗା ଅଲଗା ହୋଇ ରହିଥିଲେ ।

**କାଦଘାଟି** ପର୍ବ ପାଳନ ଅବସରରେ ଗ୍ରାମର ଯୁବତୀମାନେ କନ୍ୟାକୁ ନେଇ ନିକଟସ୍ଥ ନଦୀକୁ ଯାଆନ୍ତି । ସେହି ସମୟରେ କନ୍ୟାଟି ନିଜ ମୁଣ୍ଡରେ ଗୋଟିଏ ଢାଳ ମଧ୍ୟରେ କେତୋଟି ବାସଙ୍ଗ ଫୁଲ ବହନ କରିଥାଏ । ନଦୀ କୂଳରେ ପୂଜା ଶେଷ ପରେ କନ୍ୟା ଓ ସାଥୀରେ ଯାଇଥିବା ଯୁବତୀମାନେ ସ୍ନାନ ସାରି ଗାଁକୁ ଫେରନ୍ତି । ଫେରିବା ରାସ୍ତାରେ ବରର ଢେଢେବାପା କିମ୍ବା ବଡ଼ଭାଇ ବାବାଜୀ ବେଶ ଧାରଣ କରି କୌଣସି ସ୍ଥାନରେ ବାଟ ଓଗାଳି ଶୋଇଥାନ୍ତି । ବାଟ ଛାଡିବା ପାଇଁ ସେହି ବାବାଜୀ ବେଶଧାରୀ ବଡ଼ଭାଇ କିମ୍ବା ଢେଢେବାପା ଯୁବତୀଙ୍କଠାରୁ କିଛି ଚାଉଳ, ପଇସା ଗ୍ରହଣ କରିଥାନ୍ତି । ନଦୀରୁ ସ୍ନାନ ସାରି କନ୍ୟା ଗୃହରେ ପହଞ୍ଚିବା ପରେ ବରର ସଂପର୍କୀୟ କିଛି ଯୁବକ କନ୍ୟା ଉପରକୁ କଞ୍ଚା ହଳଦି ଫିଙ୍ଗନ୍ତି । ଏତିକିବେଳେ କନ୍ୟା ସାଥୀରେ ଥିବା ଅନ୍ୟ ଯୁବତୀ ଓ ସ୍ତ୍ରୀ ଲୋକମାନେ ଏହି ହଳଦି ଯେପରି କନ୍ୟା ଉପରେ ନ ପଡିପାରିବ ତାହାକୁ ରୋକିବାକୁ ଆପ୍ରାଣ ଉଦ୍ୟମ କରିଥାନ୍ତି । ଏହାପରେ ବର, କନ୍ୟାଙ୍କ ସମେତ ଗ୍ରାମର ସମସ୍ତ ଯୁବକ, ଯୁବତୀ, ବୃଦ୍ଧ, ବୃଦ୍ଧାମାନେ କାଦୁଅରେ ଖେଳନ୍ତି । ବରଘର ନିକଟରେ ପ୍ରସ୍ତୁତ ହୋଇଥିବା କାଦୁଅକୁ ପରସ୍ପର ପରସ୍ପରର ଦେହରେ ବୋଳିହୋଇ ଜୁଆଙ୍ଗମାନେ ବେଶ୍ ମଜା ଉଠାଇଥାନ୍ତି । ଏହି ଖେଳ କିଛି ସମୟ ଧରି ଚାଲେ । ଏହାପରେ ବରକନ୍ୟା ଓ କାଦୁଅ ଖେଳିଥିବା ସମସ୍ତ ଯୁବକ, ଯୁବତୀମାନେ ନିକଟସ୍ଥ ଝରଣାରେ ଗାଧୋଇ ଗାଁକୁ ଫେରନ୍ତି ।

କାଦଘାଟି ପର୍ବ ଶେଷ ହୋଇଯିବା ପରେ ସମସ୍ତେ ଏକତ୍ର ଭୋଜନ କରନ୍ତି । ଅପରାହ୍ନରେ

ପ୍ରଥମେ ବରର କକା, ବଡୁ ଆଦି ପୁରୁଷମାନେ ଚାଙ୍ଗୁନାଚ କରନ୍ତି । ଖୁଡୀ ଓ ବଡ଼ମା'ଙ୍କ ସମେତ ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ନୃତ୍ୟ ପରିବେଷଣ କରନ୍ତି । ସେମାନେ ବରକନ୍ୟାଙ୍କୁ କାଖକରି ନାଚନ୍ତି । ଏହି ସ୍ତ୍ରୀଲୋକମାନେ ନିଜନିଜର ପାଉଣା ଦାବି କରନ୍ତି ଏବଂ ବର ପକ୍ଷରୁ ତାଙ୍କୁ ଉଚିତ୍ ପାଉଣା ପ୍ରଦାନ କରାଯାଏ । ଏହାପରେ ଗାଁର ଯୁବକ, ଯୁବତୀମାନେ ନିୟମିତ ଚାଙ୍ଗୁ ନାଚ କରନ୍ତି । ଏହି ସମୟରେ ଯୁବକ, ଯୁବତୀମାନେ ହାଣ୍ଡିର କଳା, ପାଉଁଶ, କାଦୁଅ ଆଦି ବୋଳାବୋଳି ହୁଅନ୍ତି ।

ଚତୁର୍ଥ ଦିନ ଗ୍ରାମର ଲୋକମାନେ ସ୍ନାନ ସାରି ବର ପକ୍ଷରୁ ପ୍ରଦାନ କରାଯାଇଥିବା ଭୋଜନ ଗ୍ରହଣ କରିଥାନ୍ତି । ଏହାପରେ ବର, କନ୍ୟା ମିଳିତ ଭାବେ କନ୍ୟା ଘରକୁ ଗମନ କରିଥା'ନ୍ତି । କନ୍ୟାଘରେ ହିଁ ଚତୁର୍ଥୀ ପିଣ୍ଡ ପଡିଥାଏ । ଏଠାରେ ମନେ ରଖିବାକୁ ହେବ, ବରଘରେ 'କାଦଘାଟି' ପର୍ବ ପାଳନ କରାଯିବା ପରେ ହିଁ ଚତୁର୍ଥୀ ପିଣ୍ଡ ପଡିଥାଏ । କନ୍ୟା ଗୃହରେ ଉଭୟ ଗ୍ରାମର ଲୋକମାନେ ବସିଥିବା ସମୟରେ କନ୍ୟାମୂଲ *(bride price)* ଦାନ କରାଯାଏ । କନ୍ୟାମୂଲ କହିଲେ କିଛି ଧାନ, କିଛି ଚାଉଳ, ଲୁଗା, କୁକୁଡା, ମଦ ଓ ଅଳ୍ପ କିଛି ଟଙ୍କାକୁ ବୁଝାଇଥାଏ । ବରଘର ଧନୀ ହୋଇଥିଲେ କନ୍ୟାମୂଲ ବାବଦକୁ ଛେଳି, ମେଣ୍ଢା ପ୍ରଦାନ କରିଥା'ନ୍ତି । କନ୍ୟାପକ୍ଷ ବର ପକ୍ଷର ଲୋକମାନଙ୍କୁ ଭୋଜନ ଦ୍ୱାରା ଆପ୍ୟାୟିତ କରିଥାନ୍ତି ଏବଂ ରାତିରେ ଚାଙ୍ଗୁନାଚ ହୋଇଥାଏ । ପରଦିନ ବର ଓ କନ୍ୟା ପୁନର୍ବାର ବର ଗ୍ରାମକୁ ଫେରି ଆସନ୍ତି ।

ବିବାହ ପରେ ବରଟି ନିଜ ଗାଁର 'ମଜାଙ୍ଗ୍' ବା 'ମଣ୍ଡଘର'ରୁ ସଙ୍ଗଛଡା ହୋଇଥାଏ । ଏହି ଅବସରରେ ବରଟି ଅନ୍ୟ ଅବିବାହିତ ଯୁବକ, ଯୁବତୀଙ୍କୁ ପିଠା, ଧୂଆଁପତ୍ର, ମସିଣା, ମଦ, କୁକୁଡା ଦେଇ ସଙ୍ଗଛଡା ହେବାର ଘୋଷଣା କରିଥାଏ । ଏଥିନେଇ ଗାଁର ନାଗମ୍ ମଣ୍ଡଘରେ ରୀତି ମୁତାବକ ପୂଜାର୍ଚ୍ଚନା କରି ସଂପୃକ୍ତ ବିବାହିତ ଯୁବକଙ୍କୁ ମଣ୍ଡଘରରୁ ବିଦାୟ ଦିଅନ୍ତି । ଏହା ପରଠାରୁ ଯୁବକଟି ଆଉ ମଣ୍ଡଘରେ ନ ଶୋଇ ନିଜ ଘରେ ନବବିବାହିତା ପତ୍ନୀଙ୍କ ସହ ରାତ୍ରୀଯାପନ କରିଥା'ନ୍ତି ।

ବିବାହ କାର୍ଯ୍ୟ ଶେଷ ହୋଇଯିବା ପରେ ଉଭୟ ବର ଓ କନ୍ୟା ପକ୍ଷରୁ କମାଣ୍ଡରିଆ (ମଧ୍ୟସ୍ଥି)କୁ କିଛି ପାଉଣା ପ୍ରଦାନ କରାଯାଇଥାଏ । ଏହାକୁ **'କମାଣ୍ଡରିଆ ମୂଲ'** କୁହାଯାଏ । ବର, କନ୍ୟା ଗାଁକୁ ବୁଲି ଯାଇଥିବାବେଳେ ବରଘର ପକ୍ଷରୁ କନ୍ୟା ଗ୍ରାମର ବାରଭାଇଙ୍କୁ ଶାଢି ପ୍ରଦାନ କରାଯାଇଥାଏ । ଏହାବ୍ୟତୀତ କନ୍ୟାର ବାପା, ମା', ଭାଇ, ଭଉଣୀ ଓ ଅନ୍ୟାନ୍ୟ ସଂପର୍କୀୟ ସଦସ୍ୟମାନଙ୍କୁ ଶାଢି ପ୍ରଦାନ କରାଯାଇଥାଏ । ଏହାକୁ **'ଗାଁ ଶାଢି'** କୁହାଯାଏ ।

ଚତୁର୍ଥୀ ପିଣ୍ଡ କାର୍ଯ୍ୟକ୍ରମ କନ୍ୟା ଘରେ ଅନୁଷ୍ଠିତ ହୋଇଥାଏ । ବର ଗାଁରେ ବିବାହ କାର୍ଯ୍ୟ ଓ କାଦଘାଟି ପର୍ବ ଶେଷ ହେବା ପରେ ବର, କନ୍ୟା ଓ ବର ଗ୍ରାମର କିଛି ମୁରବୀ ଶ୍ରେଣୀର ବ୍ୟକ୍ତିବିଶେଷ କନ୍ୟା ଗାଁକୁ ବୁଲି ଯାଆନ୍ତି । କନ୍ୟା ଗାଁରେ ଚତୁର୍ଥୀ ପିଣ୍ଡ କାର୍ଯ୍ୟକ୍ରମ ହେବା ପରେ ବର, କନ୍ୟାଙ୍କର ମିଳନ ହୋଇଥାଏ । ଏହି ଚତୁର୍ଥୀ ପର୍ବ ବିବାହର ଠିକ୍ ଚତୁର୍ଥ ଦିନରେ ହେବ

ବୋଲି ସେମିତି ନିର୍ଦ୍ଦିଷ୍ଟ ନିୟମ ନଥାଏ । କାଦଘାଟି ପର୍ବ ପାଳନ ହେବାପରେ ଯାଇ ଏହା ଅନୁଷ୍ଠିତ ହୋଇଥାଏ । ଯଦି ବିବାହର ପଞ୍ଚମ ଦିନରେ କାଦଘାଟି ପର୍ବ ପାଳନ ହୋଇଥାଏ ତେବେ ଏହାର ପରଦିନ କନ୍ୟା ଗ୍ରାମରେ ଚତୁର୍ଥୀ ପର୍ବ ପାଳନ ହୋଇଥାଏ । ଯଦି କାଦଘାଟି ପର୍ବ ଷଷ୍ଠ ଦିନରେ ହୋଇଥାଏ, ତେବେ ସପ୍ତମ ଦିନରେ ଚତୁର୍ଥୀ ପିଣ୍ଡ ପାଳନ କରାଯାଇଥାଏ । ସୌଭାଗ୍ୟବଶତଃ ଯଦି ତୃତୀୟ ଦିନ କାଦଘାଟି ପର୍ବ ପାଳିତ ହୋଇଯାଏ, ତେବେ ଠିକ୍ ଚତୁର୍ଥ ଦିନ ଚତୁର୍ଥୀ ପର୍ବ ପାଳିତ ହୋଇଥାଏ ।

**ବିବାହ ଗୀତ:** ବିବାହ ସମୟରେ ପ୍ରଥମେ ଯୁବକମାନେ ତାଙ୍କୁ ବଢେଇ ଗୀତ ବୋଲିବା ଆରଂଭ କରନ୍ତି । ଗୀତଛଳରେ ଯୁବକମାନେ ଯୁବତୀମାନଙ୍କୁ ପ୍ରଶ୍ନ କରନ୍ତି ଏବଂ ଯୁବତୀମାନେ ଯୁବକମାନଙ୍କ ପ୍ରଶ୍ନର ଉତ୍ତର ଗୀତ ଛଳରେ ପ୍ରଦାନ କରିଥାନ୍ତି । ବିବାହ ଦିନ ବରଘର ଗାଁର ଯୁବକ, ଯୁବତୀମାନେ ନିମ୍ନମତେ ଗୀତ ବୋଲିଥାନ୍ତି ।

**ଗୀତ ନଂ୧**

**କଙ୍ଗେର୍ (ଯୁବକ)**

କୁକୁଲ ସେଣେଲାନ୍ (ସେଲାନ୍) ସେଙ୍ଗାତାର୍‌କୁ
ଦୋବାଗୁଡିଆ ଲବଣସୁର୍‌ତେ ଗାସିଂତେ ବାଆନାର୍‌କୁ
ବାର୍ ଦିନ୍‌ତେ ବାରପୁଟୁଳା କିମାତାର୍‌କୁ
ବାରାଭାଇ କାକାମ୍ କିତେ ଜିଙ୍ଗା ତାରତେ

**ସେଲାନ୍ (ଯୁବତୀ)**

କୁକୁଲ କମ୍‌ଙ୍ଗେର (କଙ୍ଗେର୍) ବାତୁଙ୍ଗେ କୁ
ଉଆ ବାଚୁରିଲୋ ଯିବା ତାଣ୍ଡକୁ
ଚାଙ୍ଗୁ ନାଟ ଯଜ ବାଆନାର୍‌କୁ

**କଙ୍ଗେର୍ (ଯୁବକ)**

କୁକୁଲ ସେଣେଲାନ୍ (ସେଲାନ୍) କେଢେତାର୍‌କୁ
ଗାସିଂ ତେ କେଜେ ଇଞ୍ଜ୍ୟାମ୍ ବାତୁଙ୍ଗେକୁ

**ସେଲାନ୍ (ଯୁବତୀ)**

କୁକୁଲ କମ୍‌ଙ୍ଗେର (କଙ୍ଗେର୍) ଜିଙ୍ଗାନ୍‌ସୁକୁ
ବାର ଦିନ୍‌ତେ ତେର ପୁଟୁଳା ସବ୍‌ତେ ସୁଙ୍କୁ

**ଭାବାର୍ଥ:** ଯୁବକଟି ତା' ପ୍ରେମିକାକୁ କହୁଛି ଚାଲ ଫୁଲ ତୋଳିବାକୁ ବଣକୁ ଯିବା । ଭୋକ ହେବ ବୋଲି ସାଥୀରେ ବାରଦିନର ଖାଦ୍ୟ ନେଇକରି ଯିବା । ତୁ ମୋ' ସାଥୀରେ ଫୁଲ ତୋଳିଯିବା ପୂର୍ବରୁ ତୋ' ଭାଇମାନଙ୍କୁ ଟିକେ ପଚାରି ଆ । ଯୁବତୀଟି ଯୁବକର ଏହି ଆହ୍ୱାନକୁ ଗ୍ରହଣ କରିବା ସହିତ କରି ଫୁଲ ତୋଳିବାକୁ ଜଙ୍ଗଲକୁ ଯିବାକୁ ଇଛା ପ୍ରକାଶ କରୁଛି । ଶେଷରେ ଦୁହେଁ ଫୁଲ ତୋଳି ଘରକୁ ଫେରୁଛନ୍ତି । ଏଠାରେ 'ଫୁଲ ତୋଳିବା' କାର୍ଯ୍ୟକୁ ଏକ ପ୍ରତୀକ ଭାବେ ବ୍ୟବହାର କରାଯାଇଛି । ଅର୍ଥାତ୍ ଯୁବତୀଟି ନିଜକୁ ଫୁଲ ମନେକରି ତାକୁ ତୋଳିନେବାକୁ ତା'ର ପ୍ରେମିକ ପୁରୁଷକୁ ଆହ୍ୱାନ କରୁଛି ।

**ଗୀତ ନଂ୨**

କନ୍ୟାଘରୁ ବର ଫେରିବା ସମୟରେ ଯୁବକ, ଯୁବତୀମାନେ ଏହି ଗୀତ ବୋଲି ନାଚଗୀତର ଆସର ଜମେଇଥା'ନ୍ତି ।

> କାଜେଁ ଲାଗ୍ ଟେଲେଜ ଟେଜାନ୍, କାଜେଲାଗ ଟେଲେଜ୍ ଟେଜାନ୍
> ଆଜିରତେ ଡ଼ିଞ୍ଜଡ଼ିଞ୍ଜ ଦେନା ମିଚରେ କଲେଜ ଲେଜାନ୍
> ସୁକୁଡାଗ୍ ପାଉଗାମ୍, ସୁକୁଡାଗ୍ ପାଉଗାମ
> ଆଜିରତେ ଡିଞ୍ଜଡିଞ୍ଜ ଜେନା ମିଚରେ ପାଉଗାମ
> ଗିମାରେ କଜେବ୍ କେ ଜେବ୍‌କେ, ଗିମାରେ କଜେବ୍ କେ ଜେବ୍‌କେ
> ଆଉ କିନାଟିତା ଅନଜ ସେଲାନ୍‌ଡାଏରେ ଜେକେ
> ଅଜାଙ୍ଗ୍ ଲେରାବ ସେକେ, ଅଜାଙ୍ଗ ଲେରାବ୍ ସେକେ
> କାନିଆଁ ତଣ ଉରୁକ୍ ଆଲୁଗାଁ ଲିରାବ୍ ସେକେ ।

**ଭାବାର୍ଥ:** ଟିକି ଚଢ଼େଇଟି କିଚିରିମିଚିରି ବୋବାଉଛି । ଝିଅଟି ତା' ନାନୀ ସହିତ କଳି କରୁଛି । ଭାଡି ଉପରୁ ଲାଉତୁମ୍ବାଟି ଖସିପଡିଲା । ଝିଅଟି ତା' ନାନୀ ସାଥୀରେ କଳି କରୁଛି । ଭିଣୋଇ ଚାହୁଁଛି । ବର୍ଷା ଝିପିଝିପି ହେଉଛି । ଘର ପଛପାଖେ ଯୁବତୀଟି କାନ୍ଦୁଛି । ବଣଆଳୁ ଗଦା ହୋଇଛି । ଯୁବତୀଟି ବାହାଘରିଆ ଭାତ ଖାଇ ଘର ଭିତରେ ଶୋଇ ରହିଛି ।

**୨. ଟାଙ୍କେଇ ଓଟି ବିଭା** *(arranged marriage)*

ଏହା ମଧ୍ୟ ଏକପ୍ରକାରର ସ୍ଥିରୀକୃତ ବିବାହ । ମାତ୍ର ଏହା ତୋଳାକନ୍ୟା ବିବାହ । ଏହି ଧରଣର ବିବାହ ଗରିବ ଜୁଆଙ୍ଗମାନଙ୍କ କ୍ଷେତ୍ରରେ ଦେଖାଯାଏ । ଏଥିରେ ବରଘର ପକ୍ଷରୁ ବରଯାତ୍ରୀ କନ୍ୟା ଘରକୁ ଆସି ନଥାନ୍ତି । ବରଘର ଗାଁର ରାଉଳିଆ, ନାଗମ୍‌ଙ୍କ ଦ୍ୱାରା ବିବାହ ଲଗ୍ନ ସ୍ଥିର ହୋଇଯିବାପରେ

କନ୍ୟାକୁ ସିଧାସଳଖ ବରଘରକୁ ଅଣାଯାଇ ବରଘରେ ବିବାହ କାର୍ଯ୍ୟ ସଂପନ୍ନ ହୋଇଥାଏ । ଏଥିରେ ଉଭୟ କନ୍ୟା ଓ ବରଘର ପକ୍ଷରୁ ଭୋଜିଭାତର ବ୍ୟବସ୍ଥା ହୋଇ ନଥାଏ । ବର ଘର ପକ୍ଷରୁ କନ୍ୟାଘରକୁ 'କନ୍ୟାମୂଲ' ମଧ୍ୟ ଦିଆଯାଇ ନଥାଏ । ଏହି ବିବାହ ଖୁବ୍ ନିରାଡମ୍ବର ସହକାରେ ପାଳିତ ହୋଇଥାଏ ଏବଂ ବିବାହ ସମୟରେ ଚାଙ୍ଗୁ ନାଚ ଓ ଗୀତର ଆସର ଜମି ନଥାଏ । ଯଥାସମ୍ଭବ କମ୍ ଖର୍ଚ୍ଚରେ ଏହି ବିବାହ ଅନୁଷ୍ଠିତ ହୋଇଥାଏ ।

**୩. ଡ଼ିଗର କନିଆ ବିଭା** *( marriage by capture)*

ଏହି ଧରଣର ବିବାହରେ ବର ପକ୍ଷ କନ୍ୟାକୁ ଅପହରଣ କରି ନେଇଯାଆନ୍ତି । କନ୍ୟାକୁ ହାଟରୁ କିମ୍ବା ମେଳାରୁ ଅପହରଣ କରି ନେଇଯିବା ପରେ ବିବାହ କାର୍ଯ୍ୟ ବର ଗାଁରେ ଅନୁଷ୍ଠିତ ହୋଇଥାଏ । ପୁଅ ପକ୍ଷ ସୁଯୋଗ ଉଣ୍ଡି ଝିଅକୁ ଜୋରଜବରଦସ୍ତ ଉଠାଇ ନେଇ ଆସନ୍ତି । ବିଶେଷକରି ଜୁଆଙ୍ଗ ଯୁବତୀମାନେ ରଜ କିମ୍ବା ମକର ମେଳା ସମୟରେ ହାଟବଜାରରେ ବୁଲାବୁଲି କରୁଥିବାବେଳେ କିମ୍ବା ପର୍ବପର୍ବାଣି ସମୟରେ ନାଚଗୀତରେ ବୁଡ଼ି ରହିଥିବାବେଳେ କିମ୍ବା ଜଙ୍ଗଲକୁ ଫଳ, ମୂଳ ସଂଗ୍ରହ କରିବାକୁ ଯାଇଥିବାବେଳେ କିମ୍ବା ନଦୀ, ଝରଣାକୁ ଗାଧୋଇ ଯାଇଥିବାବେଳେ କିମ୍ବା ହାଟବଜାରକୁ ବୁଲି ଯାଇଥିବାବେଳେ ଯୁବକ ଓ ତା'ର କିଛି ସହଯୋଗୀମାନେ ଝିଅକୁ ବଳପୂର୍ବକ ଉଠାଇ ନେଇ ଯାଆନ୍ତି ।ଏପରି ଏକ ଦୁଃସାହସିକ କାର୍ଯ୍ୟ ପାଇଁ ଅନେକ ସମୟରେ (ସବୁ ସମୟରେ ନୁହେଁ) ଝିଅପକ୍ଷ ପୁଅ ପକ୍ଷଙ୍କୁ ମାଡ ଦିଅନ୍ତି, ଗାଳି କରନ୍ତି, ତର୍କାତର୍କି ପର୍ଯ୍ୟନ୍ତ କଥା ଯାଏ । ମାତ୍ର ପୁଅ ଘର ଲୋକେ ଝିଅ ଘର ଲୋକଙ୍କ ପ୍ରତି ହାତଉଠାନ୍ତି ନାହିଁ କି ପ୍ରତିବାଦ କରନ୍ତିନାହିଁ । ଝିଅଟିକୁ ଉଠାଇ ଆଣିବାପରେ ପୁଅ ଘରେ ଏକ ସ୍ୱତନ୍ତ୍ର କୋଠରୀରେ ଝିଅକୁ ରଖାଯାଏ । ଏହାର ତିନି ଚାରି ଦିନ ପରେ ଝିଅର ବାପା, ମା' ଝିଅକୁ ଖୋଜି ଖୋଜି ଆସି ପୁଅ ଘରେ ପହଞ୍ଚନ୍ତି । ପୁଅ ପକ୍ଷ ଝିଅଘର ଲୋକମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରନ୍ତି । ଏହାପରେ ଉଭୟ ପକ୍ଷଙ୍କ ମଧ୍ୟରେ ଆଲୋଚନା ହୁଏ । ଉଭୟ ପକ୍ଷଙ୍କ ମଧ୍ୟରେ ଆଲୋଚନା ହେବାପରେ ବିବାହ କାର୍ଯ୍ୟ ସଂପନ୍ନ କରାଯାଏ । ବିବାହ କାର୍ଯ୍ୟ ଶେଷ ହୋଇଯିବା ପରେ ଉଭୟ ବର, କନ୍ୟା ଓ ବରର ପିତା, ଗୁରୁଜନମାନେ କନ୍ୟା ଗାଁକୁ ବୁଲି ଯାଆନ୍ତି । ସାଥୀରେ ପୁଅ ଘର ପକ୍ଷରୁ ଝିଅର ପରିବାର ପାଇଁ କିଛି ଉପହାର ନେଇ ଯାଆନ୍ତି । ଏହା ଦ୍ୱାରା ଉଭୟ ପରିବାର ମଧ୍ୟରେ ବନ୍ଧୁତା ସୁଦୃଢ଼ ହୋଇଥାଏ । ପୂର୍ବ କଥାକୁ ଭୁଲିଯାଇ ଉଭୟ ପକ୍ଷ ଉତ୍ସବ ମନେଇଥାନ୍ତି । ତେବେ ଏଭଳି କନ୍ୟା ଝିଙ୍କା ବିବାହ ଦ୍ୱାରା କେନ୍ଦୁଝର ଜୁଆଙ୍ଗ ଅଞ୍ଚଳରେ କେବେ ବି ଗଣ୍ଡଗୋଳ କି ଦଙ୍ଗା ହୋଇନାହିଁ । ଏଭଳି ବିବାହ ଅତ୍ୟନ୍ତ ଅନୁକୂଳ ବାତାବରଣ ମଧ୍ୟରେ ଅନୁଷ୍ଠିତ ହୋଇଥାଏ ।

## ୪. ମନମାନି ବିଭା *(love marriage)*

ଏହା ଏକ ପ୍ରକାର ପ୍ରେମ ବିବାହ । ଗୋଟିଏ ଗାଁର ଜୁଆଙ୍ଗ ଯୁବକ ଅନ୍ୟ ଏକ ଗାଁର ଯୁବତୀ ପ୍ରେମରେ ପଡିଗଲେ ସେମାନେ ପରସ୍ପର ବିବାହ ବନ୍ଧନରେ ଆବଦ୍ଧ ହୋଇଥା'ନ୍ତି । ଭିନ୍ନ ଗାଁର ଯୁବକ ଯୁବତୀ ମେଳା ମହୋତ୍ସବ, ଯାନିଯାତରା ସମୟରେ କିମ୍ବା ହାଟବଜାରରେ ପରସ୍ପର ସହ ଦେଖାସାକ୍ଷାତ ହେବା ପରେ ସେମାନଙ୍କ ମଧ୍ୟରେ ପ୍ରେମ ସଂପର୍କ ଗଢି ଉଠିଥାଏ । ଏହାପରେ ମନ ଦିଆନିଆ । ମନ ଦିଆନିଆରୁ ଉଭୟଙ୍କ ମଧ୍ୟରେ ପ୍ରୀତି ସଞ୍ଚାର ହୋଇଥାଏ । କଙ୍ଗେରଟି ସେଲାନ୍‌କୁ ନାନା ପ୍ରକାର ଉପହାର ପ୍ରଦାନ କରି ପ୍ରଲୋଭିତ କରିଥାଏ । ଯୁବକ-ଯୁବତୀଙ୍କ ମଧ୍ୟରେ ପ୍ରେମ ସଂପର୍କ ଅଧିକ ନିବିଡ଼ ହୋଇଗଲା ପରେ ଉଭୟ ପୁଅ ଓ ଝିଅ ଘର ପକ୍ଷରୁ ବିବାହ ପାଇଁ ପ୍ରସ୍ତାବ ପଡ଼ିଥାଏ । ପ୍ରଥମେ ଯୁବକଟି ନିଜର ପ୍ରେମିକାକୁ ବାହା ହେବା ପାଇଁ ନିଜ ଘରେ ପ୍ରସ୍ତାବ ରଖେ । ଯଦି ଯୁବକର ବାପା ଏହି ପ୍ରସ୍ତାବରେ ରାଜି ହୋଇଯାଏ ତେବେ ସ୍ଥୀରିକୃତ ବିବାହ ହୋଇଥାଏ । ଯଦି ବରଘର ଏହି ପ୍ରସ୍ତାବରେ ରାଜି ନ ହୁଅନ୍ତି ତେବେ ଯୁବକଟି ବାଧ୍ୟ ହୋଇ କନ୍ୟାକୁ ଅପହରଣ କରି ନେଇଆସେ ।

## ୫. ସୁରୁମ୍ କନିଆ ବିଭା *(marriage by elopement)*

ଏହା ମଧ୍ୟ ଏକ ପ୍ରକାର ପ୍ରେମଜନିତ ବିବାହ । ବିବାହ ପୂର୍ବରୁ ଯୁବକଟି ପ୍ରେମ କରୁଥିବା ତା' ପ୍ରେୟସୀକୁ ନେଇ କେଉଁଆଡେ ଫେରାର୍ ହୋଇଯାଏ । ବେଶ୍ କିଛି ବର୍ଷ ବିଦେଶ (ନିଜ ଗାଁଠାରୁ ଦୂରରେ) ରହିବା ପରେ ସଂପୃକ୍ତ ପ୍ରେମୀଯୁଗଳ ପୁନର୍ବାର ନିଜ ଗାଁକୁ ଫେରନ୍ତି ଏବଂ ଗାଁରେ ସେମାନଙ୍କର ବିବାହ କାର୍ଯ୍ୟ ସଂପନ୍ନ ହୋଇଥାଏ । ପ୍ରଥମେ ପୁଅ ଝିଅ ମଧ୍ୟରେ ପାଣିଘାଟ, ନଈ ତୁଠ, ଜଙ୍ଗଲରେ, ମେଳାଯାତ୍ରା, ରଥଯାତ୍ରା, ଦଶହରା ଯାତ୍ରାରେ, ଗାଁ କି ଅନ୍ୟ ଗାଁର ମକର ମେଳାରେ କି ହାଟରେ ଦେଖାସାକ୍ଷାତ୍ ହୋଇଥାଏ । ଏହା ପରେ ଉଭୟ ଉଭୟଙ୍କ ପ୍ରତି ଆକର୍ଷିତ ହୋଇଥାନ୍ତି । ବନ୍ଧୁ ଓ ବାନ୍ଧବୀଙ୍କ ସାହାଯ୍ୟରେ ସେମାନଙ୍କର ମିଳନ ଅଧିକ ସୁଦୃଢ଼ ହୋଇଥାଏ । ପୁଅ ଓ ଝିଅ ଲୁଚି ଛପି ପରସ୍ପରକୁ ପ୍ରେମ କରନ୍ତି । ଗୀତ ଓ ନାଚରେ ସେମାନେ ପରସ୍ପରର ନିକଟତର ହୋଇଥାନ୍ତି । କେତେଦିନ ପରେ ପୁଅ ଝିଅକୁ ତାହା ସହିତ କେଉଁଆଡେ ଚାଲିଯିବାକୁ ପ୍ରସ୍ତାବ ଦିଏ । ଏଠାରେ ଉଭୟ ପରିବାରର ପିତା ମାତାଙ୍କ ଅନୁମତି ଲୋଡାଯାଇ ନଥାଏ । ପୁଅଝିଅ ଦୁହେଁ ନିଜ ଘର ଛାଡି ନିଜର କୌଣସି ନିକଟ ସଂକର୍କୀୟ ଘରେ ଯାଇ ରହନ୍ତି । ଏହାକୁ **ସୁରୁମ୍ କନିଆ** ବିଭା କୁହାଯାଏ । ପରେ ଉଭୟ ପକ୍ଷର ପିତାମାତା ଓ **କମାଣ୍ଡିରିଆ** ଯାଇ ବିବାହର ଆୟୋଜନ କରନ୍ତି ଏବଂ ସେମାନଙ୍କ ବିବାହ କରାଇ ପୂର୍ବର ମିଳନକୁ ସ୍ୱୀକୃତି ଦିଆଯାଏ ।

## ୬. ଉଡୁଙ୍ଗ୍ କନିଆ ବିଭା *(marriage after the girl gets pregnant)*

ଏହା ମଧ୍ୟ ଏକ ପ୍ରେମଜନିତ ବିବାହ । ବିବାହ ପୂର୍ବରୁ ଯୁବକ ଯୁବତୀଙ୍କ ମଧ୍ୟରେ ପ୍ରେମ ସଂପର୍କ

ଅଧିକ ନିବିଡ଼ ହୋଇଗଲେ ସେମାନେ ଦୈହିକ ସଂପର୍କ ରକ୍ଷା କରିଥା'ନ୍ତି । ଏହି ଦୈହିକ ସଂପର୍କ ରକ୍ଷା କରିବା ଦ୍ୱାରା ଯୁବତୀଟି ଗର୍ଭବତୀ ହୋଇପଡେ । ଏହା ଫଳରେ ଝିଅଘର ପକ୍ଷରୁ ଅଧିକ ଚିନ୍ତା ବଢିଯାଏ । ଉଭୟ ପୁତ୍ର ଓ ଝିଅ ଘର ପକ୍ଷରୁ ଆଲୋଚନା ମାଧ୍ୟମରେ ବିବାହ ସ୍ଥିର ହୋଇଥାଏ । ଏହା ପୂର୍ବରୁ ଗାଁରେ ପଧାନ, ନାଗମ୍ ଓ ଗ୍ରାମର ବୟସ୍କ ବାରଭାଇଙ୍କ ଉପସ୍ଥିତିରେ ମଣ୍ଡଘରେ ନ୍ୟାୟନିଶାପ ହୁଏ । ମଣ୍ଡଘରେ ଗ୍ରାମର ଜୁଆଙ୍ଗମାନେ ଉଚିତ୍ ଆଲୋଚନା କରି ଉଭୟ ପୁତ୍ର ଓ କନ୍ୟାର ପରିବାର ଉପରେ କିଛିମାତ୍ରାରେ ଅର୍ଥଦଣ୍ଡ ଲାଗୁ କରିଥା'ନ୍ତି । ବର ପିତା ଓ କନ୍ୟା ପିତା ଗ୍ରାମବାସୀଙ୍କୁ ଜୋରିମାନା ବାବଦରେ ମଦ, କୁକୁଡ଼ା ଓ ଟଙ୍କା ପ୍ରଦାନ କରନ୍ତି । ଏହି ଅର୍ଥରେ ଗ୍ରାମରେ ଏକ ଭୋଜିର ଆୟୋଜନ ହୋଇଥାଏ । ସମସ୍ତେ ମିଳିମିଶି ଏହି ଭୋଜିରେ ଅଂଶଗ୍ରହଣ କରି ଉତ୍ସବ ମନେଇଥାନ୍ତି । ସଂପର୍କ ଦୃଢ଼ କରିବାକୁ ଯାଇ ବର ପିତା କନ୍ୟା ପିତାକୁ କିଛି ଉପହାର ପ୍ରଦାନ କରିଥାନ୍ତି ।

### ୭. ଓ୍ୱାଡ଼ି କନିଆ ବିଭା *(child marriage)*

ଏହା ମଧ୍ୟ ଏକ ପ୍ରେମଜନିତ ବିବାହ । କୌଣସି କାରଣରୁ ଯଦି ଜଣେ ଜୁଆଙ୍ଗ ଯୁବକ ଜଣେ ୮-୧୦ ବର୍ଷର ନାବାଳିକା ପ୍ରେମରେ ପଡିଯାଏ ଏବଂ ସେମାନଙ୍କ ମଧ୍ୟରେ ଦୈହିକ ମିଳାମିଶା ଘଟଣା ପ୍ରଘଟ ହୋଇଯାଏ ତେବେ ସେମାନଙ୍କ ମଧ୍ୟରେ ବିବାହ ନିଶ୍ଚିତ ହୋଇଥାଏ । ଅବଶ୍ୟ ଏହା ଯେତେ ସହଜ ମନେ ହୋଇଥାଏ, ସେତେ ସହଜ ଘଟଣା ନୁହେଁ । ଯେକୌଣସି ବୟସ୍କ ଯୁବକ ଜଣେ ନାବାଳିକାକୁ ଅନୈତିକ ପ୍ରେମ କରି ପରେ ଗର୍ଭବତୀ କରିବା ଘଟଣାକୁ ଗ୍ରାମବାସୀ ସହଜରେ ଗ୍ରହଣ କରି ନଥା'ନ୍ତି । ଏ ନେଇ ଗାଁ ମଣ୍ଡଘରେ ପଧାନ, ନାଗମ୍ ଓ ବାରଭାଇ ବସି ନିଶାପ କରି ଉଚିତ୍ ପଦକ୍ଷେପ ଗ୍ରହଣ କରିଥାନ୍ତି । ଏ କ୍ଷେତ୍ରରେ ବର ଓ ବର ପିତାଙ୍କୁ ଚଢା ଅର୍ଥଦଣ୍ଡରେ ଦଣ୍ଡିତ କରାଯାଏ । ଏହି ଅର୍ଥରେ ଗ୍ରାମରେ ଭୋଜିଭାତ ହୋଇଥାଏ । ପରେ ଗ୍ରାମବାସୀଙ୍କ ସହମତିକ୍ରମେ ଉଭୟଙ୍କ ମଧ୍ୟରେ ବିବାହ ସଂପନ୍ନ ହୋଇଥାଏ । ଏଭଳି ବିବାହ ଖୁବ୍ କ୍ୱଚିତ୍ ଦେଖାଯାଇଥାଏ ।

### ୮. ବୁର୍ହା କନିଆ ବିଭା *(widow re-marriage)*

ଜୁଆଙ୍ଗ ସମାଜରେ ବିଧବା ବିବାହ ପ୍ରଥା ମଧ୍ୟ ପ୍ରଚଳନ ଅଛି । ବିଧବାମାନେ ଏବଂ ବିପତ୍ନୀକମାନେ ମଧ୍ୟ ପୁନର୍ବିବାହ କରିପାରନ୍ତି । ଅଳ୍ପ ବୟସ୍କ ବିପତ୍ନୀକ ଜୁଆଙ୍ଗ ଇଛାକଲେ ଜଣେ ଯୁବତୀକୁ ବିବାହ କରିଥାଏ କିମ୍ବା ଜଣେ ବିଧବା ମଧ୍ୟ ଜଣେ ବିପତ୍ନୀକ ଜୁଆଙ୍ଗ ପୁରୁଷକୁ ବିବାହ କରିପାରେ । ବେଳେବେଳେ ମୃତ ବଡ଼ଭାଇର ପତ୍ନୀକୁ ମଧ୍ୟ ସାନଭାଇ (ଦିଅର-ଭାଉଜ) ବିବାହ କରିବା ଘଟଣା ଦେଖିବାକୁ ମିଳେ । ଏ କ୍ଷେତ୍ରରେ ବିଧବା ବଡ଼ଭାଉଜର ମତାମତ ନିଆଯାଇଥାଏ । ଯଦି ଦିଅରକୁ ବିବାହ କରିବାରେ ଭାଉଜର କୌଣସି ଆପତ୍ତି ନଥାଏ, ତେବେ ବିବାହ ସଂପନ୍ନ ହୋଇଯାଏ । ଯଦି

ବିଧବା ଭାଉଜ ଦିଅରକୁ ବିବାହ କରିବାକୁ ଇଛା ନ କରେ, ତେବେ ସେ ଇଛାକଲେ ଗ୍ରାମର ଅନ୍ୟ ବିପତ୍ନୀକ ପୁରୁଷଙ୍କୁ ମଧ୍ୟ ବିବାହ କରିପାରେ । ଏହା ଗ୍ରାମବାସୀଙ୍କ ମିଳିତ ମତ ଅନୁସାରେ ହୋଇଥାଏ । ବିପତ୍ନୀକମାନେ ବିବାହ କରିବାକୁ ଇଛା କଲେ ସେମାନଙ୍କୁ ବହୁ ପରିମାଣରେ 'କନ୍ୟାମୂଲ' *(bride price)* ଏବଂ ଗ୍ରାମବାସୀଙ୍କୁ ବଡ଼ଧରଣର ଭୋଜି ଦେବାକୁ ପଡିଥାଏ । ବିଧବା ବିବାହ ଖୁବ୍ ସରଳ ଓ ନିରାଡ଼ମ୍ବର ଭାବେ ଅନୁଷ୍ଠିତ ହୋଇଥାଏ । ଅନ୍ୟ ସାଧାରଣ ବିବାହ ଭଳି ଏଥିରେ କୌଣସି ପ୍ରକାର ଉତ୍ସବ ମନାଯାଇ ନଥାଏ । ବର ପକ୍ଷରୁ କେବଳ ପୁରୋହିତ (ନାଗମ୍)ଙ୍କୁ ନୂତନ ବସ୍ତ୍ର ଓ ଗ୍ରାମବାସୀଙ୍କୁ ଭୋଜି ଓ ମଦ ଦିଆଯାଇଥାଏ ।

### ୯. ଡାକି କନିଆ ବିଭା *(marriage of the divorced woman)*

ଜୁଆଙ୍ଗ ଦଂପତିଙ୍କ ମଧ୍ୟରେ ଯଦି ମତପାର୍ଥକ୍ୟ ଦେଖାଦିଏ ଏବଂ ପତି-ପତ୍ନୀ ମଧ୍ୟରେ ଅଶାନ୍ତି ଲାଗିରହେ, ତେବେ ସେମାନେ ପରସ୍ପରକୁ ଛାଡପତ୍ର ଦେବାର ବ୍ୟବସ୍ଥା ମଧ୍ୟ ରହିଛି । ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଛାଡପତ୍ର କେବଳ ଗ୍ରାମବାସୀଙ୍କ ଦ୍ୱାରା ସ୍ୱୀକୃତିଲାଭ କରିଥାଏ । ସ୍ୱାମୀ ଓ ସ୍ତ୍ରୀର ଗ୍ରାମବାସୀ ଉପସ୍ଥିତ ରହି ଏହାକୁ ଅନୁମୋଦନ କରିଥାନ୍ତି । ଏହାପରେ ଯଦି ସ୍ୱାମୀ ଇଛାକରେ ଅନ୍ୟ ଜଣେ ଯୁବତୀକୁ ବିବାହ କରିପାରେ କିମ୍ବା ଛାଡପତ୍ର ଦେଇ ଚାଲି ଆସିଥିବା ସ୍ତ୍ରୀ ଜଣକ ଇଛାକଲେ ଅନ୍ୟ ଜଣେ ପୁରୁଷକୁ ବିବାହ କରିଥାଏ । ଯଦି ସ୍ତ୍ରୀ ପ୍ରଥମେ ତା'ର ସ୍ୱାମୀକୁ ଛାଡି ଚାଲିଆସେ, ତେବେ 'କନ୍ୟାସୁନା' ବାବଦକୁ ନେଇଥିବା ସମସ୍ତ ଟଙ୍କା ଓ ମଦ ବାବଦ ଅର୍ଥ ତାକୁ ଫେରେଇବାକୁ ପଡିଥାଏ । ତେବେ ଏଭଳି ବିବାହ ବିଚ୍ଛେଦ ଓ ପୁନର୍ବିବାହ ଜୁଆଙ୍ଗ ସମାଜରେ କ୍ୱଚିତ୍ ଦେଖିବାକୁ ମିଳିଥାଏ ।

### ୧୦. ଘର ଜୋଇଁଆ *(son-in-law in house)*

ଜୁଆଙ୍ଗ ସମାଜରେ ଏ ପ୍ରକାର ବିବାହ ବ୍ୟବସ୍ଥା ଖୁବ୍ କମ୍ ଦେଖିବାକୁ ମିଳେ । ପୁତ୍ର ନଥିବା ଜୁଆଙ୍ଗ ନିଜ କନ୍ୟାକୁ ଜଣେ ଯୁବକକୁ ବିବାହ ଦେଲାପରେ ଝିଅ, ଜ୍ୱାଇଁଙ୍କୁ ନିଜ ଘରେ ପୁତ୍ର, କନ୍ୟା ଭଳି ରଖିଥା'ନ୍ତି । ଏହାକୁ ଘରଜୋଇଁଆ ବୋଲି କୁହାଯାଏ । ଏ କ୍ଷେତ୍ରରେ ବରକୁ ନିଜ ପୈତୃକ ଘର ପରିତ୍ୟାଗ କରି ଶ୍ୱଶୁର ଘରେ ରହିବାକୁ ପଡିଥାଏ ।

### ୧୧. ହାଟୁଆ କନିଆ ବିଭା *(hindu type of marriage)*

ଏହା ଏକ ସ୍ଥିରୀକୃତ ବିବାହ । ହିନ୍ଦୁ ବିବାହ ଭଳି ପୁତ୍ର-କନ୍ୟା ଦେଖା ପରେ ଉଭୟ ପରିବାର ପକ୍ଷରୁ ବିବାହ ଦିନ ଧାର୍ଯ୍ୟ କରାଯାଏ । ହିନ୍ଦୁ ବିବାହ ଭଳି ବୈଦିକ ରୀତିରେ ଅନୁଷ୍ଠିତ ହୋଇଥାଏ । ମାତ୍ର, ଜୁଆଙ୍ଗ ସମାଜରେ ଏଭଳି ବିବାହ ସଂଖ୍ୟା ଖୁବ୍ କମ୍ ଦେଖାଯାଏ ।

# ଜୁଆଙ୍ଗ ସମାଜରେ ଦଣ୍ଡବିଧାନ

*(Penal Code of the Juang)*

ଜଣେ ଦୋଷ କଲେ ତାକୁ ଉପଯୁକ୍ତ ଶାସ୍ତି ବିଧାନ କରାଯିବାର ବ୍ୟବସ୍ଥା ଜୁଆଙ୍ଗ ଗ୍ରାମ ସଂଗଠନରେ ରହିଛି । ଗାଁର ମଣ୍ଡଘରେ ଗାଁସଭା ବସି ଦୋଷୀକୁ ଉପଯୁକ୍ତ ଦଣ୍ଡ ଦିଆଯାଏ । ଗ୍ରାମ ଭିତରର ସମସ୍ୟା ହୋଇଥିଲେ ଗାଁ ମୁଖିଆ ପଧାନ, ନାଗମ୍ ଓ ବାରଭାଇମାନେ ଏକତ୍ର ବସି ବିବାଦର ସମାଧାନ କରନ୍ତି । ମାତ୍ର ବିବାଦ ଯଦି ଗ୍ରାମ ଗ୍ରାମ ମଧ୍ୟରେ ହୋଇଥାଏ, ଏ କ୍ଷେତ୍ରରେ ପୀଢ ସର୍ଦ୍ଦାର ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି ।

ଗାଁରେ କେହି ଦୋଷ କରିଥିଲେ ଗାଁ ମୁଖିଆ 'ପଧାନ' ଓ ଗାଁ ପୁରୋହିତ 'ନାଗମ୍' ଏବଂ ଜୁଆଙ୍ଗ 'ବାରଭାଇ'ଙ୍କ ଉପସ୍ଥିତିରେ ଦୋଷୀର ଦଣ୍ଡବିଧାନ କରାଯାଏ । ଗାଁର ଜଣେ ଯୁବକ ଯଦି ଜଣେ ଯୁବତୀ ସହ ପ୍ରେମ ସଂପର୍କ ରଖି ତାକୁ ପାପଗର୍ଭ କରିବା ପରେ ମଧ୍ୟ ବିବାହ କରିବାକୁ ଅସମ୍ମତି



▶ ଜୁଆଙ୍ଗଙ୍କ ଗହଣରେ ମଣ୍ଡଘରେ ଲେଖକ

ପ୍ରକାଶ କରେ, ଏ କ୍ଷେତ୍ରରେ ମଣ୍ଡଘରେ ବିଚାର କରାଯାଇ ଉକ୍ତ ଯୁବକକୁ ଉଚିତ୍ ଦଣ୍ଡ ପ୍ରଦାନ କରାଯିବା ସହିତ ସଂପୃକ୍ତ ଗର୍ଭବତୀ ଯୁବତୀଟିକୁ ତା' ସହିତ ବିବାହ କରିବାକୁ ତାକୁ ବାଧ୍ୟ କରାଯାଏ । ଧରାଯାଉ ଜଣେ ବିବାହିତ ପୁରୁଷ ଆଉ ଜଣେ ବିବାହିତ ପରନାରୀ ସହ ଅନୈତିକ କାର୍ଯ୍ୟରେ ଲିପ୍ତ ଥିବାର ଜଣାପଡିଲା; ଏ କ୍ଷେତ୍ରରେ ପରକିୟା ପ୍ରୀତିରେ ଲିପ୍ତ ଥିବା ଉଭୟ ପୁରୁଷ ଓ ମହିଳାଙ୍କୁ ମଣ୍ଡଘର ସମ୍ମୁଖକୁ ଅଣାଯାଇ ସେମାନଙ୍କର ବିଚାର କରାଯାଏ । ବିଚାର କରାଯିବା ପରେ ସେମାନଙ୍କୁ ଦଣ୍ଡସ୍ୱରୂପ ଗ୍ରାମ ପାଣ୍ଠିକୁ କିଛି ଟଙ୍କା ଦେବାକୁ ପଡ଼ିଥାଏ । ଏହି ଜୋରିମାନା ଅର୍ଥରେ କିଛି ମଦ କିମ୍ବା ଧୁଆଁପତ୍ର କିଣାଯାଏ । ଏହାକୁ ସମସ୍ତେ ସାଥୀହୋଇ ପାନ କରନ୍ତି । ସେହିଭଳି ଗାଁର କେହି ଜୁଆଙ୍ଗ ଚୋରି, ଡକାୟତି କଲେ ମଧ୍ୟ ତାକୁ ମଣ୍ଡଘର କଚେରୀରେ ଦଣ୍ଡବିଧାନ କରାଯାଏ । ତା'ଠାରୁ ଜୋରିମାନା ବାବଦକୁ ନିଆଯାଇଥିବା ଟଙ୍କାରେ ହାଣ୍ଡିଆ ଓ କୁକୁଡା ଭୋଜି କରାଯାଏ । ପୂର୍ବେ ଗ୍ରାମ୍ୟ ସଂଗଠନ ମାଧ୍ୟମରେ ମଣ୍ଡଘରେ ପଧାନ, ନାଗମ୍ ଓ ବାରଭାଇ ବସି ଏହିପରି ଦଣ୍ଡ ବିଧାନ କରୁଥିଲେ । ମାତ୍ର ଏବେ ଏପରି ଦଣ୍ଡବିଧାନକୁ ଦୋଷ କରିଥିବା ଜୁଆଙ୍ଗ ଯୁବକ/ଯୁବତୀମାନେ ମାନିବାକୁ ପ୍ରସ୍ତୁତ ହେଉନାହାନ୍ତି । ଏହା ଫଳରେ ଗ୍ରାମ୍ୟ ସଂଗଠନ କିଛି ମାତ୍ରାରେ ନିଷ୍କ୍ରିୟ ହୋଇପଡିଛି । ଏଭଳି କ୍ଷେତ୍ରରେ ମାମଲା ଥାନା, କୋର୍ଟ, କଚେରୀକୁ ଯାଉଛି ଏବଂ ସେଠାରେ ସମାଧାନର ସୂତ୍ର ବାହାରୁଛି ।

ବିବାହ ପୂର୍ବରୁ କନ୍ୟା ଗର୍ଭବତୀ ହୋଇ ପଡିଲେ ମଣ୍ଡଘରେ କନ୍ୟାକୁ ଉଚିତ୍ ନ୍ୟାୟ ପ୍ରଦାନ କରାଯାଇଥାଏ । କନ୍ୟାକୁ ଯେଉଁ ପୁଅ ଗର୍ଭବତୀ କରାଇଥିବ, ତାକୁ ଉଚିତ୍ ଦଣ୍ଡବିଧାନ କରାଯାଏ । ମଣ୍ଡଘରକୁ ଉଭୟ ଗର୍ଭବତୀ କନ୍ୟା ଓ ପୁଅ ଆସନ୍ତି । ପୁଅକୁ ତାର ଏହି ଅପକର୍ମ ପାଇଁ ଅର୍ଥଦଣ୍ଡ ସ୍ୱରୂପ ଜୋରିମାନା ଆଦାୟ କରାଯାଏ । ଏହାପରେ ପୁଅକୁ ଉକ୍ତ ଗର୍ଭବତୀ ଝିଅକୁ ବିବାହ କରିବାକୁ ନିର୍ଦ୍ଦେଶ ଦିଆଯାଏ । ଏହି ଅବସରରେ ପୁଅ ଦେଇଥିବା ଜୋରିମାନା ଅର୍ଥରେ କୁକୁଡା ମାଂସ ଓ ହାଣ୍ଡିଆର ବ୍ୟବସ୍ଥା କରାଯାଏ ।

ବିଭିନ୍ନ ପର୍ବପର୍ବାଣିମାନଙ୍କରେ ଯୁବକ, ଯୁବତୀମାନେ କିଛି ତ୍ରୁଟି କଲେ ବୟସ୍କ ଜୁଆଙ୍ଗମାନେ ସେମାନଙ୍କୁ ଦଣ୍ଡିତ କରିଥା'ନ୍ତି । ପର୍ବପାଳନ ବେଳେ ଯୁବକମାନେ ନୀତିନିୟମରେ ଖିଲାପ କଲେ ସେମାନଙ୍କ ଉପରେ ଅର୍ଥ ଦଣ୍ଡ ଲାଗୁ କରାଯାଇଥାଏ । ଏହି ଅର୍ଥରେ ବୟସ୍କ ଜୁଆଙ୍ଗମାନେ ମହୁଲି ପିଇ ମାତାଲ୍ ହୋଇଥା'ନ୍ତି ।



# ଚତୁର୍ଥ ପରିଚ୍ଛେଦ

## ଜୁଆଙ୍ଗ ସାଂସ୍କୃତିକ ଜୀବନ

*(cultural life of the Juang)*

ଜୁଆଙ୍ଗମାନଙ୍କ ସାଂସ୍କୃତିକ ଜୀବନ ବେଶ ଶୃଙ୍ଖଳିତ ଓ ସମୃଦ୍ଧ । ବର୍ଷତମାମ୍ ପର୍ବପର୍ବାଣି ଉତ୍ସବ





▶ ଜୁଆଙ୍ଗମାନଙ୍କ ଏକ ବାଦ୍ୟ: ବଡ଼ଜାଠ

ମନେଇ ଜୁଆଙ୍ଗମାନେ ଜୀବନକୁ ଉପଭୋଗ କରିବାର କଳା ହାସଲ କରିପାରିଛନ୍ତି । ଭଲ ଫସଲ ଅମଳ, ରୋଗବଇରାଗରୁ ମୁକ୍ତି ପାଇବା, ଗ୍ରାମକୁ ବିପଦମୁକ୍ତ କରିବା, ପିତୃପୁରୁଷ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ବାର ମାସରେ ତେର ପର୍ବ ପାଳନ କରନ୍ତି । ଏହିସବୁ ପର୍ବପର୍ବାଣି ପାଳନ ଜରିଆରେ ଜୁଆଙ୍ଗମାନେ ଗାଁ ସଦର ଦାଣ୍ଡରେ କିମ୍ବା ମଣ୍ଡଘରେ ଏକତ୍ରିତ ହେବାର ସୁଯୋଗଲାଭ କରିଥା'ନ୍ତି ଏବଂ ଏହାଦ୍ୱାରା ସେମାନଙ୍କ ଗୋଷ୍ଠୀ ଜୀବନ ଅଧିକ ସମୃଦ୍ଧ ହୋଇଥାଏ । ଜୁଆଙ୍ଗମାନେ ପ୍ରକୃତିର ଉପାସକ । ସେମାନେ ନଦୀ, ଝରଣା, ପାହାଡ, ବୃକ୍ଷ ଓ ବିଭିନ୍ନ ପଶୁପକ୍ଷୀଙ୍କୁ ପୂଜା କରିଥା'ନ୍ତି । ଜୁଆଙ୍ଗମାନେ କଳାପ୍ରିୟ । ଜୁଆଙ୍ଗ ରମଣୀର ହାତରେ କିମ୍ବା ଶରୀରର ଅନ୍ୟାନ୍ୟ ଅଂଶରେ ଅଙ୍କିତ ହୋଇଥିବା 'ଚିତାକୁଟା'ର ଦୃଶ୍ୟ ଖୁବ୍ ମନଲୋଭା ହୋଇଥାଏ । ମଣ୍ଡଘର କାନ୍ଥରେ ନାନା ପ୍ରକାର ପାରଂପରିକ ଚିତ୍ର ଅଙ୍କନ କରି କିମ୍ବା ମଣ୍ଡଘର ମଧ୍ୟ ଭାଗରେ ଥିବା ବିଶାଳ ଖୁଣ୍ଟମାନଙ୍କରେ ନାନା ପ୍ରକାର ଚିତ୍ର ଖୋଦେଇ କରି ନିଜର କଳାଚାତୁରୀର ପରିଚୟ ଦେଇଥା'ନ୍ତି । ତାଙ୍କୁ ଜୁଆଙ୍ଗମାନଙ୍କ ସାଂସ୍କୃତିକ ଜୀବନରେ ଏକ ଉଲ୍ଲେଖନୀୟ ଭୂମିକା ତୁଲେଇଥାଏ ।

ବର୍ଷର ଅଧିକାଂଶ ପର୍ବପର୍ବାଣି, ଉତ୍ସବମାନଙ୍କରେ ଜୁଆଙ୍ଗମାନେ ଚାଙ୍ଗୁ ବଜେଇ ନାଚଗୀତର ଆସର ଜମେଇ ଜୀବନକୁ ଖୁବ୍ ଉପଭୋଗ କରିଥା'ନ୍ତି । ଜୁଆଙ୍ଗମାନଙ୍କ ସାଂସ୍କୃତିକ ଜୀବନର ଅନ୍ୟ ଏକ ପ୍ରମୁଖ ଅଂଶ ହେଉଛି ସେମାନଙ୍କର ସାପ୍ତାହିକ ହାଣ୍ଡିଆ ହାଟ । ଜୁଆଙ୍ଗଙ୍କ ହାଣ୍ଡିଆ ହାଟ ସହିତ ସାଧାରଣ ହାଟ ମଧ୍ୟ ବସିଥାଏ । ସପ୍ତାହରେ ଥରେ ବସୁଥିବା ଏହି ହାଟରେ ଜୁଆଙ୍ଗମାନେ ଏକତ୍ରିତ ହୋଇ କିଣାବିକା କରିବା ସାଙ୍ଗକୁ ଭାବର ଆଦାନପ୍ରଦାନ କରିବାର ସୁଯୋଗ ଲାଭ କରିଥାନ୍ତି । ଏହି ଅବସରରେ ହାଟରେ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ମଧ୍ୟରେ ମନ ଦିଆନିଆ ହୋଇଥାଏ ଏବଂ ଏହି ହାଟରେ ହିଁ ଯୁବକ ଯୁବତୀ ପରସ୍ପରକୁ ଜୀବନ ସାଥୀ ଭାବେ ବାଛି ନେଇଥାନ୍ତି । ପୁଅ ଝିଅଙ୍କ ମନ ମିଳିବା ପରେ ପାରଂପରିକ ପଦ୍ଧତିରେ ବିବାହ ସଂପନ୍ନ ହୋଇଥାଏ । ନୃତ୍ୟ ଓ ଗୀତକୁ ବାଦ୍ ଦେଇ ଜୁଆଙ୍ଗମାନଙ୍କ ସାଂସ୍କୃତିକ ଜୀବନ କଥା ଚିନ୍ତା କରାଯାଇ ନପାରେ । ଯେକୌଣସି ଉତ୍ସବ, ପର୍ବପର୍ବାଣି, ମାଙ୍ଗଳିକ କାର୍ଯ୍ୟ କିମ୍ବା ଫସଲ ଅମଳ ବେଳେ ଜୁଆଙ୍ଗମାନେ ଆନନ୍ଦରେ ବିଭୋର ହୋଇ ଉଠନ୍ତି । ଏହାର ଫଳସ୍ୱରୂପ ଯୁବକ, ଯୁବତୀମାନେ ସଦର ଦାଣ୍ଡକୁ ବାହାରି ପଡନ୍ତି ଏବଂ ନାଚଗୀତର ଆସର ଜମେଇ ନିଜନିଜ ମଧ୍ୟରେ ସୁଖ ବାଣ୍ଟିଥା'ନ୍ତି । ତଥାକଥିତ ସଭ୍ୟ, ଶିକ୍ଷିତ ଓ ଆଧୁନିକ ମଣିଷଙ୍କ ଭଳି ସେମାନେ ସମୟ ଓ ଅର୍ଥର ମାନଦଣ୍ଡରେ ନିଜ ଜୀବନକୁ ନ ମାପି ପ୍ରକୃତି କୋଳରେ ନିଜକୁ ଉତ୍ସର୍ଗ କରି ଦିଅନ୍ତି । ଆଉ ପ୍ରକୃତି ହିଁ ସେମାନଙ୍କୁ ନୈସର୍ଗିକ ଆନନ୍ଦ ଦେଇଥାଏ । ଏହା ହିଁ ଜୁଆଙ୍ଗମାନଙ୍କର ବଞ୍ଚିବାର ସୁଖକର କଳା ।

## ଜୁଆଙ୍ଗମାନଙ୍କ ଧର୍ମଧାରଣା ଓ ପାରଂପରିକ ବିଶ୍ୱାସ

*(Juang religion and traditional belief)*

ସେମାନଙ୍କ ଜୀବନ କିଛି ଅଦୃଶ୍ୟ ଶକ୍ତି ଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏହି ଅଦୃଶ୍ୟ ଶକ୍ତି ବା ଭଗବାନ, ଦେବଦେବୀ; ସେମାନଙ୍କ ଆଖପାଖ ପାହାଡ ଏବଂ ଜଙ୍ଗଲରେ ଥାଆନ୍ତି ବୋଲି ଜୁଆଙ୍ଗମାନଙ୍କର ଧାରଣା । ଜୁଆଙ୍ଗମାନେ ନାନା ପ୍ରକାର ଦେବଦେବୀଙ୍କ ଉପରେ ଭରସା କରିଥାନ୍ତି । ସେମାନେ ପ୍ରକୃତିର ଉପାସକ ହୋଇଥିବାରୁ ନାନା ପ୍ରକାର ଗଛ, କାଠ, ପଥର ନିର୍ମିତ ଦେବଦେବୀଙ୍କ ମୂର୍ତ୍ତି ପୂଜା କରିଥାନ୍ତି । **'ଧରମ୍ ଦେବତା'** (ସୂର୍ଯ୍ୟ ଦେବତା) *(sun god)* ହେଉଛନ୍ତି ଜୁଆଙ୍ଗମାନଙ୍କର ସର୍ବଶ୍ରେଷ୍ଠ ଦେବତା । **ବସୁମତିମାତା** (ପୃଥିବୀ ମାତା) *(earth goddess)*ମଧ୍ୟ ଜୁଆଙ୍ଗ ପୂଜିତ ଅନ୍ୟ ପ୍ରମୁଖ ଦେବୀ । ବସୁମତି ମାତା ଧରମ୍ ଦେବତାଙ୍କ ପତ୍ନୀ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଧରମ୍ ଦେବତା ଓ ବସୁମତି ମାତାଙ୍କୁ ପ୍ରାର୍ଥନା ନ କରି ଜୁଆଙ୍ଗମାନେ କୌଣସି ଶୁଭ କାର୍ଯ୍ୟ ଆରଂଭ କରିପାରନ୍ତି ନାହିଁ । ପ୍ରତି ଜୁଆଙ୍ଗ ଗାଁରେ ଜଣେ ଗ୍ରାମ ଦେବୀ ପୂଜା ପାଇଥାନ୍ତି, ସେମାନଙ୍କୁ **'ଗ୍ରାମଶିରି'** *(village deity)*



କୁହାଯାଇଥାଏ । ଗାଁ ମୁଣ୍ଡରେ କିମ୍ବା ଗ୍ରାମ ମଧ୍ୟ ଭାଗରେ ମଜାଙ୍ଗ ସମ୍ମୁଖରେ ଏକ ଗଛମୂଳରେ ଲମ୍ବା ଓ ମୁନିଆ ପଥରରେ ଗ୍ରାମଶିରିଙ୍କ ପ୍ରତିମା କଳ୍ପିତ ହୋଇଥାଏ । ସାଧାରଣତଃ. ଗାଁର **ମଜାଙ୍ଗ** ବା **ମଣ୍ଡଘର** *(Juang youth dormitory)* ସମ୍ମୁଖରେ ଗ୍ରାମଶିରି ପୂଜିତ ହୋଇଥାନ୍ତି । ଗ୍ରାମଶିରି ହେଉଛନ୍ତି ଜୁଆଙ୍ଗମାନଙ୍କ ଗ୍ରାମଦେବୀ ଏବଂ ସେ ଜୁଆଙ୍ଗମାନଙ୍କୁ ସକଳ ବିପଦଆପଦ ଏବଂ ରୋଗବଇରାଗରୁ ରକ୍ଷା କରିଥାନ୍ତି ।ଗାଁର ଆଉ ଜଣେ ପ୍ରମୁଖ ଦେବତା ହେଉଛନ୍ତି **ଥାନପତି** *(village deity)*। ଥାନପତି ଗାଁ ସନ୍ନିକଟ ପାହାଡରେ ପୂଜା ପାଇଥାନ୍ତି । ଥାନପତିଙ୍କର କୌଣସି କଳ୍ପିତ ମୂର୍ତ୍ତି ନଥାଏ । ବିଭିନ୍ନ ଗ୍ରାମର ଥାନପତିଙ୍କ ନାମ ଭିନ୍ନ ହୋଇଥାଏ । **ଭୀମାବଡ଼ମା** ଏବଂ **କଷ୍ଟୁରୀ (କାଷ୍ଟୁଣୀ)** ହେଉଛନ୍ତି ଅନ୍ୟ ଦୁଇ ଗ୍ରାମ୍ୟ ଦେବଦେବୀ । ଏମାନେ ହେଉଛନ୍ତି 'ଟାଙ୍ଗୁ ଦେବଦେବୀ' ଏବଂ ମଜାଙ୍ଗରେ ପୂଜା ପାଇଥାନ୍ତି । ଭୀମାବଡ଼ମା ଏବଂ କଷ୍ଟୁରୀ ହେଉଛନ୍ତି ସଂପର୍କରେ ପତି-ପତ୍ନୀ । ଏହି ଦୁଇ ଦେବଦେବୀଙ୍କ ଆତ୍ମା ଟାଙ୍ଗୁ ମଧ୍ୟରେ ଥାଆନ୍ତି ବୋଲି ଜୁଆଙ୍ଗମାନେ

ବିଶ୍ୱାସ କରନ୍ତି । ଆମ୍ବ ନୂଆଖିଆ ପର୍ବ ସମୟରେ ଅବିବାହିତ ଜୁଆଙ୍ଗ କଙ୍ଗେର୍, ସେଲାନ୍ (ଯୁବକ, ଯୁବତୀ)ମାନେ ଏହି ଦେବଦେବୀଙ୍କୁ ପୂଜା କରିଥାନ୍ତି । ଭୀମାବଡ଼ମା ଏବଂ କମ୍ପୁରୀ ଠାକୁର ଠାକୁରାଣୀ ଅବିବାହିତ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କର ସ୍ୱାସ୍ଥ୍ୟର ସୁରକ୍ଷା କରିଥା'ନ୍ତି । ଜୁଆଙ୍ଗଙ୍କ ବାଦ୍ୟ **'ଚାଙ୍ଗୁ'**ରୁ ଉତ୍ତମ ଶବ୍ଦ ନିର୍ଗତ ହେବାରେ ଏହି ଦୁଇ ଠାକୁର ଠାକୁରାଣୀ ସହାୟକ ହୋଇଥା'ନ୍ତି । ଯଦି କୌଣସି କାରଣରୁ **ଭୀମାବଡ଼ମା** ଏବଂ **କମ୍ପୁରୀ** ଠାକୁର ଠାକୁରାଣୀ କୋପ କରିଥା'ନ୍ତି ତେବେ ଚାଙ୍ଗୁରୁ ଭଲ ଶବ୍ଦ ବାହାରି ନଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଯେତେ ଜୋର୍‌ରେ ଚାଙ୍ଗୁ ପିଟିଲେ ମଧ୍ୟ ଶବ୍ଦ ନିର୍ଗତ ହୋଇନଥାଏ । ବିବାହ ଉତ୍ସବ ସମୟରେ ଚାଙ୍ଗୁ ନୃତ୍ୟ ଓ ଗୀତ ପ୍ରତିଯୋଗିତାବେଳେ ଗାଁର କଙ୍ଗେର୍, ସେଲାନ୍‌ମାନେ ଏହି ଦେବଦେବୀଙ୍କୁ ପୂଜା କରିବା ସହିତ କୁକୁଡା ଭୋଗ ଲାଗି କରିଥା'ନ୍ତି । ଏହି ଦେବତା ଓ ଦେବୀଙ୍କୁ ସନ୍ତୁଷ୍ଟ କରିପାରିଲେ ଚାଙ୍ଗୁ ନୃତ୍ୟଗୀତରେ ସଫଳତା ମିଳେ ଏବଂ ଯୁବକ, ଯୁବତୀଙ୍କୁ କୌଣସି ରୋଗବଇରାଗ ହୁଏନାହିଁ ବୋଲି ବିଶ୍ୱାସ ରହିଛି । ଜୁଆଙ୍ଗମାନଙ୍କର ବିଶ୍ୱାସ, ସେମାନଙ୍କର ଦେବଦେବୀମାନେ ନିକଟସ୍ଥ



ପାହାଡ, ଜଙ୍ଗଲ, ନଦୀ ଝରଣାରେ ଅବସ୍ଥାପିତ ହୋଇଥାନ୍ତି । ଜୁଆଙ୍ଗ ପୀଢ ଅଞ୍ଚଳରେ ଥିବା ମାଲ୍ୟଗିରି, ଗନ୍ଧମାର୍ଦ୍ଦନ, ଭୀମଗିରି, ଗୁପ୍ତଗଙ୍ଗା, ରାମଗିରି ଆଦି ପାହାଡପର୍ବତରେ ସେମାନଙ୍କ ଠାକୁର, ଠାକୁରାଣୀମାନେ ବାସ କରନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେହିଭଳି ସ୍ଥାନୀୟ ଜଙ୍ଗଲ ଓ ପାହାଡର ନାମାନୁସାରେ ଜୁଆଙ୍ଗମାନଙ୍କର ବହୁ ଦେବଦେବୀ ଅଛନ୍ତି । ସାଧାରଣତଃ, ଏହିସବୁ ଦେବଦେବୀଙ୍କ ନାମ ସହିତ 'ପାଟ' ଶବ୍ଦଟି ସଂଲଗ୍ନ ହୋଇଥାଏ । ଏହିସବୁ ନଦୀ ଓ ପାହାଡର ଦେବଦେବୀମାନେ ହେଲେ **ଗୁଟିପାଟ, ରଙ୍ଗାପାଟ, ଜଳାପାଟ, ବୈତରଣୀପାଟ, ଜୁଟେଇଶୁଣି, କେନ୍ଦେଇଶୁଣି, ନୂଆ ଠାକୁରାଣୀ, ଦୁଆରଶୁଣୀ, ବାଉଁଶତଳିଆ, ରଂଗାପାଟ, ବିଷ୍ଣୁପାଟ, ସାରୁପାଟ, ମୁଟୁରି ଠାକୁରାଣୀ, ଜଟା ମୁଣ୍ଡିଆ ଠାକୁରାଣୀ, ବଜିରିମୂଳିଆ** ପ୍ରମୁଖ । ଜୁଆଙ୍ଗମାନଙ୍କ ମଧ୍ୟରେ ଆଉ ଏକ ବିଶ୍ୱାସ ରହିଛି, ନଦୀ ଦେବଦେବୀମାନେ *(river deities)* ସେମାନଙ୍କୁ ବିପଦ ଆପଦରେ ଉଦ୍ଧାର କରୁଥିବାବେଳେ ଝରଣା ଠାକୁର, ଠାକୁରାଣୀ *(spring deities)* ସେମାନଙ୍କୁ ସବୁବେଳେ ବିପଦରେ ପକେଇଥାନ୍ତି । ଜୁଆଙ୍ଗମାନଙ୍କ ପୂଜା ସାମଗ୍ରୀ ମଧ୍ୟରେ ଅରୁଆ ଚାଉଳ, ଧାନ, ଫୁଲ, ହଳଦି, ସିନ୍ଦୁର, ଧୂପ, ଦୀପ, ଦୁଧ ଓ ଗୁଡ ଆଦି ବ୍ୟବହୃତ ହୋଇଥାଏ ।

ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ସେମାନେ ଋଷିପୁତ୍ର । ପୃଥିବୀ ସର୍ଜନା ହେଲାପରେ ଏ ବିଶ୍ୱରେ ପ୍ରଥମେ ଋଷି-ଋଷିଣୀ ଦଂପତି ସୃଷ୍ଟି ହୋଇଥିଲେ । ସେହି ଋଷି ଓ ଋଷିଣୀଙ୍କ ସନ୍ତାନମାନେ ହେଉଛନ୍ତି ଜୁଆଙ୍ଗ । ଏଣୁ ପ୍ରତ୍ୟକ ପର୍ବପର୍ବାଣିମାନଙ୍କରେ ଜୁଆଙ୍ଗମାନେ ସେମାନଙ୍କ ମୂଳ ସ୍ରଷ୍ଟା ଋଷି-ଋଷିଣୀଙ୍କୁ ସ୍ମରଣ କରିଥାନ୍ତି ।

*('Notes on the Juang' Man in India V. Elwin-1948)*

ଜୁଆଙ୍ଗମାନେ ଭୂତ, ପ୍ରେତ, ଡାଆଣୀରେ ଗଭୀର ବିଶ୍ୱାସ ରଖିଥାନ୍ତି । ଜୁଆଙ୍ଗମାନେ ସେମାନଙ୍କ ପୂର୍ବ ପୁରୁଷମାନଙ୍କ ଆତ୍ମାକୁ ବେଶ ଭକ୍ତି କରନ୍ତି । 'ଆତ୍ମା'କୁ ଜୁଆଙ୍ଗ ଭାଷାରେ **ସିରିଗୁଣି** କହନ୍ତି । ଜୁଆଙ୍ଗ ବିଶ୍ୱାସ ଅନୁଯାୟୀ, କିଛି ଆତ୍ମା ସେମାନଙ୍କର ମଙ୍ଗଳ କରିବା ସହିତ ସୁରକ୍ଷା ପ୍ରଦାନ କରିଥାନ୍ତି ଏବଂ ଆଉ କିଛି ଆତ୍ମା କ୍ଷତିସାଧନ କରିଥାନ୍ତି । ଯେଉଁମାନଙ୍କର ହାଡଫୁଟି, ସାପ କାମୁଡା, କଲେରା, ବାଘ ଆକ୍ରମଣରେ ମୃତ୍ୟୁ ଘଟିଥାଏ ଏବଂ ଯେଉଁମାନେ ଆତ୍ମହତ୍ୟା କରିଥାନ୍ତି, ସେମାନଙ୍କର ଆତ୍ମା ଶାନ୍ତି ପାଇ ନଥାଏ ଏବଂ ଏଣେତେଣେ ଘୂରିବୁଲୁଥାଏ । ସେମାନେ ଇଶ୍ୱରୀୟ ଆତ୍ମା ରୂପେ ବିବେଚିତ ହୋଇ ନଥାନ୍ତି ଏବଂ ଏହି ଆତ୍ମାମାନେ ବିଭିନ୍ନ ରୋଗ ସୃଷ୍ଟି କରିବା ସହିତ ଜୁଆଙ୍ଗମାନଙ୍କର କ୍ଷତି ସାଧନ କରିଥାନ୍ତି । ଏହି ଧରଣର ଆତ୍ମା ଜୁଆଙ୍ଗ ଗାଁ ଉପରେ ସବୁବେଳେ ଖରାପ ଦୃଷ୍ଟି ପକେଇଥାନ୍ତି । ଅନେକ ସମୟରେ ଏମାନଙ୍କୁ ଜୁଆଙ୍ଗମାନେ ଧୂଆଁପତ୍ର, ହାଣ୍ଡିଆ, ମହୁଲି ମଦ, କୁକୁଡା ଦେଇ ଶାନ୍ତି କରେଇଥାନ୍ତି । ଯେଉଁ ଜୁଆଙ୍ଗମାନେ ବୃଦ୍ଧ ହୋଇ ସ୍ୱାଭାବିକ ଭାବେ ମୃତ୍ୟୁବରଣ କରନ୍ତି, ସେମାନଙ୍କର ଆତ୍ମାମାନଙ୍କୁ ଜୁଆଙ୍ଗ ଇଶ୍ୱରୀୟ ଆତ୍ମା ଭାବେ ବିବେଚନା କରିଥାନ୍ତି ।

ଏମାନଙ୍କୁ କୁକୁଡା, ଛେଳି, ମଦ ଦେଇ ଶାନ୍ତ କରାଇପାରିଲେ ଜୁଆଙ୍ଗମାନେ ବିଶେଷ ଭାବେ ଉପକୃତ ହୋଇଥାନ୍ତି ବୋଲି ବିଶ୍ୱାସ ରହିଛି । ଏହି ପୂର୍ବପୁରୁଷମାନଙ୍କ ଆତ୍ମା ଜୁଆଙ୍ଗମାନଙ୍କୁ ସବୁ ଦିଗରୁ ସୁରକ୍ଷା ଯୋଗେଇ ଦେବା ସହିତ ବିପଦ ଆପଦରେ ସାହା ହୋଇଥାନ୍ତି ।ଜୁଆଙ୍ଗମାନେ ସେମାନଙ୍କର ପୂର୍ବପୁରୁଷଙ୍କୁ 'ପିତୃକି' ବୋଲି କହିଥା'ନ୍ତି । ଯଦି ଏହି ପୂର୍ବପୁରୁଷଙ୍କ ଆତ୍ମାମାନଙ୍କୁ ସନ୍ତୁଷ୍ଟ କରାନଯାଏ, ତେବେ ସେମାନେ ବହୁ ଅନିଷ୍ଟ କରିଥା'ନ୍ତି । ପୂର୍ବପୁରୁଷଙ୍କ ଆତ୍ମାକୁ ଯଥା ସମ୍ମାନ ପ୍ରଦର୍ଶନ କରାନଗଲେ ସେମାନେ ଗାଁର ଗାଈଗୋରୁଙ୍କୁ ମାରି ପକାନ୍ତି, ଶସ୍ୟ ନଷ୍ଟ କରି ଦିଅନ୍ତି ଏବଂ ନାନା ପ୍ରକାର ରୋଗ ସୃଷ୍ଟି କରନ୍ତି ।ପିତୃପୁରୁଷଙ୍କ ଆତ୍ମା ସନ୍ତୁଷ୍ଟ ନ ହେଲେ ସେମାନେ ଜୁଆଙ୍ଗମାନଙ୍କର ବହୁ କ୍ଷତିସାଧନ କରନ୍ତି ଏବଂ ସର୍ବୋପରି ଗାଁକୁ ନାନା ପ୍ରକାର ବିପଦ ମାଡିଆସେ । ଏଣୁ ପ୍ରତି ଶୁଭ କାର୍ଯ୍ୟରେ ଜୁଆଙ୍ଗମାନେ ସର୍ବପ୍ରଥମେ ନିଜର ପିତୃପୁରୁଷଙ୍କୁ ଆବାହନ କରିଥା'ନ୍ତି । ଏମିତିକି ପ୍ରତ୍ୟକ ଶସ୍ୟ ଅମଳ ହେବାପରେ ପ୍ରଥମେ ପୂର୍ବପୁରୁଷଙ୍କ ଉଦେଶ୍ୟରେ ଭୋଗ ଲାଗି ହେବାପରେ ଜୁଆଙ୍ଗମାନେ ବ୍ୟବହାର କରନ୍ତି । ପିତୃପୁରୁଷଙ୍କୁ ମଦ, କୁକୁଡା ଆଦି ପ୍ରଦାନ କରାଯାଇଥାଏ । ଯଦି ପୂର୍ବପୁରୁଷଙ୍କ ଆତ୍ମା ସନ୍ତୁଷ୍ଟ ହୋଇ ରହନ୍ତି ତେବେ ସେମାନେ ଜୁଆଙ୍ଗଙ୍କୁ ସବୁକ୍ଷେତ୍ରରେ ବିପଦଆପଦରୁ ରକ୍ଷା କରନ୍ତି । ସେମାନେ ଜୁଆଙ୍ଗମାନଙ୍କର ଫସଲ ଉଗିବାଠାରୁ ଆରଂଭ କରି ଜଙ୍ଗଲ, ନଦୀ, ଝରଣାର ସୁରକ୍ଷା, ନାନା ପ୍ରକାର ପ୍ରାକୃତିକ ଦୁର୍ବିପାକରୁ ରକ୍ଷା କରିବା ଏବଂ ଗାଁକୁ ରୋଗମୁକ୍ତ କରିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ କରିଥା'ନ୍ତି । ଏଣୁ ଧରମ୍ ଦେବା, ବସୁମତିମାତାଙ୍କ ସମେତ ପିତୃକି ହେଉଛନ୍ତି ଜୁଆଙ୍ଗମାନଙ୍କର ପ୍ରମୁଖ ଦେବତା ।

ଜୁଆଙ୍ଗମାନେ ମନ୍ତ୍ରତନ୍ତ୍ର, ଗୁଣିଗାରେଡିରେ ବିଶ୍ୱାସ କରନ୍ତି । ସେମାନଙ୍କ ମଧ୍ୟରେ ନାନା ପ୍ରକାର ଅନ୍ଧବିଶ୍ୱାସ ରହିଛି । ନୂତନ ବାସସ୍ଥାନ ନିରୁପଣ କରିବା, ବିବାହ ସମ୍ବନ୍ଧ ନିର୍ଦ୍ଧାରଣ କରିବା ଓ ଜୀବନର କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ସିଦ୍ଧାନ୍ତ ନେବାକୁ ସେମାନେ **ପୁଞ୍ଜିକ୍ରିୟା** *(rice divination)* ନାମକ ଏକ କ୍ରିୟା ଅନୁଷ୍ଠିତ କରିଥାନ୍ତି । ଏହି ପୁଞ୍ଜିକ୍ରିୟା ପଦ୍ଧତି ବଡ଼ ବିଚିତ୍ର । ପ୍ରଥମେ ତିନିଗୋଟି ଅରୁଆ ଚାଉଳକୁ ମନ୍ତ୍ର କରାଯାଇ ଗୋଟିଏ ଉପରେ ଗୋଟିଏ କରି ଭୂମି ଉପରେ ରଖାଯାଏ । ଏହା ଉପରେ ଏକ ଚାଙ୍ଗୁଡି ଘୋଡାଇ ଦିଆଯାଏ । ପିଂପୁଡି ତଥା ଅନ୍ୟାନ୍ୟ କୀଟମାନଙ୍କ ପ୍ରବେଶକୁ ରୋକିବା ଉଦ୍ଦେଶ୍ୟରେ ଚାଙ୍ଗୁଡିର ଧାର ସହିତ ଭୂମିକୁ କାଦୁଅ ବା ଗୋବରରେ ଲେପନ କରାଯାଏ । କିଛି ଦିନ ପରେ ଗ୍ରାମବାସୀଙ୍କ ଉପସ୍ଥିତିରେ ପୂଜକ (ନାଗମ୍) ଏହାକୁ ଖୋଲନ୍ତି । ଯଦି ଏହି ଅରୁଆ ଚାଉଳର ସ୍ତୂପଟି ଭାଙ୍ଗିଯାଇଥାଏ କିମ୍ବା ଉପର ଅରୁଆ ଚାଉଳ ଖସି ପଡିଥାଏ ତେବେ ଏହା ଅଶୁଭ ବୋଲି ନାଗମ୍ ଘୋଷଣା କରିଥାଏ । ତେବେ ଯେଉଁ ଶୁଭ କାର୍ଯ୍ୟ ଉଦ୍ଦେଶ୍ୟରେ ଏଭଳି ପୁଞ୍ଜିକ୍ରିୟାର ଆୟୋଜନ କରାଯାଇଥାଏ, ସେହି କାର୍ଯ୍ୟକୁ ସ୍ଥଗିତ ରଖାଯାଏ ।

ଭୂତପ୍ରେତ ସବାର ହେଲେ ସେମାନଙ୍କୁ ନାନା ପ୍ରକାର ରୋଗବଇରାଗ ହୋଇଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏହା ବ୍ୟତୀତ କୌଣସି ପାପ ଆତ୍ମାର ନକରାତ୍ମକ ଦୃଷ୍ଟି କିମ୍ବା

କୌଣସି ଗୁଣିଆର ତନ୍ତ୍ରମନ୍ତ୍ର ପ୍ରୟୋଗ କିମ୍ବା ଦେବତା, ପିତୃଗଣଙ୍କ କୋପ କାରଣରୁ ମଧ୍ୟ ରୋଗ, ବ୍ୟାଧି, ଶସ୍ୟନାଶ, ପ୍ରାକୃତିକ ବିପର୍ଯ୍ୟୟ ଘଟିଥାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ତେବେ ଏହି ପାରଂପରିକ ଦେବଦେବୀଙ୍କ ସମେତ ଜୁଆଙ୍ଗମାନେ ବହୁ ହିନ୍ଦୁ ଦେବଦେବୀଙ୍କୁ ମଧ୍ୟ ପୂଜା କରିଥା'ନ୍ତି । ସେମାନେ ମହାଦେବ ଶିବ, ପାର୍ବତୀ, ଲକ୍ଷ୍ମୀ, ଦୁର୍ଗା ଠାକୁରାଣୀ, ରାମ, ସୀତା ଆଦିଙ୍କୁ ମଧ୍ୟ ପୂଜା କରିଥା'ନ୍ତି । ଗୋନାସିକାଠାରେ ପୂଜା ପାଉଥିବା ମହାଦେବ ବ୍ରହ୍ମେଶ୍ୱର ଜୁଆଙ୍ଗମାନଙ୍କର ଏକ ଅଗ୍ରପୂଜ୍ୟ ଦେବତା ଅଟନ୍ତି । ଜୁଆଙ୍ଗମାନେ ବିଭିନ୍ନ ପର୍ବପର୍ବାଣି, ବିଭାଘର ଓ ଅନ୍ୟାନ୍ୟ ମାଙ୍ଗଳିକ ଉତ୍ସବମାନଙ୍କରେ ବୋଲୁଥିବା ଗୀତମାନଙ୍କରେ ଅନେକ ହିନ୍ଦୁ ଦେବଦେବୀଙ୍କ ନାମ ଉଲ୍ଲେଖ ରହିଥାଏ ।

## ଜୁଆଙ୍ଗମାନଙ୍କ ନୃତ୍ୟ ଓ ଗୀତ

*(dance and song of Juang)*

ଜୁଆଙ୍ଗମାନେ ନୃତ୍ୟଗୀତ ପ୍ରିୟ । ସେମାନଙ୍କର ନୃତ୍ୟ ଗୋଷ୍ଠୀଗତ । ବିଭିନ୍ନ ପର୍ବପର୍ବାଣି ତଥା





ସାମାଜିକ ଅନୁଷ୍ଠାନମାନଙ୍କରେ ନୃତ୍ୟଗୀତର ଆସର ଜମିଥାଏ । ଜୁଆଙ୍ଗମାନେ ନାନା ପ୍ରକାର ପଶୁପକ୍ଷୀଙ୍କୁ ଅବଲମ୍ବନ କରି ନୃତ୍ୟ ପରିବେଷଣ କରିଥାନ୍ତି । ଜୁଆଙ୍ଗ ଯୁବକ, ଯୁବତୀମାନେ ଭାଲୁ ନାଚ, କପୋତ ନାଚ, ଘୁଷୁରି ନାଚ, କଛପ ନୃତ୍ୟ, ବାଘ ନାଚ, ତିତିରି ପକ୍ଷୀ ନୃତ୍ୟ ପରିବେଷଣ କରୁଥିବା କଥା *E.T. Dalton* ନିଜ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ସେହିଭଳି *Verier Elwin* ମଧ୍ୟ ଜୁଆଙ୍ଗମାନଙ୍କ ହରିଣ ନୃତ୍ୟ, ବଳଦ ନୃତ୍ୟ, ମୟୁର ନୃତ୍ୟ, ଭାଲୁ ନାଚ, କୁକୁଡା ନୃତ୍ୟ ସଂପର୍କରେ ବର୍ଣ୍ଣନା କରିଛନ୍ତି । ତେବେ ଏଭଳି ନୃତ୍ୟ ଆଜିର ଜୁଆଙ୍ଗ ସମାଜରେ ଦେଖିବାକୁ ମିଳେନାହିଁ । ଅବଶ୍ୟ ଜୁଆଙ୍ଗମାନେ ତାଙ୍କୁ ନୃତ୍ୟ ମାଧ୍ୟମରେ କିଛିକିଛି ପଶୁପକ୍ଷୀମାନଙ୍କର ଅଙ୍ଗଭଙ୍ଗୀ ଓ ଭାବକୁ ପ୍ରଦର୍ଶନ କରିଥାନ୍ତି ।

**'ପାଋ ନାଚ'** ଓ **'ଶକୁନ ନାଚ'** ଭଳି ଅତି ପ୍ରାଚୀନ କାଳର ନୃତ୍ୟ ଏବେ ଜୁଆଙ୍ଗ ସମାଜରେ ଦେଖିବାକୁ ମିଳୁନାହିଁ । **'ଶକୁନ ନାଚ'** *(vulture dance)*ଟି ଅତି ନାଟକୀୟ ଓ ରୋମାଞ୍ଚକର ମନେହୋଇଥାଏ । ଏହି ନୃତ୍ୟରେ ଜଣେ ଜୁଆଙ୍ଗ ଯୁବକ ଜ୍ଞାନଶୂନ୍ୟ ଅବସ୍ଥାରେ ଭୂମି ଉପରେ

ପଡିରହେ । ଏହାର ଦୁଇ ପାଖରେ ଯୁବକ, ଯୁବତୀମାନେ ଠିଆହୋଇ ସମବେତ ବିରହ ସଙ୍ଗୀତ ଗାନ କରି ନୃତ୍ୟ ପରିବେଷଣ କରିଥା'ନ୍ତି । ମୃତ ବ୍ୟକ୍ତିର ଆତ୍ମାକୁ ସନ୍ତୋଷ ପ୍ରଦାନ କରିବା ଲକ୍ଷ୍ୟରେ ମୃତବତ୍ ଭୂମି ଉପରେ ପଡି ରହିଥିବା ଯୁବକକୁ ଅନ୍ୟ ଜୁଆଙ୍ଗମାନେ ଟଣାଓଟରା କରିଥା'ନ୍ତି । ଏହି ନୃତ୍ୟ ସମୟରେ ସମସ୍ତଙ୍କ ଚକ୍ଷୁ ଲୋତକରେ ଭରିଯାଇଥାଏ । ଦର୍ଶକମାନେ ମଧ୍ୟ କାନ୍ଦିଥା'ନ୍ତି । **'ପାରା ନାଚ'** *(pigeon dance)*ରେ ଯୁବକ, ଯୁବତୀମାନଙ୍କ ମଧ୍ୟରେ ପ୍ରେମ ଆକର୍ଷଣ ବୃଦ୍ଧି ପାଇଥାଏ । ଏହା ଏକ ଶୃଙ୍ଗାର ରସପୂର୍ଣ୍ଣ ନୃତ୍ୟ । ଏଥିରେ ଯୁବତୀମାନେ ଗୋଟିଏ ଧାଡିରେ ରହି ନୃତ୍ୟ ପରିବେଷଣ କରିଥା'ନ୍ତି । ନୃତ୍ୟ ପରିବେଷଣ କରିବା ସମୟରେ ଯୁବତୀମାନେ ସେମାନଙ୍କ ସ୍ତନ, ନିତମ୍ବ ଏବଂ ଓଠ ଭଳି ସମ୍ବେଦନଶୀଳ ଅଙ୍ଗ କ୍ଷୀପ୍ର ବେଗରେ ଚାଳନା କରି ଯୁବକମାନଙ୍କୁ ଆକର୍ଷିତ କରିବାକୁ ଉଦ୍ୟମ କରିଥାନ୍ତି । ଯୁବକମାନେ ତାଙ୍କୁ ବଢେଇ ସେମାନଙ୍କୁ ଉତ୍ସାହିତ କରିଥାନ୍ତି । ଉଭୟ ଯୁବକ ଓ ଯୁବତୀମାନେ ନୃତ୍ୟ ମାଧ୍ୟମରେ ପରସ୍ପରକୁ ପ୍ରେମ ନିବେଦନ କରିଥାନ୍ତି । **'ଭାଲୁ**





**ନାଚ'** *(bear dance)*ରେ ଯୁବତୀମାନେ ଭାଲୁ ଭଳି ଭୂମିରେ ଘୋଷାରି ପ୍ରବଳ ଶବ୍ଦକରି ନୃତ୍ୟ କରିଥାନ୍ତି । **'ଘୁଷୁରି ନାଚ'** *(pig dance)*ରେ ଜୁଆଙ୍ଗ ଯୁବତୀମାନେ ଘୁଷୁରି ଭଳି ନୃତ୍ୟ କରିଥାନ୍ତି । **କଚ୍ଛପ ନୃତ୍ୟ** *(tortoise dance)*ରେ ଜୁଆଙ୍ଗ ଯୁବତୀମାନେ ଅତୀ ଧୀରେଧୀରେ ଭୂମି ଉପରେ ପଦପାତ କରି ଆଗକୁ ଆଗକୁ ବଢ଼ିଥା'ନ୍ତି । ଜୁଆଙ୍ଗମାନେ ଶିକାର ଯାତ୍ରା ସମୟରେ ନାନା ପ୍ରକାର ପଶୁ ନୃତ୍ୟ ପରିବେଷଣ କରିଥା'ନ୍ତି । ସେମାନଙ୍କ ମଧ୍ୟରୁ **'ମୃଗ ନୃତ୍ୟ'** *(deer dance)* ଅନ୍ୟତମ । ଏଥିରେ ଜୁଆଙ୍ଗ ଯୁବକମାନେ ହରିଣ ଶିକାର କରିବା ପୂର୍ବରୁ ସେମାନଙ୍କ ଉଦ୍ଦେଶ୍ୟରେ ଶୋକଗୀତି ଗାନ କରିଥାନ୍ତି । ଏହି ନୃତ୍ୟରେ ହରିଣ ପ୍ରତି ଜୁଆଙ୍ଗ ଯୁବକମାନେ ନିଜର ସମ୍ବେଦନଶୀଳତା ପ୍ରଦର୍ଶନ କରିଥା'ନ୍ତି । **'ବାର୍ହା ନୃତ୍ୟ'** *(boar dance)* ଏକ ଶୃଙ୍ଗାର ରସପୂର୍ଣ୍ଣ ନୃତ୍ୟ । ଏଥିରେ ଯୁବକ, ଯୁବତୀମାନେ ପରସ୍ପର ପ୍ରତି ଦୃଢ଼ ଯୌନପ୍ରବଣତା ନୃତ୍ୟ ଓ ଗୀତ ମାଧ୍ୟମରେ ପ୍ରଦର୍ଶନ କରିଥା'ନ୍ତି । ଏହି ସମୟରେ ଜୁଆଙ୍ଗ ଯୁବକମାନେ ବାର୍ହାଭଳି ଶକ୍ତିଶାଳି ହୋଇ ଉଠନ୍ତି ଏବଂ ସେମାନଙ୍କ ପ୍ରେମିକାମାନଙ୍କ ପ୍ରତି କୁଦି ପଡନ୍ତି ଏବଂ ପ୍ରେମ ନିବେଦନ କରନ୍ତି । **'ହାତୀ ନୃତ୍ୟ'**

*(elephant dance)*ରେ ଜୁଆଙ୍ଗମାନେ ତତ୍କାଳୀନ ରାଜାମାନଙ୍କ ଉଦ୍ଦେଶ୍ୟରେ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ସେତେବେଳେ ରାଜା, ମହାରାଜାମାନେ ହାତୀ ଉପରେ ବସି ଜଙ୍ଗଲ ବୁଲୁଥିଲେ କିମ୍ବା ଜଙ୍ଗଲ ଠାକୁରାଣୀ ପୂଜା କରିବାକୁ ଆସୁଥିଲେ । ଏହାକୁ ଦେଖି ଜୁଆଙ୍ଗମାନେ ରାଜାଙ୍କୁ ସମ୍ମାନ ଜଣାଇବା ସହ ନାନା ପ୍ରକାର ଗୀତ ବୋଲି ନୃତ୍ୟ ପରିବେଷଣ କରୁଥିଲେ । ମାତ୍ର, ଏସବୁ ନୃତ୍ୟର ପ୍ରାସଙ୍ଗିତା ଏବେ ଆଉ ଅନୁଭବ କରିହୁଏନି । **'ସର୍ପ ନୃତ୍ୟ'** *(snake dance)*ରେ ଜୁଆଙ୍ଗ ଯୁବତୀମାନେ ସାପଭଳି ଶରୀରକୁ ଭୂମି ଉପରେ ଏବଂ ଶୂନ୍ୟରେ ତରଙ୍ଗାୟିତ କରି କ୍ଷିପ୍ର ଗତିରେ ନାଚିଥା'ନ୍ତି । ସେମାନେ ଅଜଗର, ନାଗ କିମ୍ବା ସ୍ଥାନୀୟ ବିଷଧର ସାପ ଭଳି ଅଙ୍ଗଭଙ୍ଗି ପ୍ରଦର୍ଶନ କରନ୍ତି । ଦୁଇ ହାତକୁ ସାପ ଫଣା ଭଳି ମୁଣ୍ଡ ଉପରେ ରଖି ନୃତ୍ୟ ପରିବେଷଣ କରନ୍ତି । **'କୋଇଲି ନୃତ୍ୟ'** *(cuckoo dance)* ରେ ଜୁଆଙ୍ଗମାନେ ନାନା ପ୍ରକାର ମୃଦୁ ସଙ୍ଗୀତ ପରିବେଷଣ କରିଥା'ନ୍ତି । ଭାରତୀୟ ପରଂପରାରେ 'କୋଇଲି' ହେଉଛି ସଙ୍ଗୀତର ପ୍ରତୀକ । ଏଣୁ କୋଇଲି ଉଦ୍ଦେଶ୍ୟରେ ଜୁଆଙ୍ଗ ଯୁବକ, ଯୁବତୀମାନେ ନାନା ପ୍ରକାର ଗୀତ ଗାଆନ୍ତି । ସେହିଭଳି **'ହରଡ଼ ଚଢ଼େଇ ନୃତ୍ୟ'**



► ଘୋଡାନାଚ



➢ ଚାଙ୍ଗୁ ନାଚ

*(quail dance)*, 'ଗଞ୍ଜା ଓ କୁକୁଡା ନୃତ୍ୟ' *(cock and hen dance)*, 'ଘରଚଟିଆ ନୃତ୍ୟ *(sparrow dance)*' 'ମୟୂର ନୃତ୍ୟ' *(peacock dance)* ପରିବେଷଣ କରି ଜୁଆଙ୍ଗ ଯୁବକ, ଯୁବତୀମାନେ ନାନା ପ୍ରକାର ରସପୂର୍ଣ୍ଣ ଗୀତ ଗାଇ ଜୀବନକୁ ବେଶ୍ ଉପଭୋଗ କରିଥାନ୍ତି । ଏହି ସମସ୍ତ ପଶୁପକ୍ଷୀ ନୃତ୍ୟ ପରିବେଷଣ ସମୟରେ ଜୁଆଙ୍ଗ ଯୁବକ, ଯୁବତୀମାନେ ନୃତ୍ୟ ସଂପର୍କିତ ଆକର୍ଷଣୀୟ ଗୀତମାନ ଗାଇଥାନ୍ତି । ଏବେ ଏହିସବୁ ନୃତ୍ୟ କିଛିମାତ୍ରାରେ ଜୁଆଙ୍ଗ ସମାଜରେ ପ୍ରଚଳିତ ଥିବାବେଳେ ଅଧିକାଂଶ ନୃତ୍ୟ ବିରଳ ହୋଇଗଲାଣି ।

**'ଚାଙ୍ଗୁ ନାଚ'** ହେଉଛି ଜୁଆଙ୍ଗମାନଙ୍କର ପ୍ରମୁଖ ନୃତ୍ୟ । ଚାଙ୍ଗୁ ନାଚରେ ପୁରୁଷମାନେ ଚାଙ୍ଗୁ ବଜାନ୍ତି ଏବଂ ଯୁବତୀମାନେ ନୃତ୍ୟ ପରିବେଷଣ କରନ୍ତି । ଚାଙ୍ଗୁ ସାଧାରଣତଃ ଦେଢ ଫୁଟରୁ ଦୁଇ ଫୁଟ ବ୍ୟାସବିଶିଷ୍ଟ ଏକ ଗୋଲାକାର ବାଦ୍ୟ ଅଟେ । ଏହାର ପୃଷ୍ଠ ଦେଶରେ ଏକ ଲୁହାଛଡ



▶ ଚାଙ୍ଗୁ ନାଚ

ଲଗାଯାଇ ତାହାର ଦେହରେ ପାଞ୍ଚ ଛଅଟି ଲୁହା ବଳା ସଂଯୁକ୍ତ ହୋଇଥାଏ । ଏହା ଫଳରେ ଚାଙ୍ଗୁ ବାଦନ କରିବା ସମୟରେ ତାଳ ଅନୁସାରେ ରୁଣୁଝୁଣୁ ଶବ୍ଦ ମଧ୍ୟ ନିର୍ଗତ ହୋଇଥାଏ । ଶିଶୁ କିମ୍ବା ଗମ୍ଭାରି କାଠରେ ଚାଙ୍ଗୁ ବାଦ୍ୟ ପ୍ରସ୍ତୁତ ହୋଇଥାଏ । ଏହା ବ୍ୟତୀତ ନୃତ୍ୟ ସମୟରେ ବୃଦ୍ଧ ଓ ବୟସ୍କମାନେ ଝୁମୁକା ବଜେଇଥାନ୍ତି । ଜୁଆଙ୍ଗମାନେ ପରିବେଷଣ କରୁଥିବା ସମସ୍ତ ନୃତ୍ୟରେ ଚାଙ୍ଗୁ ବାଦନ କରାଯାଇଥାଏ । ଏଣୁ ସମସ୍ତ ନାଚକୁ ଚାଙ୍ଗୁ ନାଚ ବୋଲି ଧରାଯାଇଥାଏ ।

ଚାଙ୍ଗୁ ନାଚ ବେଳେ ପୁରୁଷମାନେ ମଧ୍ୟସ୍ଥଳରେ ରହନ୍ତି । ଯୁବତୀମାନେ ନୃତ୍ୟ କରିକରି ପୁରୁଷମାନଙ୍କ ଚତୁର୍ଦ୍ଦିଗରେ ବୃତ୍ତାକାର ପଥରେ ଗତି କରିଥାନ୍ତି । ନୃତ୍ୟ କରିବା ସମୟରେ ଯୁବତୀମାନେ ପରସ୍ପରର ହାତକୁ ପରସ୍ପରର ଅଣ୍ଟାରେ ଛନ୍ଦିଥାନ୍ତି । ଶରୀରର ପଛ ଭାଗରେ ଅଣ୍ଟା ପାଖରେ ପ୍ରଥମ ଯୁବତୀର ଡାହାଣ ହାତ ସହିତ ତୃତୀୟର ବାମ ହାତ ଏବଂ ତୃତୀୟର ଡାହାଣ ହାତ ସହିତ ପଞ୍ଚମର ବାମ ହାତ; ଏହି କ୍ରମରେ ଛନ୍ଦା ହୋଇଥାଏ । ଧାଡିର ପ୍ରଥମ ଯୁବତୀଟିର ବାମ ହାତ ଖାଲିଥାଏ କିମ୍ବା ସେ ମୟୂର ପୁଛଟିଏ ଧରିଥାଏ । ଏବଂ ଦ୍ୱିତୀୟ ଯୁବତୀଟିର ବାମ ହାତ ପ୍ରଥମ

ଯୁବତୀର ଅଣ୍ଟାକୁ ଧରିଥାଏ । ନୃତ୍ୟ କରିବା ସମୟରେ ସମସ୍ତେ ନିଜନିଜ ହାତକୁ ତାଳ ଅନୁସାରେ ଛାଟିଥାନ୍ତି ଏବଂ ପାଦ ଆଗକୁ ପଛକୁ ପକାଉଥାନ୍ତି । ନାଚିବାବେଳେ ଯୁବତୀମାନଙ୍କର ଏହି ହାତ ଛାଟିବା ଦୃଶ୍ୟ ବାସ୍ତବରେ ଏହି ନୃତ୍ୟର ବିଶେଷତ୍ୱ । ଯୁବତୀମାନେ ହାତ ଓ ଗୋଡରେ ପିନ୍ଧିଥିବା ଅଳଂକାରରୁ ଏକ ମିଶ୍ର ଧ୍ୱନି ସୃଷ୍ଟି ହୋଇଥାଏ ।

ଚାଙ୍ଗୁ ନାଚ ସମୟରେ ପୁରୁଷମାନେ ଚାଙ୍ଗୁ ବାଦ୍ୟ ବଜେଇବା ସହିତ ଗୀତ ଗାଇଥାନ୍ତି । ଏହି ଗୀତ ବେଶ୍ ଭାବାତ୍ମକ ଓ ରସପୂର୍ଣ୍ଣ ହୋଇଥାଏ । ବିଭିନ୍ନ ପର୍ବପର୍ବାଣି ଅନୁସାରେ ଗୀତ ଗାୟନ କରାଯାଇଥାଏ । ବିବାହ ଉତ୍ସବ ସମୟରେ ଯେଉଁ ଗୀତ ଗାନ କରାଯାଇଥାଏ ଆମ୍ବ ନୂଆଖିଆ ସମୟରେ ତା'ଠୁ ଭିନ୍ନ ଗୀତ ବୋଲାଯାଇଥାଏ । ପର୍ବପର୍ବାଣି ଅନୁସାରେ ଗୀତର ଭିନ୍ନତା ଲକ୍ଷ୍ୟ କରାଯାଇଥାଏ । ଯୁବତୀମାନେ ଗୀତ ଗାଇ ନଥାନ୍ତି । ସେମାନେ କେବଳ ନାଚିଥାନ୍ତି ।

ଜୁଆଙ୍ଗମାନଙ୍କର ନୃତ୍ୟକୁ ନିମ୍ନୋକ୍ତ ଶ୍ରେଣୀରେ ବିଭକ୍ତ କରାଯାଇପାରେ-

୧. ଶିକାର ନୃତ୍ୟ *(war & hunt dance)*



▶ ଚାଙ୍ଗୁ ନାଚ

୨. ପର୍ବଭିତ୍ତିକ ନୃତ୍ୟ *(sacred dance)*

୩. ସାମାଜିକ ନୃତ୍ୟ *(social dance)*

୪. ବିବାହ ନୃତ୍ୟ *(marriage dance)*

୫. ମୃତ୍ୟୁକାଳୀନ ନୃତ୍ୟ *(funeral dance)*

୬. ପଶୁପକ୍ଷୀ ନୃତ୍ୟ *(animal & bird dance)*

୭. ଋତୁଭିତ୍ତିକ ନୃତ୍ୟ *(seasonal dance)*

ଜୁଆଙ୍ଗମାନଙ୍କର ପାରଂପରିକ ନୃତ୍ୟ ଓ ଅନ୍ୟାନ୍ୟ ସାଧାରଣ ବର୍ଗଙ୍କ ନୃତ୍ୟ ମଧ୍ୟରେ ଅନେକ କିଛି ସାମଞ୍ଜସ୍ୟ ଲକ୍ଷ୍ୟ କରିହୁଏ । ସାଧାରଣ ନୃତ୍ୟରେ ତାଳ *(beats)* ଓ ଲୟ *(tempo)* ମଧ୍ୟରେ ଯେପରି ଉତ୍ତମ ସଂଯୋଗ ରହିଥାଏ, ସେମିତି ଜୁଆଙ୍ଗମାନଙ୍କ ନାଚରେ ତାଳ ଓ ଲୟ ମଧ୍ୟରେ ଉତ୍ତମ ବୁଝାମଣା ଲକ୍ଷ୍ୟ କରାଯାଏ । ଜୁଆଙ୍ଗମାନଙ୍କ ନାଚରେ ପଦପାତ *(steps)* ଓ ପଦଚାଳନା *(footwork)* ମଧ୍ୟରେ ଉତ୍ତମ ସଂପର୍କ ରକ୍ଷା କରାଯାଇଥାଏ । ଜୁଆଙ୍ଗମାନେ ଅଖାଣି ପର୍ବ (ଶିକାର ଯାତ୍ରା) ସମୟରେ ନାଚଗୀତର ଆୟୋଜନ କରିଥାନ୍ତି । ଆମ୍ବନୂଆଖିଆ, ପୂଷ୍ ପୁନେଇଁ (ମାଘ ପୋଡି ପର୍ବ) ବେଳେ ତାଙ୍କ ନାଚର ଆସର ଜମିଥାଏ । ବିବାହ ଉତ୍ସବ ସମୟରେ ଯୁବକ, ଯୁବତୀମାନେ ମଧ୍ୟ ନାଚଗୀତ କରିଥାନ୍ତି । ଜୁଆଙ୍ଗ ସମାଜରେ ନାନା ପ୍ରକାର ପଶୁପକ୍ଷୀ ଭିତ୍ତିକ ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ଜୁଆଙ୍ଗ ଯୁବକ, ଯୁବତୀମାନେ ଭାଲୁ ନାଚ, କପୋତ ନାଚ, ଘୁଷୁରୀ ନାଚ, କଚ୍ଛପ ନୃତ୍ୟ, ବାଘ ନାଚ, ତିତିରି ପକ୍ଷୀ, ହରିଣ ନୃତ୍ୟ, ବଳଦ ନୃତ୍ୟ, ମୟୁର ନୃତ୍ୟ, ଭାଲୁ ନାଚ ଭଳି ପଶୁପକ୍ଷୀ ନୃତ୍ୟ ପରିବେଷଣ କରିଥାନ୍ତି ।

ମୋଟାମୋଟି ଭାବେ ଜୁଆଙ୍ଗମାନଙ୍କର ନୃତ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡିକ ହେଲା–

୧. ସାମାଜିକ ନୃତ୍ୟ

୨. ସାଂସ୍କୃତିକ ନୃତ୍ୟ

ବେଳେବେଳେ ଅନ୍ୟ ବନ୍ଧୁ ଗ୍ରାମର ଯୁବତୀମାନେ ବନ୍ଧୁ ଘରକୁ ବୁଲି ଆସିବା ଆଳରେ ଅନ୍ୟ ଗ୍ରାମକୁ ଆସି ରାତ୍ରୀଯାପନ କରିଥାନ୍ତି । ସେତେବେଳେ ସେମାନଙ୍କ ସହ ବନ୍ଧୁ ଗାଁର ଯୁବକମାନେ ନୃତ୍ୟ ପରିବେଷଣ କରିଥାନ୍ତି । 'ତଇଳା'ରୁ ଫସଲ ଅମଳ ହୋଇଯିବା ପରେ ପ୍ରତିଦିନ ସନ୍ଧ୍ୟାରେ ମଜାଙ୍ଗ ସମ୍ମୁଖରେ ଜୁଆଙ୍ଗ କଙ୍ଗେର୍, ସେଲାନ୍‌ମାନେ ନୃତ୍ୟଗୀତର ଆସର ଜମେଇଥାନ୍ତି । ଏସବୁ ସାମାଜିକ ନୃତ୍ୟ ପର୍ଯ୍ୟାୟର । ଏହି ନୃତ୍ୟବେଳେ ଜୁଆଙ୍ଗ ସେଲାନ୍‌ମାନେ କୌଣସି ବିଶେଷ ଧରଣର ପୋଷାକ ପରିଧାନ କରି ନଥାନ୍ତି । ଯେଉଁ ପୋଷାକ ପିନ୍ଧି ସେଲାନ୍‌ମାନେ ଜଙ୍ଗଲ କିମ୍ବା ଝରଣାକୂଳକୁ ବୁଲିଯାଇଥାନ୍ତି ସେହି ପୋଷାକରେ ନୃତ୍ୟ ପରିବେଷଣ କରିଥାନ୍ତି ।

ବିଭିନ୍ନ ପର୍ବପର୍ବାଣି, ଉତ୍ସବ, ବିଭାଘର ଓ ଧାର୍ମିକ କାର୍ଯ୍ୟକ୍ରମରେ ପରିବେଷିତ ହେଉଥିବା ନୃତ୍ୟଗୁଡିକ ସାଂସ୍କୃତିକ ନୃତ୍ୟ ପର୍ଯ୍ୟାୟର । ଏହି ପର୍ବପର୍ବାଣିବେଳେ ଜୁଆଙ୍ଗ ଯୁବତୀମାନେ ବିଶେଷ ଧରଣର ବେଶପୋଷାକ, ଅଳଙ୍କାର ପରିଧାନ କରିଥାନ୍ତି । ଶରୀରକୁ ନାନା ପ୍ରକାର ପ୍ରସାଧନୀ ସାମଗ୍ରୀ ଦ୍ୱାରା ସଜେଇଥାନ୍ତି । ସେଲାନ୍‌ମାନେ ଗାଢ ଲାଲ୍ ରଙ୍ଗର ଧଡି ଥିବା ଶାଢି ପରିଧାନ କରି ଆପାଦମସ୍ତକ ଅଳଙ୍କାରରେ ସଜ୍ଜିତ କରିଥାନ୍ତି । କାନରେ ପିର୍‌ପିରା (ପିତଳର ମାଙ୍କଡ଼ି), ବେକରେ ରଙ୍ଗବେରଙ୍ଗର କାଚମାଳି, ହାତରେ ଖଡୁ, ଅଙ୍ଗୁଳିରେ ଢାଡିଢାଡିକା ପିତଳ ମୁଦି, ଗୋଡରେ ବଳା ଭଳି ଅଳଙ୍କାର ବ୍ୟବହାର କରିଥାନ୍ତି । ମୁଣ୍ଡରେ ଖୋସା ପାରି ନାନା ପ୍ରକାର ଜଙ୍ଗଲୀ ଫୁଲ ଦ୍ୱାରା ସଜ୍ଜିତ କରିଥାନ୍ତି । ନୃତ୍ୟ ପରିବେଷଣ ବେଳେ ଯୁବତୀମାନଙ୍କ ଭଳି ଯୁବକମାନେ ମଧ୍ୟ ପୋଷାକରେ ସଜ୍ଜିତ ହୋଇଥାନ୍ତି । ଯୁବକମାନେ ମୁଣ୍ଡରେ ପଗଡ଼ି ବାନ୍ଧି ଆଣ୍ଠୁ ଲୁଚା ଧଳା ରଙ୍ଗର ଧୋତି ଖଣ୍ଡେ ଖଣ୍ଡେ ପିନ୍ଧି ହାତରେ ଚାଙ୍ଗୁ ଗୋଟିଏ ଗୋଟିଏ ଧରି ନୃତ୍ୟରେ ଅଂଶଗ୍ରହଣ କରିଥାନ୍ତି । ଉଭୟ ଯୁବକ ଓ ଯୁବତୀମାନେ ମୁଣ୍ଡରେ କାଠ କିମ୍ବା ବାଉଁଶ ନିର୍ମିତ ଆକର୍ଷଣୀୟ ପାନିଆମାନ ଖୋସିଥାନ୍ତି ।

ଜୁଆଙ୍ଗ ଯୁବକ, ଯୁବତୀମାନେ ମଣ୍ଡଘରର ସାମ୍ନା ଅଗଣା (ପ୍ରାଙ୍ଗଣ)ରେ ନୃତ୍ୟଗୀତର ଆସର ଜମେଇଥାନ୍ତି । ବେଳେବେଳେ ଜୁଆଙ୍ଗମାନେ ଗାଁର ଅନ୍ୟ ଖୋଲା ସ୍ଥାନମାନଙ୍କରେ ନୃତ୍ୟ ପରିବେଷଣ କରିଥାନ୍ତି । ଯୁବକ, ଯୁବତୀମାନେ ଅଧିକାଂଶ ସମୟରେ ମଣ୍ଡଘରେ ନୃତ୍ୟ ପ୍ରଶିକ୍ଷଣ ନେଇଥାନ୍ତି । ଅଭିଜ୍ଞ ତଥା ବୟସ୍କ ଜୁଆଙ୍ଗମାନେ ଯୁବକ, ଯୁବତୀମାନଙ୍କୁ ନୃତ୍ୟ, ଗୀତର ଶିକ୍ଷା ପ୍ରଦାନ କରିଥାନ୍ତି ।

ନୃତ୍ୟ ସମୟରେ ଯୁବତୀମାନେ କୌଣସି ବାଦ୍ୟ ଯନ୍ତ୍ର ବ୍ୟବାହାର କରି ନଥାନ୍ତି । ଯୁବକମାନେ ହାତରେ ଗୋଟିଏ ଗୋଟିଏ ଚାଙ୍ଗୁ ଧରିଥାନ୍ତି । ଏହି ଚାଙ୍ଗୁଟି ଗୋଲାକୃତି । ଏହାର ଉପର ଭାଗ ମାଙ୍କଡ଼ କିମ୍ବା ଗାଈ ଚମଡାରେ ଛାଉଣୀ କରାଯାଇଥାଏ । ଯୁବକମାନେ ଏହି ବାଦ୍ୟଯନ୍ତ୍ରକୁ ବାମ ହାତରେ ଧରିଥାନ୍ତି ଏବଂ ଡାହାଣ ହାତର ବିଶି ଆଙ୍ଗୁଳିରେ ବଜାଇଥାନ୍ତି । ଯୁବକମାନଙ୍କର ଚାଙ୍ଗୁର ତାଳେତାଳେ ଯୁବତୀମାନେ ପଦପାତ କରିଥାନ୍ତି ।

ଜୁଆଙ୍ଗମାନଙ୍କର ଚାଙ୍ଗୁ ନୃତ୍ୟ ବଡ଼ ଶୃଙ୍ଖଳିତ । ପ୍ରଥମେ ଯୁବକମାନେ ଚାଙ୍ଗୁ ଧରି ମଣ୍ଡଘରର ପ୍ରାଙ୍ଗଣରେ ଏକ ଧାଡିରେ ଏକତ୍ରିତ ହୋଇଥାନ୍ତି । ଚାଙ୍ଗୁର ଚମଡା ଉପରେ ସମସ୍ତଙ୍କର ଡାହାଣ ହାତରେ ବିଶି ଆଙ୍ଗୁଳି ପ୍ରଥମେ ସ୍ଥିର ହୋଇ ରହିଥାଏ । ସମସ୍ତେ ଏକ ନିର୍ଦ୍ଦିଷ୍ଟ ଦିଗକୁ ମୁହଁ କରି ରହିଥାନ୍ତି । ଏତିକିବେଳେ ଜଣେ ଯୁବକ ପ୍ରଥମେ ଗୀତ ବୋଲିବା ଆରଂଭ କରେ । ଏହାପରେ ଅନ୍ୟ ଯୁବକମାନେ ସେହି ସ୍ୱରରେ ପାଳି ଧରି ବୋଲନ୍ତି । ଯୁବକମାନେ ବାମ ହାତରେ ଧରିଥିବା ଚାଙ୍ଗୁ ଉପରେ ଡାହାଣ ହାତର ଆଙ୍ଗୁଳି ଚାଳନା କରନ୍ତି । ଚାଙ୍ଗୁର ମଧୁର ମୂର୍ଚ୍ଛନାରେ ଯୁବତୀମାନଙ୍କର ପାଦ ଅଧୀର ହୋଇଉଠେ । ସେମାନେ ନାଚିବାକୁ ଆରଂଭ କରନ୍ତି ।

**'ଚାଙ୍ଗୁ ନାଚ'**ରେ ଯୁବତୀମାନେ ଧାଡି ହୋଇ ନାଚିଥାନ୍ତି । ଧାଡିର ପ୍ରଥମ ସ୍ଥାନରେ ଥିବା ଯୁବତୀର ଡାହାଣ ହାତର ମୁଠାରେ ତୃତୀୟ ଯୁବତୀର ବାମ ହାତ ମୁଠା ଛନ୍ଦି ହୋଇ ରହିଥାଏ । ଦ୍ୱିତୀୟ ଯୁବତୀଟି ତାର ବାମ ହାତକୁ ପ୍ରଥମ ଯୁବତୀର ନିତମ୍ବ ଉପରେ ରଖି ଡାହାଣ ହାତମୁଠାକୁ ଚତୁର୍ଥ ଯୁବତୀର ବାମ ହାତ ମୁଠା ସହ ସଂଯୁକ୍ତ କରିଥାଏ । ଏହିଭଳି ଭାବେ ସେମାନେ ଧାଡି ହୋଇ ଠିଆ ହୁଅନ୍ତି । ନୃତ୍ୟ କରିବାବେଳେ ଶରୀରର ଉଚ୍ଚତା ଅନୁସାରେ ବଡ଼ରୁ ସାନ କିମ୍ବା ସାନରୁ ବଡ଼ କ୍ରମାନ୍ୱୟରେ ସେଲାନ୍‌ମାନେ ଠିଆ ହୁଅନ୍ତି । ସେମାନେ ପରସ୍ପର ପରସ୍ପରର ହାତକୁ ପରସ୍ପରର ଅଣ୍ଟାରେ ଛନ୍ଦି ନୃତ୍ୟ କରିଥା'ନ୍ତି । ଏହି ନୃତ୍ୟ ଦଳରେ ଯେଉଁ ନର୍ତ୍ତକୀ ସମ୍ମୁଖ ଭାଗରେ ରହେ, ସେ ହାତରେ ଏକ ଲମ୍ବା ମୟୂର ପୁଚ୍ଛ ଧରିଥାଏ । ଏମାନେ ଏକ ତାଳ ଓ ଲୟରେ ଦଳଗତ ଭାବେ ଆଗକୁ ଯାଇ ଓ ପଛକୁ ଫେରି, ମୁଣ୍ଡକୁ ଉପରକୁ କରି, ତଳକୁ ନଇଁ ପଡି ନୃତ୍ୟ ପରିବେଷଣ କରନ୍ତି । ଯୁବତୀମାନେ ଅର୍ଦ୍ଧବୃତ୍ତାକାର ପଥରେ ଗୋଟିଏ ପାଦ ଆଗକୁ ଯାଇ ପୁଣି ଗୋଟିଏ ପାଦ ପଛକୁ ଫେରନ୍ତି । ଦଳର ଆଦ୍ୟ ପ୍ରାନ୍ତରେ ଥିବା ନର୍ତ୍ତକୀଟି ମୟୂର ପୁଚ୍ଛ ହଲେଇ ହଲେଇ ଅନ୍ୟମାନଙ୍କୁ ନିଜ ସହ ପାଦ ମିଳେଇ ନାଚିବାକୁ ଆହ୍ୱାନ ଜଣାଏ । ଚାଙ୍ଗୁର ସ୍ୱର ବଦଳିବା ସହିତ ଏମାନଙ୍କର ପାଦର ଗତିପଥ ଓ ତୀବ୍ରତା ମଧ୍ୟ ବଦଳିଥାଏ । ନୃତ୍ୟ ଆରମ୍ଭ ହେଲାବେଳକୁ ପ୍ରାରମ୍ଭିକ ପର୍ଯ୍ୟାୟରେ ଧିମା ଥାଏ ଏବଂ କ୍ରମେ ଏହାର ଗତି କ୍ଷୀପ୍ରରୁ କ୍ଷୀପ୍ରତର ହୋଇଥାଏ । ସମସ୍ତଙ୍କ ଅଣ୍ଟା ଓ ପାଦ ବାଦ୍ୟର ତାଳେତାଳେ ଠିକ୍ ଭାବେ ପଡୁଥାଏ । ଏହି ନାଚର କିଛି ନିର୍ଦ୍ଦିଷ୍ଟ ସମୟ ସୀମା ନାହିଁ । ବେଳେବେଳେ ଗୋଟିଏ ଗୋଟିଏ ରାତି ବିତିଯାଏ । ବେଳେବେଳେ ଗୋଟିଏ ଘଣ୍ଟାରେ ଶେଷ ହୋଇଥାଏ ।

ସେଲାନ୍‌ମାନେ ମୁଣ୍ଡରେ କୁସୁମ ତେଲ ମାଖି ଜୁଡା ତିଆରି କରିଥାନ୍ତି । ଜୁଡାରେ ସେଲାନ୍‌ମାନେ ନାନା ପ୍ରକାର ଜଙ୍ଗଲୀ ଫୁଲ ଖୋସିଥାନ୍ତି । ସେଲାନ୍‌ମାନେ ଆଣ୍ଠୁରୁ ଉପରକୁ ଶାଢି ପିନ୍ଧିଥାନ୍ତି ।

ଜୁଆଙ୍ଗମାନେ ନୃତ୍ୟ ଓ ଗୀତ ମାଧ୍ୟମରେ ଜୀବନକୁ ବେଶ୍ ଉପଭୋଗ କରିଥାନ୍ତି ।ତଇଳାରୁ ଫସଲ ଅମଳ ହୋଇଯିବା ପରେ ପ୍ରତିଦିନ ଗାଁରେ ସଞ୍ଜ ନଇଁଗଲାପରେ ଜୁଆଙ୍ଗ ପୁରପଲ୍ଲୀ ଉତ୍ସବମୁଖର ହୋଇଉଠେ । କଙ୍ଗେରମାନଙ୍କ ଚାଙ୍ଗୁର ଧୂନ୍, ସୁମଧୁର ଗୀତର ମୂର୍ଚ୍ଛନା ଏବଂ ସେଲାନ୍‌ମାନଙ୍କର ଅଙ୍ଗର ଅଳଙ୍କାର, ପାଦର ଘୁଙ୍ଗୁର ଶବ୍ଦରେ ସମଗ୍ର ଅଞ୍ଚଳ ରୋମାଞ୍ଚିତ ହୋଇଉଠେ । ନୃତ୍ୟ ଓ ଗୀତ ମାଧ୍ୟମରେ ଦୁଇ ଜଣ ଯୁବକ ଓ ଯୁବତୀ (ଭିନ୍ନ ଗୋତ୍ର)ମାନଙ୍କ ମଧ୍ୟରେ ସଂପର୍କ ବୃଦ୍ଧି ପାଇଥାଏ । ଏହି ମଧୁର ସଂପର୍କ ପରବର୍ତ୍ତୀ ସମୟରେ ବିବାହର ରୂପ ନେଇଥାଏ । ନୃତ୍ୟ ଚାଲିଥିବାବେଳେ ଯେତେବେଳେ ସେମାନେ ପରସ୍ପର ମୁହାଁମୁହିଁ ହୋଇଥାନ୍ତି ସେତେବେଳେ ଯୁବକମାନେ ପ୍ରତିପକ୍ଷ ଯୁବତୀମାନଙ୍କ ପାଦ ଉପରେ ପାଦ ରଖି ଦେଇଥାନ୍ତି । ଯେଉଁ ଯୁବକ ଯେଉଁ ଯୁବତୀଙ୍କୁ ଭଲ ପାଉଥାଏ ସେହି ଯୁବକ ତାହାର ପାଦ ଉପରେ ପାଦ ରଖିଥାଏ । ଏହା ଭଲ ପାଇବାର

ପ୍ରଥମ ନମୂନା ହୋଇଥାଏ । ଯଦି ଯୁବତୀଜଣକ ଯୁବକର 'ପାଦମତା'କୁ ନିରବରେ ସମର୍ଥନ କରେ, ନାଚ ଶେଷରେ ସଂପୃକ୍ତ ଯୁବକ ଯୁବତୀ ଏକ ସାଥୀରେ ରାତ୍ରୀଯାପନ କରିଥାନ୍ତି । ଏଭଳି ଭାବେ ନାଚ ଶେଷରେ ଯୋଡି ଯୋଡି ଯୁବକ-ଯୁବତୀ (ଭିନ୍ନଗୋତ୍ରୀ) ନିକଟସ୍ଥ ଜଙ୍ଗଲରେ ରାତ୍ରୀଯାପନ କରିବାକୁ ପଳେଇ ଯାଇଥାନ୍ତି । ଏହାପରେ ସେମାନଙ୍କ ମଧ୍ୟରେ ବିବାହ ଅନୁଷ୍ଠିତ ହୋଇଥାଏ । ନାଚପୂର୍ବରୁ ଯୁବକମାନେ ଯୁବତୀମାନଙ୍କୁ ଖୋଦେଇକରା କାଠ କିମ୍ବା ବାଉଁଶ ପାନିଆ ଉପହାର ଦେଇଥାନ୍ତି । ଏହା ଫଳରେ ଯୁବତୀମାନେ ଯୁବକମାନଙ୍କ ପ୍ରତି ଆକର୍ଷିତ ହୋଇପଡିଥାନ୍ତି ।

ସାଧାରଣତଃ ଗୋଟିଏ ଗ୍ରାମର ଏବଂ ସମାନ ଗୋତ୍ରଧାରୀ ଯୁବକ, ଯୁବତୀମାନେ ନାଚ ଗୀତ କରି ନଥାନ୍ତି । ଭିନ୍ନ ଗୋତ୍ରୀ ଏବଂ ଭିନ୍ନ ଗ୍ରାମର ଯୁବକ, ଯୁବତୀମାନେ ନାଚ ଗୀତ ଓ ପ୍ରେମ କରିଥାନ୍ତି । କାରଣ ଗୋଟିଏ ଗ୍ରାମର କିମ୍ବା ସମଗୋତ୍ରୀଙ୍କ ମଧ୍ୟରେ ପ୍ରେମ କିମ୍ବା ବିବାହ ସଂଭବ ହୋଇ ନଥାଏ ।

## ଜୁଆଙ୍ଗ ପାରଂପରିକ ଚିତ୍ରକଳା
*(traditional Juang art)*

**[ ତଥ୍ୟ ସହାୟତା**
**କାଠ ପାନିଆ ଶିଳ୍ପୀ ଗଣେଶ୍ୱର ଜୁଆଙ୍ଗ ଏବଂ ପବନା ଜୁଆଙ୍ଗ**
**ଗ୍ରାମ: ଗୁପ୍ତଗଙ୍ଗା, ବ୍ଲକ୍: ବାଂଶପାଳ ।**
**ଏବଂ ଦୁର୍ଗା ପ୍ରସାଦ ପଟ୍ଟନାୟକ**
**ଅଧ୍ୟକ୍ଷ, ଶ୍ରୀଅରବିନ୍ଦ ଚାରୁ ଓ କାରୁକଳା ମହାବିଦ୍ୟାଳୟ, କେନ୍ଦୁଝର]**

ଗ୍ରାମ ମଝିରେ ଥିବା 'ମଜାଙ୍ଗ' ହେଉଛି ଜୁଆଙ୍ଗମାନଙ୍କ ସାଂସ୍କୃତିକ ଓ ସାମାଜିକ ଜୀବନର ପ୍ରାଣକେନ୍ଦ୍ର । ଏହା ଜୁଆଙ୍ଗମାନଙ୍କର ଗୋଷ୍ଠୀଜୀବନକୁ ଅଧିକ ସମୃଦ୍ଧ ମଧ୍ୟ କରିଥାଏ । ପର୍ବପର୍ବାଣି ଉତ୍ସବ ସମୟରେ 'ମଜାଙ୍ଗ'ର କାନ୍ଥକୁ ଜୁଆଙ୍ଗମାନେ ନାନା ପ୍ରକାର ଚିତା ଓ ଝୋଟିରେ ସଜେଇଥାନ୍ତି । ଜୁଆଙ୍ଗ ଯୁବତୀମାନେ ନିକଟସ୍ଥ ପାହାଡିଆ ଉଚ୍ଚ ଭୂମିରୁ ଗେରୁଆ, ହଳଦିଆ, କଳା ଓ ଅନ୍ୟାନ୍ୟ ରଙ୍ଗୀନ୍ ମାଟି ସଂଗ୍ରହ କରି ଆଣନ୍ତି । ଏହି ରଙ୍ଗୀନ୍ ମାଟିକୁ ପାଣିରେ ବତୁରେଇ ଜୁଆଙ୍ଗ ସେଲାନ୍‌ମାନେ କାନ୍ଥକୁ ଲିପାପୋଛା କରନ୍ତି । ଏହା ଦ୍ୱାରା କାନ୍ଥ ଅଧିକ ଆକର୍ଷଣୀୟ ଦେଖାଯାଏ । ସ୍ତ୍ରୀଲୋକମାନେ ଅରୁଆ ଚାଉଳକୁ ଗୁଣ୍ଡ କରି ବା ଶିଳରେ ବାଟି ପାଣିରେ ଗୋଳେଇ କାନ୍ଥରେ ଝୋଟି ଚିତା

ପକାଇଥା'ନ୍ତି । କାଛରେ ଏହି ଝୋଟି ଚିତ୍ରକଳା ହିଁ ଜୁଆଙ୍ଗମାନଙ୍କର କଳାନୈପୁଣ୍ୟତାର ପରିଚୟ ପ୍ରଦାନ କରିଥାଏ । ଅବଶ୍ୟ ପର୍ବପର୍ବାଣି ସମୟକୁ ବାଦ୍ ଦେଲେ ବର୍ଷର ଅନ୍ୟାନ୍ୟ ସମୟରେ ଜୁଆଙ୍ଗ ମଡାଙ୍କର କାଛରେ ଏସବୁ ଝୋଟିଚିତ୍ର ଦେଖିବାକୁ ମିଳି ନଥାଏ । ଜୁଆଙ୍ଗମାନଙ୍କ କାଛରେ ହୋଇଥିବା ଝୋଟିରେ ବିଶେଷକରି ସେମାନଙ୍କର ପାରଂପରିକ ପର୍ବପର୍ବାଣିର ମୌଳିକ ତଥ୍ୟ, ଶିକାରଯାତ୍ରାର ମୁହୂର୍ତ୍ତ, ପଶୁପକ୍ଷୀ, ବୃକ୍ଷଲତା, ନାନା ପ୍ରକାର ଫୁଲର ଚିତ୍ର ଦେଖିବାକୁ ମିଳିଥାଏ ।

ଜୁଆଙ୍ଗମାନଙ୍କର ପାନିଆ ଗଠନ ଶୈଳୀ ବେଶ୍ ମନମୁଗ୍ଧକର । ସେମାନେ କାଠ, ବାଉଁଶ ଏବଂ ଶିଙ୍ଗରେ ନାନା ପ୍ରକାର କଳାତ୍ମକ ପାନିଆ ପ୍ରସ୍ତୁତ କରିଥା'ନ୍ତି । ଜୁଆଙ୍ଗମାନଙ୍କର ପାନିଆ ବଜାରରେ ଏକ ନିଆରା ଭାଉ ଦାବି କରିଥାଏ । ଅତୀତରେ ପ୍ରାୟ ସବୁ ଗାଁରେ ଜୁଆଙ୍ଗମାନେ ପାନିଆ ପ୍ରସ୍ତୁତ କରୁଥିଲେ । ମାତ୍ର, ଅଧିର ଦିନରେ ଜୁଆଙ୍ଗମାନେ ଆଉ ପାନିଆ ତିଆରି କରିବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । କେବଳ ଗୁପ୍ତଗଙ୍ଗା ଗ୍ରାମର ଗୋଟିଏ ଦୁଇଟି ପରିବାର ଏବଂ ବାର୍ହାଗଡର ଗୋଟିଏ ପରିବାରକୁ ଛାଡିଦେଲେ ଆଉ କେହି ଜୁଆଙ୍ଗ ପାନିଆ ପ୍ରସ୍ତୁତ କରୁନାହାନ୍ତି । ଗୁପ୍ତଗଙ୍ଗା ଗ୍ରାମର



▶ ଜୁଆଙ୍ଗମାନଙ୍କ କାଠ ପାନିଆ

ଗଣେଶ୍ୱର ଜୁଆଙ୍ଗ, ପବନା ଜୁଆଙ୍ଗ, ଶୁକ ଜୁଆଙ୍ଗ ଏବଂ ଗୋଲଖ ଜୁଆଙ୍ଗଙ୍କ ଭଳି କିଛି ଯୁବକ ଏହି ପାନିଆ ଚିତ୍ରକଳାକୁ ବଞ୍ଚାଇ ରଖିବାରେ ସହାୟକ ହୋଇପାରିଛନ୍ତି ।

ମୁଣ୍ଡ ବାଳକୁ ଯତ୍ନର ସହିତ କୁଣ୍ଡାଇବା ପାଇଁ ଜୁଆଙ୍ଗମାନେ ପଶୁପକ୍ଷୀଙ୍କ ଶିଙ୍ଗ, ବାଉଁଶ ବା କାଠ ନିର୍ମିତ ପାନିଆ ବ୍ୟବହାର କରିଥାନ୍ତି । ମାତ୍ର, ଏହି ପାନିଆଗୁଡିକର ଗଠନ ଶୈଳୀକୁ ଲକ୍ଷ୍ୟ କଲେ ଜୁଆଙ୍ଗମାନଙ୍କର କଳାତ୍ମକ ଦିଗ ପ୍ରତି ସଚେତନ ହେବାକୁ ପଡିଥାଏ । ଏହି ପାନିଆଗୁଡିକ ବିଭିନ୍ନ ରୂପରେ ପ୍ରସ୍ତୁତ ହୋଇଥାଏ । କାଠ ବା ବାଉଁଶ ନିର୍ମିତ ଏହି ପାନିଆଗୁଡିକରେ ନାନା ପ୍ରକାର କ୍ଷୁଦ୍ରଚିତ୍ର *(miniature)* ଖୋଦିତ ହୋଇଥାଏ କିମ୍ବା ଅଙ୍କିତ ହୋଇଥାଏ । ଜଙ୍ଗଲକୁ ଶିକାର କରି ଯାଉଥିବା ମଣିଷର ଚିତ୍ର, ଗଧ କିମ୍ବା ପଶୁ ଉପରେ ବସିଥିବା ମଣିଷର ଚିତ୍ର, ଡାଳି, ଲତା, ଛକି, ଠିକିରି, ମଣିଷ, ପଶୁପକ୍ଷୀଙ୍କର ରେଖାଚିତ୍ର ଲୁହାର ଡାମ୍ଫଣ, ପିରକ କଣ୍ଟା କିମ୍ବା ଅନ୍ୟାନ୍ୟ ଖୋଦେଇକାରୀ ଯନ୍ତ୍ର ଦ୍ୱାରା ଅଙ୍କନ କରାଯାଇଥାଏ । ଅତି ସୁନ୍ଦର ଭାବେ ଜୁଆଙ୍ଗ ଚିତ୍ରଶିଳ୍ପୀ ପାନିଆଗୁଡିକରେ ଏଭଳି କ୍ଷୁଦ୍ରଚିତ୍ର ଅଙ୍କନ କରି ନିଜର ଚିତ୍ରକଳା ଶିଳ୍ପର ପରିଚୟ ଦେଇଥାଏ । ସୂକ୍ଷ୍ମ ଖୋଦନ କଳା ଜୁଆଙ୍ଗମାନଙ୍କୁ ଅନ୍ୟମାନଙ୍କଠାରୁ ଭିନ୍ନ କରିଥାଏ । ଜୁଆଙ୍ଗମାନେ କାଠ,



ବାଉଁଶ ବ୍ୟତୀତ ହରିଣ, ସମ୍ବର ଭଳି ପଶୁମାନଙ୍କ ଶିଙ୍ଗରେ ମଧ୍ୟ ପାନିଆ ପ୍ରସ୍ତୁତ କରିଥା'ନ୍ତି । ତେବେ ଆଜିର ଦିନରେ ଏହି ଶିଙ୍ଗ ପାନିଆ ଏବେ ଆଉ ପ୍ରସ୍ତୁତ ହେଉଥିବାର ଦେଖାଯାଉନାହିଁ ।

ବାଉଁଶ ନିର୍ମିତ ଏକ ବାଦ୍ୟଯନ୍ତ୍ର 'ବଂଶୀ' ଉପରେ ମଧ୍ୟ ଢୁଆଙ୍ଗମାନେ ନାନା ପ୍ରକାର ଖୋଦନ ଚିତ୍ରକଳାର ସ୍ପର୍ଶ ଦେଇଥାନ୍ତି । ସେମାନେ ମାଟି ହାଣ୍ଡିରେ ନାନା ପ୍ରକାର ଚିତ୍ର ଆଙ୍କିଥାନ୍ତି । କ୍ଷୁଦ୍ର ନାସଦାନିରେ ମଧ୍ୟ ଅନୁରୂପ ଚିତ୍ରକଳା ଦେଖିବାକୁ ମିଳିଥାଏ । ଢୁଆଙ୍ଗମାନେ ଏହି ଚିତ୍ରିତ ନାସଦାନିକୁ ସବୁବେଳେ ପାଖେପାଖେ ରଖିବାକୁ ପସନ୍ଦ କରିଥା'ନ୍ତି । ସେହିଭଳି ଲାଉଡଙ୍କି, ଲାଉ ମାଣ ଓ ଲାଉ ତୁମ୍ବାରେ ମଧ୍ୟ ଏଭଳି ଚିତ୍ର ଦେଖିବାକୁ ମିଳେ । ସବୁଠୁ ବଡ଼ କଳାତ୍ମକ ଆକର୍ଷଣ ହେଉଛି ଢୁଆଙ୍ଗମାନଙ୍କ ମଣ୍ଡଘରେ (ମଜାଙ୍ଗ)ରେ ବ୍ୟବହୃତ ହୋଇଥିବା କାଠ ଖୁଣ୍ଟମାନଙ୍କରେ ଖୋଦେଇ ଚିତ୍ରକଳା । ଏହି କାଠ ଖୋଦେଇ କଳାରେ ଯେଉଁ ଜ୍ୟାମିତିକ ଚିତ୍ରାଙ୍କନ ପରିଲକ୍ଷିତ ହୋଇଥାଏ, ଏହାର ତୁଳନା ନାହିଁ । ଅପରପକ୍ଷେ, ଢୁଆଙ୍ଗମାନଙ୍କର ଏହି ଖୋଦେଇ ଶିଳ୍ପ ସେମାନଙ୍କର ନିଜସ୍ୱ ଓ ମୌଳିକ । ସେମାନଙ୍କ ମଜାଙ୍ଗର ଖୁଣ୍ଟର ନକ୍ସା ସାଙ୍କେତିକ ତତ୍ତ୍ୱଭାବର ପରିଚୟ ପ୍ରଦାନ କରିଥାଏ ।



▶ ଢୁଆଙ୍ଗମାନଙ୍କ ମଣ୍ଡଘର କାନ୍ଥରେ ଖୋଦେଇ କରାଯାଇଥିବା ପାରଂପରିକ ଚିତ୍ର



▶ ଜୁଆଙ୍ଗମାନଙ୍କ ମଣ୍ଡଘରର କାନ୍ଥରେ ପଡିଥିବା ଝୋଟି ଚିତା

ଏହାବ୍ୟତୀତ ସେମାନଙ୍କର ପାରଂପରିକ ପର୍ବପର୍ବାଣିର ମୌଳିକ ତଥ୍ୟ ମଧ୍ୟ ଏହି ଖୋଦେଇ ଶିଳ୍ପକଳାରେ ପ୍ରତିଫଳନ ହୋଇଥିବାର ଦେଖିବାକୁ ମିଳିଥାଏ । ଏହାବ୍ୟତୀତ ଜୁଆଙ୍ଗ ରମଣୀର ଅଙ୍ଗରେ ଶୋଭାପାଉଥିବା ନାନା ପ୍ରକାର ଅଳଙ୍କାର ଓ ଗହଣା ସେମାନଙ୍କ କଳାତ୍ମକ ଜୀବନକୁ ଅଧିକ ସମୃଦ୍ଧ କରିଥାଏ । ବିଶେଷକରି ଜୁଆଙ୍ଗ ରମଣୀମାନଙ୍କର ଶରୀରର ବିଭିନ୍ନ ଅଙ୍ଗରେ ଚିତା କୁଟେଇଥିବା ଦୃଶ୍ୟ *(tattooing)* ବେଶ୍ ମନଲୋଭା ହୋଇଥାଏ । ସ୍ତ୍ରୀ ଲୋକମାନେ ନାକରେ, ହାତରେ, ବାହୁରେ, ଗଳାରେ ଚିତା କୁଟେଇଥାନ୍ତି । ଏହି ଚିତାକୁଟାଇବା ଜୁଆଙ୍ଗ ଚିତ୍ରକଳାର ଅନ୍ୟ ଏକ ପରିଚୟ ବହନ କରିଥାଏ । ସ୍ତ୍ରୀଲୋକମାନେ ଚିତା କୁଟେଇଥିଲେ ସେମାନଙ୍କ ଉପରେ ଚଡ଼କ (ବଜ୍ରପାତ) ପଡିବନି ଏବଂ ଭୂତପ୍ରେତ ଡରି ଦୂରକୁ ପଳେଇବେ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଅପରପକ୍ଷେ, ଜୁଆଙ୍ଗମାନେ ପୋହଳ ମାଳିକୁ ସୁନ୍ଦର ଭାବେ ଗୁଛି ହାର ପ୍ରସ୍ତୁତ କରି ପିନ୍ଧିଥା'ନ୍ତି ।

ଜୁଆଙ୍ଗମାନଙ୍କର ଚିତ୍ରକଳାକୁ ମୁଖ୍ୟତଃ ପାଞ୍ଚଟି ଭାଗରେ ବିଭକ୍ତ କରାଯାଇପାରେ ।



▶ ଜୁଆଙ୍ଗମାନଙ୍କ ମଣ୍ଡଘର କାଛରେ ଖୋଦେଇ କରାଯାଇଥିବା ପାରଂପରିକ ଚିତ୍ର

୧. ପାରଂପରିକ ନକ୍ସା

୨. ପାନିଆ ଗଠନ ଶୈଳୀ

୩. ଶରୀରରେ ବ୍ୟବହୃତ ଅଳଙ୍କାର

୪. କାଛଚିତ୍ର (ମଣ୍ଡଘର)

୫. କାଠ ଖୋଦନ ଶିଳ୍ପକଳା (ମଣ୍ଡଘର)

ଜୁଆଙ୍ଗମାନଙ୍କର ଚିତ୍ରକଳାରେ ସେମାନଙ୍କର ଦୈନନ୍ଦିନ ଜୀବନଶୈଳୀର ପ୍ରତିଫଳନ ଦେଖିବାକୁ ମିଳିଥାଏ । ଗ୍ରାମ୍ୟ ଜୀବନ ଓ ପାରଂପରିକ କୃଷି, ଜଙ୍ଗଲ ଓ ଶିକାରଯାତ୍ରା ଆଦି ସମୟର ସୁକ୍ଷ୍ମ ମୁହୂର୍ତ୍ତମାନ ସେମାନଙ୍କର ଚିତ୍ରକଳାରେ ପରିସ୍ଫୁଟିତ ହୋଇଥାଏ । ଜୁଆଙ୍ଗମାନଙ୍କର 'ତଇଳା' (ପୋଡୁଚାଷ ପାଇଁ ବ୍ୟବହୃତ ଚାଷ ଜମି) ମଧ୍ୟ ବେଶ୍ କଳାତ୍ମକ ମନେ ହୋଇଥାଏ । ଶୀତଦିନେ ଏହି ତଇଳାଟି କେଉଁ ଏକ ଶିଳ୍ପୀର କାନ୍‌ଭାସ୍‌ର ଭ୍ରମ ସୃଷ୍ଟି କରିଥାଏ । କାଙ୍ଗୁ (ସୁଆଁ), ଗଙ୍ଗେଇ (ବାଜରା), ଜାଲି, ରାମତିଳା (ରାଶି), ମାଣ୍ଡିଆ (କୁଦୁ), ମକା (ଜୁଆଣି), ଧାନ (ବୁଆ), ବରୁଗୁଡି (ଗୁମା), ସୋରିଷ (ସୁରୁଷୁ) ଭଳି ଜାତିଜାତିକା ଫସଲ, ଫୁଲ ଓ ଫଳରେ ଭରା ଏହି ଜୁଆଙ୍ଗମାନଙ୍କର



▶ ଜୁଆଙ୍ଗମାନଙ୍କ ମଣ୍ଡଘର କାଛରେ ଖୋଦେଇ କରାଯାଇଥିବା ପାରଂପରିକ ଚିତ୍ର

'ଡଇଳା' ବେଶ୍ ମନଲୋଭା ହୋଇଥାଏ । ଗଙ୍ଗେଇର ଲମ୍ବାଲମ୍ବା କେଣ୍ଡା. ହଳଦି ଗୁରୁଗୁରୁ ସୋରିଷ ଫୁଲ. ପାଚିଲା ଧାନ କ୍ଷେତ. ଜଟା ଆକୃତିର ମଣ୍ଡିଆ କେଣ୍ଡା ଆଦି 'ଡଇଳା'କୁ ଆକର୍ଷଣୀୟ କରି ଦେଇଥାଏ ।



ଜୁଆଙ୍ଗମାନଙ୍କ ମଣ୍ଡଘର କାନ୍ଥରେ ଖୋଦେଇ କରାଯାଇଥିବା ପାରଂପରିକ ଚିତ୍ର



ଜୁଆଙ୍ଗମାନଙ୍କ ମଣ୍ଡଘର କାଛରେ ଖୋଦେଇ କରାଯାଇଥିବା ପାରଂପରିକ ଚାଙ୍ଗୁ ନୃତ୍ୟର ଦୃଶ୍ୟ

ଜୁଆଙ୍ଗମାନଙ୍କ ମଣ୍ଡଘର କାନ୍ଥରେ ଖୋଦେଇ କରାଯାଇଥିବା ପାରଂପରିକ ଶିକାର ଯାତ୍ରାର ଦୃଶ୍ୟ



ଜୁଆଙ୍ଗମାନଙ୍କ ମଣ୍ଡଘର କାନ୍ଥରେ ଖୋଦେଇ କରାଯାଇଥିବା ପାରଂପରିକ ଚିତ୍ର





ଜୁଆଙ୍ଗମାନେ ବ୍ୟବହାର କରୁଥିବା ମୃଗ ଶିଙ୍ଗର ପାନିଆ



## ଜୁଆଙ୍ଗଙ୍କ 'ହାଣ୍ଡିଆ ହାଟ'

ଆପଣ କେବେ କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ ଅଞ୍ଚଳକୁ ବୁଲିଗଲେ ରାସ୍ତା ପାର୍ଶ୍ୱରେ ମହିଳା ଓ ପୁରୁଷମାନେ ବଡ଼ବଡ଼ ସିଲ୍‌ଭର ଡେକ୍‌ଚି, ଗରାରେ ହାଣ୍ଡିଆ ଧରି ବିକ୍ରି କରୁଥିବାର ଦେଖିଥିବେ । ବଣ ଜଙ୍ଗଲଘେରା ଜୁଆଙ୍ଗ ବସ୍ତି ମୁଣ୍ଡରେ ବସେ 'ହାଣ୍ଡିଆ' ହାଟ । ହାଣ୍ଡିଆ ହାଟରେ କେବଳ ହାଣ୍ଡିଆ ବିକ୍ରି ନ ହୋଇ ବରଂ ଅନ୍ୟାନ୍ୟ ସାମଗ୍ରୀ ମଧ୍ୟ ବିକ୍ରି ହୋଇଥାଏ । ତେବେ ହାଣ୍ଡିଆ ହିଁ ଜୁଆଙ୍ଗମାନଙ୍କୁ ହାଟ ପର୍ଯ୍ୟନ୍ତ ଟାଣି ଆଣିଥାଏ । ହାଣ୍ଡିଆ ପାନ କରି ଜୁଆଙ୍ଗମାନେ ନିଜନିଜ ଭିତରେ ଥିବା ସୁଖଦୁଃଖକୁ ପରସ୍ପର ମଧ୍ୟରେ ବାଣ୍ଟିଥାନ୍ତି । ଆଦିବାସୀବହୁଳ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଉପାନ୍ତ ଅଞ୍ଚଳ ଓ ଦୂରଦୂରାନ୍ତରୁ ଆସୁଥିବା ଲୋକଙ୍କ ପାଇଁ ଏହି ହାଣ୍ଡିଆ ହାଟଟି ମିଳିତ ହେବାର ଏକ ମାଧ୍ୟମ ସୃଷ୍ଟି କରିଥାଏ ।

ଦିନତମାମ୍ ହାଡଭଙ୍ଗା ଖଟଣି ପରେ ସଞ୍ଜ ବେଳକୁ ହାଣ୍ଡିଆ ହାଟରେ ପହଞ୍ଚି ଜୁଆଙ୍ଗମାନେ ହାଣ୍ଡିଆ ପିଇ ପ୍ରକୃତିକୁ ବେଶ୍ ଉପଭୋଗ କରିଥାନ୍ତି । ସପ୍ତାହର ଏକ ନିର୍ଦ୍ଦିଷ୍ଟ ଦିନ ଜୁଆଙ୍ଗମାନେ



▶ ଜୁଆଙ୍ଗଙ୍କ 'ହାଣ୍ଡିଆ ହାଟ'

ଏହି ହାଟରେ ଏକତ୍ରିତ ହୋଇ କିଣାବିକା କରିବା ସାଙ୍ଗକୁ ଢୋଲେ ଢୋଲେ ହାଣ୍ଡିଆ ପିଇ ସଞ୍ଜକୁ ନିଜନିଜର ଘରକୁ ଫେରନ୍ତି । ଆଉ ଦଳଦଳ ହୋଇ ଜୁଆଙ୍ଗଙ୍କ ଏହି ହାଟ ଫେରନ୍ତି ଦୃଶ୍ୟ ହିଁ ଅତି ଚମତ୍କାର । ଜୁଆଙ୍ଗମାନେ ପରସ୍ପରର କାନ୍ଧରେ ହାତକୁ ଛନ୍ଦି ଗୀତ ଗାଇଗାଇ ହାଣ୍ଡିଆ ନିଶାରେ ଘରକୁ ଫେରୁଥିବାର ଦୃଶ୍ୟ ସତରେ ଅବର୍ଣ୍ଣନୀୟ । ସବୁ କିଛି ଦୁଃଖ ଯନ୍ତ୍ରଣାକୁ ଭୁଲିଯାଇ କେବଳ ପ୍ରକୃତି ଉଦ୍ଦେଶ୍ୟରେ ଗୀତ ଗାଇ ନାଚିନାଚି ଜୁଆଙ୍ଗମାନେ ସମୟତକ କାଟି ଦିଅନ୍ତି ।

ଜୁଆଙ୍ଗମାନଙ୍କ ହାଣ୍ଡିଆ ଏକ ପ୍ରାକୃତିକ ପାନୀୟ । ଏହା ସେମାନଙ୍କର ପାରଂପରିକ ପାନୀୟ ମଧ୍ୟ । ସେମାନଙ୍କ ହାଣ୍ଡିଆରେ ନଥାଏ ବ୍ୟାଟେରୀ ଗୁଣ୍ଡ କିମ୍ବା ୟୁରିଆ ସାର ଭଳି ବିଷାକ୍ତ ପଦାର୍ଥ । ପ୍ରାକୃତିକ ଉପାୟରେ ପ୍ରସ୍ତୁତ କରାଯାଉଥିବା ହାଣ୍ଡିଆ ଜୁଆଙ୍ଗମାନଙ୍କ ଶରୀରକୁ ସୁସ୍ଥ ରଖିବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ହାଣ୍ଡିଆ ପ୍ରସ୍ତୁତି ପାଇଁ ଜୁଆଙ୍ଗମାନେ ଏକ ବିଶେଷ ଧରଣର ଅରୁଆ ଖୁଦ ଚାଉଳକୁ ବ୍ୟବହାର କରିଥାନ୍ତି । ଭାତ ରାନ୍ଧିବା ପରେ ଏହି ଭାତକୁ ପ୍ରଥମେ ଖରାରେ ଶୁଖାଇ ଦିଆଯାଏ । ଗୋଟିଏ ଦୁଇଟି ଖରା ଖାଇବା ପରେ ଏହି ଭାତ ଅଳ୍ପ ଶୁଖିଯାଏ ଏବଂ ଏହି ଅଳ୍ପ ଶୁଖିଲା ଭାତକୁ ଏକ ମାଟି ହାଣ୍ଡିରେ ପୂରେଇ ଢାଙ୍କୁଣୀ ଦ୍ୱାରା ଘୋଡେଇ ଗୋଟିଏ ସପ୍ତାହ ରଖାଯାଏ । ହାଣ୍ଡି ଭିତରେ ଘୋଡେଇ ରଖିବା ଦ୍ୱାରା ଉତ୍ତାପ ସୃଷ୍ଟି ହୋଇ ଓ



▶ ଜୁଆଙ୍ଗଙ୍କ 'ହାଣ୍ଡିଆ ହାଟ'



▶ ଜୁଆଙ୍ଗଙ୍କ 'ହାଣ୍ଡିଆ ହାଟ'

ବ୍ୟାକ୍‌ଟେରିଆ ଅଣୁଜୀବଙ୍କ ପ୍ରଭାବରେ ଭାତ ପଚିବାକୁ ଆରମ୍ଭ କରିଥାଏ । ଭାତ ପଚି ତଳକୁ ପାଣି ଜମିଯାଏ ଓ ଉପରକୁ ପଚା ଭାତ ରହିଥାଏ । ତଳକୁ ଯେଉଁ ପାଣି ରହିଥାଏ, ଏହାକୁ 'ରସି'କହନ୍ତି । ଏହି ରସି ହିଁ ବେଶି ନିଶା କରେଇଥାଏ । ଏହି ହାଣ୍ଡିଆରେ ଜୁଆଙ୍ଗମାନେ ଜଙ୍ଗଲୀ ଗଛର ଚେର ଓ ପତ୍ରକୁ ବାଟି ପ୍ରସ୍ତୁତ କରିଥିବା ଔଷଧୀୟ ଗୁଳି 'ମଳିକା' ମିଶେଇଥାନ୍ତି ।

ଜୁଆଙ୍ଗ ମହିଳାମାନେ ବଡ଼ବଡ଼ ସିଲ୍‌ଭର ହାଣ୍ଡିରେ ହାଣ୍ଡିହାଣ୍ଡି ହାଣ୍ଡିଆ ବିକ୍ରି କରିବାକୁ ହାଟକୁ ଆଣିଥାନ୍ତି । ଅନ୍ୟ ସଂପ୍ରଦାୟର ଆଦିବାସୀ ମହିଳାମାନେ ମଧ୍ୟ ହାଟରେ ହାଣ୍ଡିଆ ବିକ୍ରି କରିଥାନ୍ତି । ହାଟରେ ଖାଲି ହାଣ୍ଡିଆ ବିକ୍ରି ହେଉ ନଥାଏ, ଏହା ସାଙ୍ଗକୁ ବିଭିନ୍ନ ପ୍ରକାର ଗରମାଗରମ ଚାଖଣା ମଧ୍ୟ ବିକ୍ରି ହୋଇଥାଏ । ବିଶେଷକରି ମହିଳା ଓ ଯୁବତୀମାନେ ହାଣ୍ଡିଆ ବିକ୍ରି କରୁଥିବାବେଳେ ଏହି ହାଣ୍ଡିଆ ଦୋକାନକୁ ଲାଗି ଚାଖଣା ଦୋକାନ ମଧ୍ୟ ପଡିଥାଏ । ଚାଖଣା ଦୋକାନରେ ଉଇ, କାଇଠାରୁ ଆରମ୍ଭ କରି ସୋଲାଭଜା, ମଟର ଭଜା, ବୁଟ ସିଝା, ବରା, ପକୁଡି, ପିଆଜି, ଚେନାଚୁର ଆଦି ନାନା ପ୍ରକାର ଛଣାଛଣି ଜିନିଷ ମିଳିଥାଏ । ଜୁଆଙ୍ଗମାନେ ତଣ୍ଡି ପର୍ଯ୍ୟନ୍ତ ହାଟରୁ ହାଣ୍ଡିଆ ପିଇ

ଘରକୁ ଫେରୁଥିଲେ ମଧ୍ୟ ଆଜିର ତଥାକଥିତ ସଭ୍ୟ ଶିକ୍ଷିତ ମଣିଷ ଭଳି କୌଣସି ସ୍ଥାନରେ ବର୍ବର କାଣ୍ଡ ଘଟାଇ ନଥାନ୍ତି ।

ଜୁଆଙ୍ଗଙ୍କ ହାଣ୍ଡିଆ ହାଟ ସହିତ ସାଧାରଣ ହାଟ ମଧ୍ୟ ବସିଥାଏ । ସପ୍ତାହରେ ଥରେ ବସୁଥିବା ଏହି ହାଟରେ ଜୁଆଙ୍ଗମାନେ ଏକତ୍ରିତ ହୋଇ କିଣାବିକା କରିବା ସାଙ୍ଗକୁ ଭାବର ଆଦାନପ୍ରଦାନ ମଧ୍ୟ କରିବାର ସୁଯୋଗ ଲାଭ କରିଥାନ୍ତି । ଏହି ଅବସରରେ ହାଟରେ ମଧ୍ୟ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ମଧ୍ୟରେ ମନ ଦିଆନିଆ ଚାଲେ ଏବଂ ଏହି ହାଟରେ ହିଁ ଯୁବକ ଯୁବତୀ ପରସ୍ପରକୁ ଜୀବନ ସାଥୀ ଭାବେ ବାଛି ନେଇଥାନ୍ତି । ପୁଅ ଝିଅଙ୍କ ମନ ମିଳିବା ପରେ ପାରଂପରିକ ପଦ୍ଧତିରେ ବିବାହ ସଂପନ୍ନ ହୋଇଥାଏ । ଗୋଟିଏ ପଟେ ହାଣ୍ଡିଆ ହାଟ ବସିଥିବାବେଳେ ଅନ୍ୟ ପଟେ ସାଧାରଣ ହାଟ ବସିଥାଏ । ଏହି ହାଟରେ ନାନା ପ୍ରକାର ମନୋହରି ସାମଗ୍ରୀ, ପନିପରିବା, ଶୁଖୁଆ, ଲୁଣ, ଲଙ୍କା, ହଳଦି ଓ ଜଙ୍ଗଲୀ ଫଳ ଆଦି କିଣାବିକା ହୋଇଥାଏ । ଏହା ସାଙ୍ଗକୁ ହାଟକୁ ଲାଗି କୁକୁଡା ଲଢେଇ ପ୍ରତିଯୋଗିତାର ଆୟୋଜନ ହୋଇଥାଏ । ଏହି ପ୍ରତିଯୋଗିତାରେ ଜୁଆଙ୍ଗମାନେ ଅଂଶଗ୍ରହଣ କରି ମନ ଭରି ଉପଭୋଗ କରିଥାନ୍ତି ।

ପୂର୍ବ କାଳର ଜୁଆଙ୍ଗ ହାଟ ଓ ଆଜିର ହାଟ ମଧ୍ୟରେ ବହୁ ପ୍ରଭେଦ ଲକ୍ଷ୍ୟ କରାଗଲାଣି । ଆଜି ଏହି ହାଟରେ ବାହାରିଆ ଲୋକମାନେ ପଶି ହାଟ ସଂସ୍କୃତିକୁ କଳୁଷିତ କରିଦେଲେଣି । ଏବେ ଆଉ ଜୁଆଙ୍ଗଙ୍କ ହାଟରେ ଭାବର ଆଦାନପ୍ରଦାନ ବିଶେଷ ଭାବେ ଅନୁଭବ କରିହେଉନି, କେବଳ ଯାହା କିଣାବିକା କାର୍ଯ୍ୟଟି ସଂପାଦନ ହେଉଛି । ଆଧୁନିକତାର ଛାପରେ ଜୁଆଙ୍ଗଙ୍କ ଏହି ହାଟ ସଂସ୍କୃତି ଧୀରେଧୀରେ ବିଲୋପ ପାଇଗଲାଣି । ଜିଲ୍ଲାର ଅନ୍ୟ ହାଟମାନଙ୍କ ତୁଳନାରେ ଜୁଆଙ୍ଗମାନଙ୍କ ହାଟ ଟିକେ ନିଆରା । ବାଂଶପାଳ, ହରିଚନ୍ଦନପୁର, ଘଟଗାଁ ଓ ତେଲକୋଇ ବ୍ଲକ୍‌ର ଜୁଆଙ୍ଗ ଅଞ୍ଚଳରେ ଏହି ସାପ୍ତାହିକ ହାଟମାନ ବସିଥାଏ । ଏହି ହାଟରେ ବିଶେଷକରି ଜଙ୍ଗଲଜାତ ଦ୍ରବ୍ୟ ବିଶେଷ ଭାବେ କିଣାବିକା ହୋଇଥାଏ । ଖମ୍ବଆଳୁ, ପିତାଆଳୁ, ବଇଙ୍ଗା, ଅଁଳା, ବାହାଡା, ମହୁଲ, କେନ୍ଦୁ, ଚାହାର, ଖଜୁରୀ, ତେନ୍ତୁଳି, ହରିଡା, ଟୋଲା, ରାଶି, କୁସୁମ, ସୋରିଷ, ବିରି, ଶାଳ ମଞ୍ଜି, ଲାଖ, ପାଳୁଅ, ଝୁଣା, ମହୁ, ବହୁ ପ୍ରକାର ଜଙ୍ଗଲଜାତ ଔଷଧୀୟ ଚେରମୂଳି, ହାତପେଡା କୁସୁମ, କରଞ୍ଜ ଟୋଲା ତେଲ, ନଦୀ ନାଳରୁ ଧରା ଯାଇଥିବା ଚୁନା ମାଛ, ଆମ୍ବଷଢା, କୋଳିଗୁଣ୍ଡ, କୀଟପତଙ୍ଗ ଯଥା; ଉଇ, କାଇ, ପନିପରିବା ଯଥା; ଜୁଡଙ୍ଗ, କଖାରୁ, କାକୁଡି ଆଦି ଜୁଆଙ୍ଗ ହାଟରେ ଉପଲବ୍ଧ ହୋଇଥାଏ । ଏବେଏବେ ଜୁଆଙ୍ଗ ହାଟରେ ଶସ୍ତା ଶାଢି, ପିଲାଙ୍କ ପୋଷାକ, ଚାଇନିଜ୍ ଟର୍ଚ୍ଚ, ଲଣ୍ଠନ, ତେଲ, ଲୁଣ, ହଳଦି, ଚାଉଳ ଆଦି ବିକ୍ରି ହେଲାଣି ।

# ଜୁଆଙ୍ଗ ପହଲି, ଢଗଢମାଳି

*(riddles of the Juang)*

ଜୁଆଙ୍ଗମାନଙ୍କ ଲୋକସାହିତ୍ୟ ଖୁବ୍ ସମୃଦ୍ଧ । ଜୁଆଙ୍ଗ ଭାଷାର ଲିପି ନଥିଲେ ବି ଜୁଆଙ୍ଗମାନେ ପିଢ଼ି ପରେ ପିଢ଼ି ଲୋକକାହାଣୀ, ଲୋକଗୀତ ଓ ଅନ୍ୟାନ୍ୟ ଲୋକ ପରଂପରାକୁ ଉଜ୍ଜୀବିତ କରି ରଖିପାରିଛନ୍ତି । କେବଳ ମୌଖିକ ପଦ୍ଧତିରେ ଜୁଆଙ୍ଗମାନଙ୍କର ଲୋକସାହିତ୍ୟ ଓ ସଂସ୍କୃତି ନିୟମିତ ପ୍ରକାଶିତ ହୋଇ ଆଜିଯାଏ ବଞ୍ଚି ରହିଛି । ଜୁଆଙ୍ଗମାନଙ୍କର ଲୋକକାହାଣୀ ଓ ଲୋକଗୀତଗୁଡ଼ିକ ଆଦିବାସୀ ଭାଷା ସାହିତ୍ୟକୁ ସମୃଦ୍ଧ କରିବା ସହିତ ସେମାନଙ୍କ ସମାଜରେ ପ୍ରଚଳିତ ନାନା ପ୍ରକାର ଢଗଢମାଳି, ପ୍ରହେଳିକା (ପହଲି) ମଧ୍ୟ ବେଶ୍ ହୃଦୟସ୍ପର୍ଶୀ ।

ଜୁଆଙ୍ଗମାନଙ୍କର 'ପହଲି' ପରଂପରା ସେମାନଙ୍କର ବୁଦ୍ଧିମତାର ପରିଚୟ ଦେଇଥାଏ । ପଦ୍ୟରେ ପଦ୍ୟରେ ରହସ୍ୟମୟ ପ୍ରଶ୍ନ ଭରିଆରେ ଗୋଟିଏ ସଂକ୍ଷିପ୍ତ ଉତ୍ତର ଆଶା କରିବା ହେଉଛି 'ପହଲି' *(riddle)* ର ଉଦ୍ଦେଶ୍ୟ । ଜୁଆଙ୍ଗ ଲୋକସାହିତ୍ୟରେ 'ପହଲି'ର ଏକ ଗୁରତ୍ୱପୂର୍ଣ୍ଣ ଭୂମିକା ରହିଛି । କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ ଗ୍ରାମମାନଙ୍କରୁ ସଂଗ୍ରହ କରାଯାଇଥିବା କିଛି 'ପହଲି' ନିମ୍ନରେ ପ୍ରଦାନ କରାଗଲା ।

**ପହଲି ନଂ ୧.**

*"ମୁଇଞ୍ଜୋ ସେଲାନ୍‌କି, ନୁନୁ ଏଗୋଟା"*

**ଅର୍ଥ:** ଝିଅ ଗୋଟିଏ, ସ୍ତନ ତିନୋଟି

**ଉତ୍ତର:** ଚୂଲି

**ପହଲି ନଂ ୨.**

*"ବାଏ ବୋ ଅଞ୍ଜେ ଜାଜାନ୍‌ସୁନ୍*
*ଆଲୁଂ ବୋ ଅଞ୍ଜେ ଜାଜାନ୍‌ସୁନ୍"*

**ଅର୍ଥ:** ବାହାରକୁ ଯାଉଛୁ ଚାଟିଚାଟି, ଭିତରକୁ ଆସୁଛୁ ଚାଟିଚାଟି

**ଉତ୍ତର:** ଝାଡୁ

**ପହଲି ନଂ ୩.**

*"ଆଲୁଂ ବୋ ଅଞ୍ଜେ ବଇଂ ବଇଂ*
*ବାଏ ବୋ ଅଞ୍ଜେ ବଇଂ ବଇଂ"*

**ଅର୍ଥ:** ଭିତରକୁ ଯାଉଛୁ ମାଁ ମାଁ, ବାହାରକୁ ଆସୁଛୁ ମାଁ ମାଁ

ଉତ୍ତର: କବାଟ

ପଢ଼ଲି ନଂ ୪.

*"ବଣବ ଅନଢ଼୍ ଇତିବ୍ତ ବୁସୁରେ*
*ଇଞ୍ଜ୍ୟା ବୋ ତୁଙ୍ଗ୍ଜ ଲାଟପ୍ କେ"*

ଅର୍ଥ: ବଣକୁ ଗଲେ ପେଟ ଫୁଲାଏ. ଘରକୁ ଆସିଲେ ପେଟ ଶୁଖାଏ

ଉତ୍ତର: ଧନୁଶର

ପଢ଼ଲି ନଂ ୫.

*"ତକ ସେନା ଲୋ କୁଜିବୁଡି*
*ଆଇଂ ଅଣ୍ଡେ ସରଗ ବୁଲି"*

ଅର୍ଥ: ବସିଥା' ଲୋ କୁଜିବୁଢୀ. ମୁଁ ଯାଉଛି ସରଗ ବୁଲି

ଉତ୍ତର: କଲେଇ (ଝଡ଼ିପୋକ)ର ପର ଲାଗିଗଲେ ସେ ଉଡିଯାଏ ଏବଂ ଏତିକିବେଳେ ସେ ଉଇ ଜୁଙ୍ଗାକୁ ଏମିତି କହିଥାଏ ।

ପଢ଼ଲି ନଂ ୬.

*"ଇଞ୍ଜ୍ୟାର ଆସିକେ, ବଏର ଜଅତେ"*

ଅର୍ଥ: ଘର ଅଛି ଦୁଆର ନାହିଁ

ଉତ୍ତର: ଟସର ଖୋସା

ପଢ଼ଲି ନଂ ୭.

*"ମାମୁଆଁ ଇଞ୍ଜ୍ୟାର ମୁଇଁଙ୍ଖୋ ଅଳେଜ୍*
*ମେସାରଜ୍ ମୁଇଁ ଜେନା"*

ଅର୍ଥ: ମାମୁଁ ଘରେ ଗୋଠେ ଗାଇ, ରାତି ପାହିଲେ ମୋଟେ ନାଇଁ

ଉତ୍ତର: ତାରା

ପଢ଼ଲି ନଂ ୮.

*"ଅଲେଜା ତୁ କୀର ଜେନା*
*କନ୍ତାଙ୍ଗା ଇଜିଂ ଜେନା*
*କୀର ଉର୍କେ ଦବତେ ଦବତେ"*

ଅର୍ଥ: ଗାଈର କ୍ଷୀର ନାହିଁ
ବାଛୁରୀର ଗୋଡ ନାହିଁ
କ୍ଷୀର ପିଏ ଧାଇଁ ଧାଇଁ
ଉତ୍ତର: ବେଙ୍ଗକୁ ସାପ ଗିଳିବା ଘଟଣା

ପହଲି ନଂ ୯.
*"ଜାଳିଆ ରାଏ ତୋକୋ ସେରେ*
*ବିଲିମ୍ ତାଏ କିଡ଼କେ"*
ଅର୍ଥ: କାଳି ବସିଛି, ଗୋରୀ ନାଚୁଛି
ଉତ୍ତର: ଚୂଲିରେ ବସିଥିବା ମାଟି ହାଣ୍ଡି ଓ ନିଆଁ ଜଳିବା ଦୃଶ୍ୟ

ପହଲି ନଂ ୧୦.
*"ଜୁଙ୍କଆ ଟେରେଜ୍ ତୋକସେରେ"*
ଅର୍ଥ: ଖୁଣ୍ଟରେ ବସିଛି ନିଟି ଚଢ଼େଇ
ଉତ୍ତର: ମୁଣ୍ଡରେ କଳସୀ ଧରି ଠିଆ ହୋଇଥିବା
ଜଣେ ଜୁଆଙ୍ଗ ନାରୀ

ପହଲି ନଂ ୧୧.
*"ମୁଇଁଙ୍କୋ କିଲା ଷାଟିଏ ଗୋଟା ମଇଁଷି"*
ଅର୍ଥ: ଗୋଟିଏ କିଲାରେ ଷାଠିଏ ମଇଁଷି
ଉତ୍ତର: ଗଛର ଗୋଟିଏ ସ୍ଥାନରୁ ବାହାରିଥିବା ଏକାଧିକ ପଣସ

ପହଲି ନଂ ୧୨.
*"ଆଲିଙ୍ଗା ଅୟାକ୍ ତୋ ଲକା ସୁସୁର"*
ଅର୍ଥ: ଉପରେ ବସା, ତଳେ ଅଣ୍ଡା
ଉତ୍ତର: ମହୁଲଫୁଲ

ପହଲି ନଂ ୧୩.
*"ସାତପୁର କମ୍ବଳ ତାନ୍‌ତେରେ"*
ଅର୍ଥ: ସାତ ପରସ୍ତ କମ୍ବଳ ଘୋଡି ହୋଇଛି

**ଉତ୍ତର: ମକା**

**ପହଳି ନଂ ୧୪.**

*"ଉର୍‌କେ ବେଲାକ୍ କେ"*

**ଅର୍ଥ:** ଖାଉଛି, ବାନ୍ତି କରୁଛି

**ଉତ୍ତର: ମାଣ (ପାଇ) । ଧାନମପା ପାତ୍ର**

**ପହଳି ନଂ ୧୫.**

*"ବୁଇର ଗୁଚଗ୍ ସେରେ*

*ଜନଣ୍ଡ ଆବୁଜ୍ କେ"*

**ଅର୍ଥ:** ମା' ଶୋଇଛି, ପୁଅ ଚେଇଁଚି

**ଉତ୍ତର: ଶିଳ, ଶିଳପୁଆ**

**ପହଳି ନଂ ୧୬.**

*"ରାଜା ପିଙ୍ଗୁଡି ଆତେଜ୍‌ତେ ତେଜ୍‌ତେ"*

**ଅର୍ଥ:** ରଜାର ମାଳ ଛିଣ୍ଡେନାହିଁ

**ଉତ୍ତର: ପିମ୍ପୁଡି ମଧା**

**ପହଳି ନଂ ୧୭.**

*"ରାଜା ସେଡାକ୍‌ତେ ଆକୁକ୍‌ତେ କୁକ୍‌ତେ"*

**ଅର୍ଥ:** ରଜାର କବାଟ ଖୋଲେନାହିଁ

**ଉତ୍ତର: ଶିଆଳିଫଳ ।**

ଶିଆଳି ଫଳର ଗଠନ ଏଭଳି ଏହାକୁ ଖାଇବା ଖୁବ୍ କଷ୍ଟକର ହୋଇଥାଏ । ଏହାକୁ ପ୍ରଥମେ ନିଆଁରେ ପୋଡିବା ପରେ ଏହା ଭିତରୁ ଆଉ ଏକ ଫଳ ବାହାରେ । ଏହାକୁ ପୁଣି ଛେଚିଲେ ଏହା ମଧ୍ୟରୁ ଆଉ ଏକ ସ୍ତର ବାହାରେ ଏବଂ ଏହା ଭିତରେ ଯାଇ ମଞ୍ଜି ଥାଏ ।

**ପହଳି ନଂ ୧୮.**

*"ସେଲଗ୍ ଆଟାର୍ ଗେଣ୍ଡଳଂ"*

**ଅର୍ଥ:** କୁକୁର ଲାଞ୍ଜ ବଙ୍କା

**ଉତ୍ତର: ଛତା ବେଣ୍ଟ**

**ପହଲି ନଂ ୧୯.**

*"ରାଜା ବାରର ଉଇତେ ଉଇତେ"*

**ଅର୍ଥ:** ରଜାର ଭାର ଦୋହଲୁଥାଏ

**ଉତ୍ତର: ହଲହଲ ହଉଥିବା କୁକୁର ଲାଞ୍ଜ**

**ପହଲି ନଂ ୨୦.**

*"ବଣବ ଅତେ ଡେକ୍‌ସୁନ୍‌*

*ଇଞ୍ଜ୍ୟାବ ଡେତେ ଡେକ୍‌ସୁନ୍‌"*

**ଅର୍ଥ:** ବଣକୁ ଯାଏ କାନ୍ଦିକାନ୍ଦି, ଘରକୁ ଆସେ କାନ୍ଦିକାନ୍ଦି

**ଉତ୍ତର: ଗୋରୁ, ମଇଁଷି କିମ୍ବା ଛେଳି ବେକରେ ବନ୍ଧାଯାଇଥିବା ଘଣ୍ଟି**

**ପହଲି ନଂ ୨୧.**

*"ଆଗିଲାଡା ସିନି, ଅଚଡା ଅଳେଜ୍‌'*

**ଅର୍ଥ:** ଆଗରେ ଲଙ୍ଗଳ, ପଛରେ ଗାଇ

**ଉତ୍ତର: ଘୁଷୁରି**

ଘୁଷୁରୀର ମୁହଁ ଗୋଜିଆ ଏବଂ ଏହା ଏକ ଲଙ୍ଗଳ ମୁନ ଭଳି ହୋଇଥାଏ । ଘୁଷୁରି ତା' ମୁହଁ ସାହାଯ୍ୟରେ ପଙ୍କ, କାଦୁଅକୁ ଖୋଳିଖୋଳି ସେଥିରୁ ଖାଦ୍ୟର ସନ୍ଧାନ କରିଥାଏ । ଏହା ଏକ ଲଙ୍ଗଳ ହଳ କରୁଥିବାର ଭ୍ରମ ସୃଷ୍ଟି ହୋଇଥାଏ । ଏଣୁ ଭୁଆଙ୍ଗମାନେ ଘୁଷୁରିର ମୁହଁକୁ ଏକ ଲଙ୍ଗଳ ସହିତ ତୁଳନା କରିବା ସହ ତା' ଶରୀରକୁ ଏକ ଗାଇ ସହ ତୁଳନ୍ତା କରିଥା'ନ୍ତି । ବାସ୍ତବରେ ଏହା ଏକ ଅତି ଚମତ୍କାର ପହଲି ।

**ପହଲି ନଂ ୨୨.**

*"ଆଉତା ଉଳି, ନିଇତା ଉଳି, ମୁଜିଆ ଇଞ୍ଜ୍ୟା"*

**ଅର୍ଥ:** ସେପଟେ ପାହାଡ, ଏପଟେ ପାହାଡ, ମଝିରେ (ଶୂନ୍ୟରେ) ଘର

**ଉତ୍ତର: ବୁଢିଆଣୀ ବସା**

ବୁଢୀଆଣି ସାଧାରଣତଃ ଦୁଇଟି ଗଛଡାଳ ମଧ୍ୟରେ ଥିବା ଶୂନ୍ୟସ୍ଥାନରେ ନିଜର ଜାଲ ବୁଣିଥାଏ । ତାହାର ବସାଟି ଶୂନ୍ୟରେ ହିଁ ଥାଏ ।

**ପହଲି ନଂ ୨୩.**

*"ଖୁଣ୍ଟୁଆ ବେଳାଏ ବେଳାଏରେ'*

**ଅର୍ଥ: ଖୁଣ୍ଟରେ ବୁଲୁଛି ବେରାବେରା**

**ଉତ୍ତର: କଇଁଚି**

ମୁଣ୍ଡରୁ କେଶ କାଟୁଥିବାବେଳେ କଇଁଚି ବୁଲୁଥିବାର ଦୃଶ୍ୟକୁ ନେଇ ଏହି ପହଳିଟି ସୃଷ୍ଟି ହୋଇଛି ।

**ପହଲି ନଂ ୨୪.**

*"ଖୁଣ୍ଟୁଆ ଡକପେରେ ଟେରେଢ୍'*

**ଅର୍ଥ: ଖୁଣ୍ଟରେ ବସିଛି ଟିକି ଚଢ଼େଇ**

**ଉତ୍ତର: ମଧ୍ୟାହ୍ନ (ମୁଣ୍ଡ ଉପରେ ସୂର୍ଯ୍ୟ)**

ମଧ୍ୟାହ୍ନ ସମୟରେ ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିଯାଇଥାଏ । ଜୁଆଙ୍ଗମାନେ ସୂର୍ଯ୍ୟ ମୁଣ୍ଡ ଉପରେ ଅର୍ଥାତ୍ ମଧ୍ୟାହ୍ନ ବେଳକୁ ନେଇ ଏହି ପହଳଟି ସୃଷ୍ଟି କରିଛନ୍ତି ।

**ଜୁଆଙ୍ଗ ଢଗ:**

*"ନୂଆଁସିନି ଚଉଦଗୋଟା ଅଳେଢ୍*
*ଡଅଣ ଗୋକ୍ପେରକି ତିରିଶିଜଣ*
*ଡଅଣ ଉର୍ ମିନକ୍"*

**ଅର୍ଥ: ନଅ ନଙ୍ଗଳ ଚଉଦ ବଳଦ**
**ଭାତ ନେଉଥିଲେ ତିରିଶଜଣ**
**ଖାଇବସିଲା ଜଣେ ।**

**ସଂଗ୍ରହ ଉତ୍ସ:**

ଶାନ୍ତିଲତା ଜୁଆଙ୍ଗ, ଗ୍ରାମ: ଗୁପ୍ତଗଙ୍ଗା, ବ୍ଲକ୍: ବାଂଶପାଳ
ବାସନ୍ତୀ ଜୁଆଙ୍ଗ, ଗ୍ରାମ: କଦଳୀବାଡି, ବ୍ଲକ୍: ବାଂଶପାଳ
କୁନ୍ତଳା ଜୁଆଙ୍ଗ, ଗ୍ରାମ: ଗୁପ୍ତଗଙ୍ଗା, ବ୍ଲକ୍: ବାଂଶପାଳ
ଜାଇ ଜୁଆଙ୍ଗ, ଗ୍ରାମ: ବାଘପଣ୍ଡାଦର, ବ୍ଲକ୍: ବାଂଶପାଳ
ଶ୍ରୀକାନ୍ତ ଜୁଆଙ୍ଗ (ଶିକ୍ଷକ, ଏଜୁକେଶନ କଂପ୍ଲେକ୍ସ, ଗୋନାସିକା)
ରାମଚନ୍ଦ୍ର ଜୁଆଙ୍ଗ (ଶିକ୍ଷକ, ଏଜୁକେଶନ କଂପ୍ଲେକ୍ସ ଗୋନାସିକା)
ଶ୍ରୀଧର ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ, ଗ୍ରାମ: ବାହ୍ମଗଡ, ବ୍ଲକ୍: ବାଂଶପାଳ
ଶ୍ରୀଧର ଜୁଆଙ୍ଗ, କଲିଆ ଜୁଆଙ୍ଗ, ଶଙ୍କର୍ଷଣ ଜୁଆଙ୍ଗ, ଗ୍ରାମ: ଟେଙ୍କେଇନାଳି (ପାକୁଟୁସାହି), ବ୍ଲକ୍: ତେଲକୋଇ



# ପଞ୍ଚମ ପରିଚ୍ଛେଦ

## ଜୁଆଙ୍ଗ ପର୍ବପର୍ବାଣି

*(festivals of the Juang )*

ଜୁଆଙ୍ଗମାନଙ୍କ ଜୀବନଧାରା ପ୍ରକୃତି ଓ ଅରଣ୍ୟ ସହିତ ଓତପ୍ରୋତ ଭାବେ ଜଡ଼ିତ । ସେମାନେ ଅରଣ୍ୟ, ବୃକ୍ଷ, ଜଙ୍ଗଲ, ନଦୀ, ଝରଣା, ସୂର୍ଯ୍ୟ, ପୃଥିବୀ ଆଦି ପ୍ରାକୃତିକ ବସ୍ତୁକୁ ଦେବତା ରୂପେ ପୂଜା କରନ୍ତି । ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ତାଙ୍କ ଦେବଦେବୀ ଅରଣ୍ୟରେ, ପାହାଡରେ ଏବଂ ନଦୀ କିମ୍ବା ଝରଣାରେ ଅବସ୍ଥାନ କରନ୍ତି । ଜୁଆଙ୍ଗମାନେ ବାର ମାସରେ ତେର ପର୍ବ ପାଳନ କରିଥାନ୍ତି । ପର୍ବପର୍ବାଣି ପାଳନ ମାଧ୍ୟମରେ ସେମାନେ ଏକତ୍ରିତ ହେବାର ସୁଯୋଗଲାଭ କରିଥା'ନ୍ତି । ପ୍ରତ୍ୟକ ପର୍ବପର୍ବାଣିମାନଙ୍କରେ ଜୁଆଙ୍ଗମାନେ ସବୁ କାମଧନ୍ଦା ଛାଡି ଗାଁ ମଣ୍ଡଘରେ ଏକଜୁଟ୍ ହୋଇ ଗୋଷ୍ଠୀଜୀବନକୁ ଅଧିକ ସୁଦୃଢ଼ କରିଥା'ନ୍ତି । ଏହି ପର୍ବପର୍ବାଣି ପାଳନ ମାଧ୍ୟମରେ ଜୁଆଙ୍ଗମାନଙ୍କର ସାମାଜିକ-ସାଂସ୍କୃତିକ ଭାବଧାରା ଓ ଗୋଷ୍ଠୀଗତ ଜୀବନ ଅଧିକ ବିକଶିତ ହୋଇଥାଏ । 'ବାର ମାସରେ ତେର ପର୍ବ' ଯେଉଁ କଥାଟି ରହିଛି, ତାହା ମଧ୍ୟ ଜୁଆଙ୍ଗମାନଙ୍କ ପାଇଁ ବେଶ୍ ପ୍ରଯୁଜ୍ୟ । ଜୁଆଙ୍ଗମାନେ ମଧ୍ୟ ବାରମାସରେ ତେର ପର୍ବ ପାଳନ କରିଥା'ନ୍ତି । ଜୁଆଙ୍ଗମାନଙ୍କ ପର୍ବପର୍ବାଣିଗୁଡିକୁ ମୁଖ୍ୟତଃ ୬ ଭାଗରେ ବିଭକ୍ତ କରାଯାଇପାରେ-

୧. କୃଷିଭିତ୍ତିକ ପର୍ବ
୨. ପାରଂପରିକ ପର୍ବ
୩. ସାମାଜିକ ପର୍ବ
୪. ଶିକାରଭିତ୍ତିକ ପର୍ବ
୫. ରୋଗ ନିରାକରଣଭିତ୍ତିକ ପର୍ବ

୬. ଗ୍ରାମ ସଂସ୍କାର ପର୍ବ

ବର୍ଷର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ସମୟରେ ଜୁଆଙ୍ଗ ଗାଁରେ କିଛି ନା କିଛି ପର୍ବ ପାଳିତ ହେଉଥାଏ । ଜୁଆଙ୍ଗମାନେ ମୁଖ୍ୟତଃ କୃଷି, ଶିକାର ଓ ପଶୁପାଳନ ମାଧ୍ୟମରେ ସେମାନଙ୍କର ଜୀବିକା ନିର୍ବାହ କରିଥା'ନ୍ତି । ଏଣୁ ସେମାନଙ୍କର ଅଧିକାଂଶ ପର୍ବପର୍ବାଣି କୃଷିଭିତ୍ତିକ । **'ତଇଳା'** (ପାହାଡିଆ ଉଚ୍ଚ ଚାଷ ଜମି)ରେ ଭଲ ଫସଲ ହେଉ କି ଫସଲର ସୁରକ୍ଷା ପାଇଁ ସେମାନେ ନାନା ପ୍ରକାର ପର୍ବ ପାଳନ କରିଥା'ନ୍ତି । ସେହିଭଳି ସେମାନଙ୍କ ଗୃହପାଳିତ ପଶୁପକ୍ଷୀଙ୍କ ସୁରକ୍ଷା ଏବଂ ନିଜ ସନ୍ତାନସନ୍ତତିଙ୍କ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନ କାମନା ଉଦ୍ଦେଶ୍ୟରେ ନାନା ପର୍ବ ପାଳିତ ହୋଇଥାଏ । ବର୍ଷକରେ ଥରେ ଜୁଆଙ୍ଗମାନେ ଗ୍ରାମକୁ ସଂସ୍କାର କରିଥାନ୍ତି । ଏହି ଉଦ୍ଦେଶ୍ୟରେ ବହୁ ପର୍ବ ଓ ରୀତିନୀତି ଯଥାବିଧି ପାଳିତ ହୋଇଥାଏ । ପୂର୍ବେ ପ୍ରତ୍ୟେକ ଜୁଆଙ୍ଗ 'ଅଖାଣି ପର୍ବ' (ଶିକାର ଯାତ୍ରା)ଟିକୁ ଧୂମ୍‌ଧାମ୍‌ରେ ପାଳନ କରୁଥିଲେ । ଜଙ୍ଗଲରୁ ଭଲ ଶିକାର ମିଳିବା ଏବଂ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲକୁ ଯାଉଥିବାରୁ ସେଠାରେ ନିଜର ସୁରକ୍ଷା ଉଦ୍ଦେଶ୍ୟରେ ଏହି ଶିକାର ପର୍ବ ପାଳିତ ହେଉଥିଲା । ଜୁଆଙ୍ଗମାନେ ନିଜ ବାଡିବଗିଚା ଓ ତଇଳାରେ ଚାଷ କରିଥିବା ପ୍ରତ୍ୟକ ଶସ୍ୟ, ପନିପରିବା ଓ ଫଳମୂଳକୁ ନୂଆକରି ଖାଇଥାନ୍ତି । ପ୍ରତ୍ୟକ ଶସ୍ୟ, ଫଳ, ପନିପରିବାକୁ ସେମାନେ ପ୍ରଥମେ ନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିବା ପରେ ନିଜେ ଭକ୍ଷଣ କରିଥା'ନ୍ତି । ଏହି କ୍ରମରେ ସେମାନେ ଧାନ ନୂଆଖିଆ, ଆମ୍ବ ନୂଆଖିଆ, ରୁମା ନୂଆଖିଆ, ଶାଗ ନୂଆଖିଆ, କୁସୁମ ନୂଆଖିଆ ଭଳି ଅନେକ ପର୍ବପର୍ବାଣି ପାଳନ କରିଥା'ନ୍ତି । ଜୁଆଙ୍ଗମାନେ ବସବାସ କରୁଥିବା ନିଜ ଗ୍ରାମ, ତଇଳା ଓ ସର୍ବୋପରି ନିଜ ପୀଢର ସୁରକ୍ଷା ନିମନ୍ତେ 'ପୀଢ ପୂଜା'ର ଆୟୋଜନ କରିଥା'ନ୍ତି । 'ପୀଢପୂଜା'ଟି ତନ୍ତ୍ରମତେ ଅନୁଷ୍ଠିତ ହୋଇଥାଏ । ଗ୍ରାମର ଗୁଣିଆ (ରାଉଳିଆ) ଦ୍ୱାରା ଏହି ପୂଜା ପାଳିତ ହୋଇଥାଏ । ଏହାବ୍ୟତୀତ ଜୁଆଙ୍ଗମାନେ ମକର ପର୍ବ, ରଜପର୍ବ, ଗହ୍ମାପୂର୍ଣ୍ଣିମା, ରକ୍ଷାବନ୍ଧନ ଉତ୍ସବ, ଲକ୍ଷ୍ମୀପୂଜା, ବିଷୁବ ସଂକ୍ରାନ୍ତି, ମହାଶିବରାତ୍ରୀ ଭଳି ଅନେକ ପର୍ବପର୍ବାଣି ପାଳନ କରିଥାନ୍ତି ।

ଡିସେମ୍ବର-ଜାନୁୟାରୀ ମାସରେ ଜୁଆଙ୍ଗମାନେ **ପୁଷ୍ ପୁନେଇଁ (ମାଘ ପୋଡି)** ପର୍ବ ପାଳନ କରୁଥିବାବେଳେ ମାର୍ଚ୍ଚ-ଏପ୍ରିଲ ମାସ ବେଳକୁ **'ଆମ୍ବ ନୂଆଖିଆ'** ପର୍ବ ପାଳିତ ହୋଇଥାଏ । ପୁଷ୍ ପୁନେଇଁ ବା ମାଘ ପୋଡି ପର୍ବଟିକୁ ଜୁଆଙ୍ଗମାନେ ଆଦ୍ୟ ପର୍ବ ଭାବେ ପାଳନ କରିଥା'ନ୍ତି । 'ଆମ୍ବ ନୂଆ' ପର୍ବଟି ଯୁବକମାନଙ୍କର ପର୍ବ ଭାବେ ବେଶ୍ ପରିଚିତ । ଏହି ପର୍ବରେ ଯୁବକ, ଯୁବତୀମାନେ ମଣ୍ଡଘରେ ଚାଙ୍ଗୁ ପୂଜା କରିବା ସହିତ ନୂଆକରି ଯୁବକମାନେ ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥା'ନ୍ତି । ସେହିଭଳି ଏପ୍ରିଲ୍-ମେ ମାସ ବେଳକୁ ଜୁଆଙ୍ଗମାନେ ଶିକାରଯାତ୍ରା (ଅଖାଣିପର୍ବ) ପାଳନ କରୁଥିବାବେଳେ ମେ ମାସରେ ସେମାନେ **ତିର୍ତିୟା (ଅକ୍ଷୟ ତୃତୀୟା), ମଞ୍ଜି ବୁଣା ପର୍ବ** ପାଳନ

କରିଥାନ୍ତି । ପ୍ରତିବର୍ଷ ଜୁନ୍ ମାସ ବେଳକୁ ଜୁଆଙ୍ଗମାନେ **ରଜ ପର୍ବ**କୁ ବେଶ୍ ଧୂମ୍‌ଧାମ୍‌ରେ ପାଳନ କରିଥାନ୍ତି । ଜୁନ୍-ଜୁଲାଇ ମାସ ବେଳକୁ ଜୁଆଙ୍ଗମାନେ **'ଅଷାଢୀ ପର୍ବ' ବା 'ବାଙ୍ଗୁର୍ ଅବ' (କୁସୁମ ନୂଆଖିଆ)** ପାଳନ କରୁଥିବାବେଳେ ଜୁଲାଇ-ଅଗଷ୍ଟ ମାସରେ **'ପିଢପୂଜା'** ଓ **ଗହ୍ମାପୂର୍ଣ୍ଣିମା** ପାଳନ କରିଥାନ୍ତି । ଅଷାଢୀ ପର୍ବ ପାଳନ କରି ଜୁଆଙ୍ଗମାନେ କୁସୁମ ନୂଆ ଖାଇଥା'ନ୍ତି । ସେହିଭଳି ଭଲ ଫସଲ ଏବଂ ତଇଳାର ସୁରକ୍ଷା ପାଇଁ ଜୁଆଙ୍ଗମାନେ **'ପିଢ ପୂଜା'** କରିଥା'ନ୍ତି । ଅଗଷ୍ଟ-ସେପ୍‌ଟେମ୍ବର ମାସରେ ଜୁଆଙ୍ଗମାନେ **'ଧାନ ନୂଆଖିଆ'** ଏବଂ ପରେପରେ **'ଭୁମା ପର୍ବ'** ପାଳନ କରିଥା'ନ୍ତି । ଡିସେମ୍ବର-ଜାନୁୟାରୀ ମାସବେଳକୁ ଜୁଆଙ୍ଗମାନେ **'ଗୁଣ୍ଡାଡିଆ ପର୍ବ'** ଓ **ଗୁରୁବାର ଓଷା** ପାଳନ କରନ୍ତି । ଯଦିଓ ଲକ୍ଷ୍ମୀ ହିନ୍ଦୁମାନଙ୍କର ଦେବୀ ତେବେ ଜୁଆଙ୍ଗମାନେ ଲକ୍ଷ୍ମୀଙ୍କର ଆରାଧନା ମଧ୍ୟ କରିଥା'ନ୍ତି । ଏହା ବ୍ୟତୀତ ଜୁଆଙ୍ଗମାନେ ବର୍ଷର ଅନ୍ୟାନ୍ୟ ସମୟରେ ବହୁ ପର୍ବ ପାଳନ କରନ୍ତି ।

## ପୁଷ୍ ପୁନେଇଁ ବା ମାଘପୋଡ଼ି ପର୍ବ

*(festival of distribution of toila land and begining of the agricultural cycle of the Juang)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର: ଗ୍ରାମ: ଗୁଡଗଙ୍ଗା, ଗ୍ରାମ ପଞ୍ଚାୟତ: ଗୋନାସିକା,**

**ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୧୬, ୧୭ ଓ ୧୮ ଜାନୁୟାରୀ ୨୦୧୩ (ତିନିଦିନ ବ୍ୟାପୀ)**

**ତଥ୍ୟ ପ୍ରଦାନକାରୀ: ଗୁଡଗଙ୍ଗା ଗ୍ରାମର ଶୁକଦେବ ଜୁଆଙ୍ଗ (ପଧାନ), କୁସୁମାଇ ଜୁଆଙ୍ଗ (ବୁଇତା), ପିନ୍ଧିକା ଜୁଆଙ୍ଗ (ଡାଙ୍ଗୁଆ), ଅର୍ଜୁନ ଜୁଆଙ୍ଗ, ମାଧବ ଜୁଆଙ୍ଗ, ରତ୍ନାକର ଜୁଆଙ୍ଗ, ବଣ୍ଡୁ ଜୁଆଙ୍ଗ, ଯୋଗୀ ଜୁଆଙ୍ଗ । ଗୋନାସିକା ଗ୍ରାମର ରାହାସ ଜୁଆଙ୍ଗ ଏବଂ ଶ୍ରୀକାନ୍ତ ଜୁଆଙ୍ଗ ।**

ପୁଷ୍ ପୁନେଇଁ ପର୍ବକୁ ଅନ୍ୟ ଅର୍ଥରେ 'ମାଘପୋଡି' ପର୍ବ ବୋଲି କୁହାଯାଇଥାଏ । ଏହି ପର୍ବଟି କେବଳ ଧାର୍ମିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ନୁହେଁ, ବରଂ ଏହା ଜୁଆଙ୍ଗମାନଙ୍କର ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ଜୀବନକୁ ସର୍ବାଧିକ ପ୍ରଭାବିତ କରିଥାଏ । ଏହା ଏକ କୃଷିଭିତ୍ତିକ ପର୍ବ । ମାଘପୋଡି ପର୍ବଟି ଡିସେମ୍ବର-ଜାନୁୟାରୀ ମାସ ବେଳକୁ ବିଶେଷକରି କ୍ଷେତରୁ ଫସଲ ଅମଳ ଶେଷ ହୋଇଗଲା ପରେ ପାଳିତ ହୋଇଥାଏ । ଏହିପର୍ବ ପାଳନ ହେବାପରେ ଜୁଆଙ୍ଗମାନଙ୍କର

ନୂତନ କୃଷିବର୍ଷର ଶୁଭାରମ୍ଭ ହୋଇଥାଏ । ଆସନ୍ତା ବର୍ଷର କୃଷି ଯୋଜନା କିଭଳି ହେବ ଏହି ପର୍ବ ପାଳନ ପରେପରେ ହିଁ ସ୍ଥିର କରାଯାଇଥାଏ । ମାଘପୋଡି ପର୍ବ ପାଳନ ପରେ ଜୁଆଙ୍ଗମାନେ 'ତଇଲା' (ପାହାଡିଆ ଉଚ୍ଚଭୂମି) ସଫା କରି ପୋଡୁ ଚାଷ ପାଇଁ ପ୍ରସ୍ତୁତ ହୁଅନ୍ତି । ଆଉ ମଧ୍ୟ ଏହି ପର୍ବ ପାଳନ ପରେ ଯାଇ ଜୁଆଙ୍ଗ ସେଲାନ୍, କଙ୍ଗେରମାନେ ଚାଙ୍ଗୁ ବାଦନ କରିଥା'ନ୍ତି । ମାଘପୋଡି ପର୍ବ ପାଳନ ପୂର୍ବରୁ ଜୁଆଙ୍ଗ ଗାଁମାନଙ୍କରେ ଚାଙ୍ଗୁ ନାଚ ଓ ଗୀତ ହୋଇ ନଥାଏ । ମାଘପୋଡି ପର୍ବ ପାଳନ ବେଳକୁ ତଇଲାରେ କୌଣସି ଫସଲ ନଥାଏ । ସମସ୍ତ ଫସଲ ଅମଳ ହେବା ପରେ ପୁଷ୍ ପୂନେଇଁ ବା ମାଘପୋଡି ପର୍ବ ପାଳନ ହୋଇଥାଏ । କ୍ଷେତରେ ଶସ୍ୟ, ତୈଳବୀଜ, ଡାଲି, ପନିପରିବା ଆଦି ଅମଳ ନ ହେବା ପର୍ଯ୍ୟନ୍ତ ଜୁଆଙ୍ଗମାନଙ୍କୁ ଚାଙ୍ଗୁ ମାଡ କରିବା ମନାଥାଏ । ଜାନୁୟାରୀ ମାସ ବେଳକୁ ଫସଲ ଅମଳ ହୋଇଗଲା ପରେ ଜୁଆଙ୍ଗମାନଙ୍କ ହାତରେ ବିଶେଷ କାମଧନ୍ଦା ନଥାଏ । ଏହି ସମୟ ବିଶେଷକରି ପର୍ବ ମନେଇବାର ବେଳ ହୋଇଥାଏ । ଏତିକିବେଳକୁ ଜୁଆଙ୍ଗ କଙ୍ଗେର୍, ସେଲାନ୍‌ମାନେ ହିଁ ଆନନ୍ଦରେ ମତୁଆଲା ହୋଇ ଚାଙ୍ଗୁ ମାଡ କରିବା ସହ ନୃତ୍ୟଗୀତର ଆୟୋଜନ



▶ **ମାଘପୋଡି: ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ମଣ୍ଡଘର ନିକଟକୁ ନିଆଯାଉଛି**



ମାଘପୋଡି: ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ଶାଳଘରକୁ ନିଆଯାଉଛି

କରିଥା'ନ୍ତି । ଏହି ଚାଙ୍ଗୁ ବାଦନ ଓ ନାଚଗୀତ ଆସନ୍ତାବର୍ଷ ଫସଲ ବୁଣାହେବା ପର୍ଯ୍ୟନ୍ତ ଜାରି ରହେ । ଅର୍ଥାତ୍ ଆସନ୍ତା ବର୍ଷ ଅକ୍ଷୟ ତୃତୀୟା (ତିର୍ତିୟା) ପର୍ଯ୍ୟନ୍ତ ଗାଁରେ ଚାଙ୍ଗୁ ନାଚଗୀତ ହୋଇଥାଏ । କ୍ଷେତରେ ଫସଲ ବୁଣାହୋଇଯିବା ପରେ ପୁଣି ଆସନ୍ତା ପୁଷ୍ ପୁନେଇଁ ବା ମାଘପୋଡି ପର୍ଯ୍ୟନ୍ତ ଚାଙ୍ଗୁ ମାତକୁ ବାରଣ କରାଯାଇଥାଏ । ପୁଷ୍ ପୁନେଇଁ ପର୍ବ ବ୍ୟତୀତ ବର୍ଷର ଅନ୍ୟାନ୍ୟ ଋତୁରେ ପାଳନ ହେଉଥିବା ପର୍ବପର୍ବାଣିରେ ବିଶେଷକରି ତଇଳାରୁ ଫସଲ ଅମଳ କାମ ଶେଷ ହୋଇ ନଥିବାରୁ ଚାଙ୍ଗୁ ବାଦ୍ୟ ଓ ନୃତ୍ୟଗୀତର ଆସର ଜମି ପାରି ନଥାଏ ।

ପୁଷ୍ ପୁନେଇଁ ପର୍ବର ଅନ୍ୟଏକ ସାମାଜିକ ଗୁରୁତ୍ୱ ରହିଛି । ବର୍ଷକର କେବଳ ଗୋଟିଏ ସମୟରେ ଏହି ପର୍ବ ପାଳନବେଳେ ହିଁ ଜୁଆଙ୍ଗମାନେ ସେମାନଙ୍କର ବାସସ୍ଥାନ ପରିବର୍ତ୍ତନ କରିପାରନ୍ତି । ଯେଉଁ ଜୁଆଙ୍ଗ ନିଜ ଗ୍ରାମ ପରିବର୍ତ୍ତନ କରି ଅନ୍ୟ ଗ୍ରାମରେ ବାସ କରିବାକୁ ଚାହିଁବେ କିମ୍ବା ଅନ୍ୟ ଗ୍ରାମର ଜୁଆଙ୍ଗ ଏହି ଗ୍ରାମକୁ ଆସିବାକୁ ଚାହିଁବେ ସେମାନେ କେବଳ ପୁଷ୍ ପୁନେଇଁ ପର୍ବବେଳେ ଏହା କରିପାରିବେ, ନଚେତ୍ ସେମାନଙ୍କୁ ପୁଣି ବର୍ଷେ ଅପେକ୍ଷା କରିବାକୁ ପଡିଥାଏ । ପୁଷ୍ ପୁନେଇଁ ପର୍ବ

ପାଳନ ପରେପରେ ଜୁଆଙ୍ଗ ସମାଜରେ ବିବାହବ୍ରତର ଶୁଭାରମ୍ଭ ହୋଇଥାଏ । ପୁଷ୍ ପୁନେଇ ପର୍ବ ପାଳନ ପୂର୍ବରୁ ଜୁଆଙ୍ଗ ସମାଜରେ ବିବାହକୁ ପୂରାପୂରି ବାରଣ କରାଯାଇଥାଏ । ପୁଷ୍ ପୁନେଇଁ ପର୍ବ ପାଳନ ପରେପରେ ଜୁଆଙ୍ଗମାନେ ବିରି, ମୁଗ, ରୁମା (ବରୁଗୁଡି) ଆଦି ଡାଲିଜାତୀୟ ଶସ୍ୟକୁ ରଗଡି ଡାଲି କରି ଖାଆନ୍ତି । ପୁଷ୍ ପୁନେଇଁ ପୂର୍ବରୁ ଏହାକୁ ଡାଲି କରି ଖିଆଯାଏନାହିଁ । ମାଘପୋଡି ପର୍ବ ପରଠାରୁ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ ନଡ଼ାକୁଟା, ଅନ୍ୟାନ୍ୟ ଶସ୍ୟଜାତ ଶୁଷ୍କ ଗଛବୃକ୍ଷ (ମାଣ୍ଡିଆ, ମକା, ବାଜରା, ସୁଆଁ ଘାସ) ଆଦି ଜାଳିଥାନ୍ତି । ମାଘପୋଡି ପର୍ବ ପୂର୍ବରୁ କୌଣସି ଜୁଆଙ୍ଗ ଏହିସବୁ ଶସ୍ୟଜନିତ ନଡ଼ାକୁଟା ଜାଳି ନଥାନ୍ତି । ଏହି ପର୍ବ ପାଳନ ଅବସରରେ ଜଣେ ଜୁଆଙ୍ଗ ଗୋଟିଏ ଗ୍ରାମରୁ ଅନ୍ୟ ଗ୍ରାମକୁ ସ୍ଥାନାନ୍ତରିତ ହୋଇଥାଏ କିମ୍ବା ଅନ୍ୟ ଏକ ଗ୍ରାମରୁ ଆସି ନୂଆକରି ସେହି ଗ୍ରାମରେ ବସତି ପ୍ରତିଷ୍ଠା କରିଥାଏ । ବର୍ଷର ଯେକୌଣସି ସମୟରେ ଜୁଆଙ୍ଗମାନେ ସ୍ଥାନ ପରିବର୍ତ୍ତନ କରି ପାରନ୍ତିନାହିଁ । ଏଣୁ ପୁଷ୍ ପୁନେଇଁ ପର୍ବଟି ସବୁ ଦୃଷ୍ଟିରୁ ଜୁଆଙ୍ଗମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଏବଂ ଏହାକୁ ଜୁଆଙ୍ଗମାନଙ୍କର ଆଦ୍ୟ ପର୍ବ ବୋଲି ଧରାଯାଇଥାଏ ।



▶ ମାଘପୋଡି: ଜୁଆଙ୍ଗମାନେ ମଣ୍ଡଘରୁ ସେମାନଙ୍କର ଅନ୍ୟ ଏକ ପାରଂପରିକ ବାଦ୍ୟ 'ବଡ଼ଜାଠ'କୁ ବାହାର କରୁଛନ୍ତି । ଏହି ବାଦ୍ୟଟି ଆକାରରେ ଖୁବ୍ ବିଶାଳ । ଏହାକୁ ଦୁଇ ଜଣ କାନ୍ଧରେ ବୋହି ଚାଲୁଥିବାବେଳେ ଅନ୍ୟମାନେ ବାଡି ସାହାଯ୍ୟରେ ଏଥିରେ ପିଟିଥା'ନ୍ତି ।



➢ ମାଘପୋଡି: ଗ୍ରାମଶିରିଙ୍କ ନିକଟରେ ପାରଂପରିକ ପୂଜାପଦ୍ଧତି

'ପୁଷ୍ ପୁନେଇଁ' ବା 'ମାଘ ପୋଡି' ପର୍ବ ତିନିଦିନ ଧରି ବେଶ୍ ଧୁମ୍‌ଧାମ୍‌ରେ ଚାଲେ । ପର୍ବ ପାଳନ ହେବାର ସପ୍ତାହେ କି ଦୁଇ ସପ୍ତାହ ପୂର୍ବରୁ ପ୍ରଥମେ ଗାଁ ମୁଖିଆ 'ପଧାନ' ଓ ଧାର୍ମିକ ମୁଖ୍ୟ 'ନାଗମ୍'ଙ୍କ ନେତୃତ୍ୱରେ ଗାଁର ମଣ୍ଡଘରେ ଏକ ପ୍ରସ୍ତୁତି ବୈଠକ ଅନୁଷ୍ଠିତ ହୋଇଥାଏ । ଏଥିରେ ନାଗମ୍, ରାଉଳିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତି (ବାରଭାଇ)ମାନେ ଉପସ୍ଥିତ ରହି ପର୍ବର ଦିନ ଧାର୍ଯ୍ୟ କରିଥାନ୍ତି । ପର୍ବ ପାଳନ ପାଇଁ ଗ୍ରାମର ପ୍ରତ୍ୟେକ ପରିବାରରୁ ନିର୍ଦ୍ଦିଷ୍ଟ ପରିମାଣର ଚାନ୍ଦା ମଗାଯାଇ 'ମଣ୍ଡଘର' ପାଣ୍ଠିରେ ଦାଖଲ କରାଯାଏ । 'ପଧାନ' ଏହି ସଂଗୃହୀତ ଅର୍ଥକୁ ନିଜ ହେପାଜତରେ ମଣ୍ଡଘରେ ସାଇତି ରଖନ୍ତି ଏବଂ ପର୍ବ ପାଳନପାଇଁ ଏହି ପାଣ୍ଠିରୁ ହିଁ ଖର୍ଚ୍ଚ କରାଯାଇଥାଏ । ଏହି ଅର୍ଥରେ ପୂଜାରେ ଛେଦ (ବଳି) ପଡିବାକୁ ଥିବା ଛେଳି, ମେଣ୍ଢା, କୁକୁଡା, ମଦ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ କିଣାଯାଇଥାଏ । ତିନିଦିନ ଧରି ପାଳିତ ହେଉଥିବା ଏହି ପର୍ବଟିରେ ଗାଁ ପିଲାଠୁ ବୁଢା ପର୍ଯ୍ୟନ୍ତ ସମସ୍ତେ ଅଂଶଗ୍ରହଣ କରିଥାନ୍ତି ।

**ପ୍ରଥମ ଦିନ:** ପ୍ରଥମ ଦିନ ଗାଁର ପୂଜକ, ମୁଖିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ସକାଳୁ ସ୍ନାନ ଓ ନିତ୍ୟକର୍ମ ସାରି ନିଷ୍ଠାର ସହ ଉପବାସ ରହିଥାନ୍ତି । ଏହାକୁ **'ବାର ଭୁଆ'** ବୋଲି କୁହାଯାଏ । ଗାଁ ମୁଖିଆ 'ପଧାନ', ପୂଜକ 'ନାଗମ୍' ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଗାଁର ମଙ୍ଗଳ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଉପବାସ ରହିବା ସାଙ୍ଗକୁ ନିଷ୍ଠାର ସହ ବ୍ରତ ଧାରଣ କରନ୍ତି । ନାଗମ୍ ଏବଂ ପଧାନ ନୂତନ ବସ୍ତ୍ର ପରିଧାନ କରିଥାନ୍ତି । ନାଗମ୍ ସକାଳୁ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୋଇଯାଏ । ଏହିଦିନ ଜୁଆଙ୍ଗ ସ୍ତ୍ରୀଲୋକମାନେ ସ୍ନାନତର୍ପଣ ସାରି ଘରଦ୍ୱାର ଲିପାପୋଛା କରିଥାନ୍ତି । କାନ୍ଥରେ ଝୋଟି ଚିତା ପକେଇଥାନ୍ତି । ସକାଳୁ ସକାଳୁ ସେଲାନ୍ (ଯୁବତୀ)ମାନେ ଗୋବର, ରଙ୍ଗୀନ୍ ମାଟିରେ 'ମଜାଙ୍ଗ୍' (ମଣ୍ଡଘର)ର କାନ୍ଥ ଓ ଅଗଣାକୁ ଲିପାପୋଛା କରିବା ପରେ ଝୋଟି ଚିତା ପକେଇଥାନ୍ତି ।

ସ୍ନାନ ସାରିବା ପରେ ଗାଁର ପଧାନ ଓ ନାଗମ୍ ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଗାଁର



▶ **ମାଘପୋଡି: ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ଶାଳଘରକୁ ନିଆଯାଉଛି**



▶ **ମାଘପୋଡି ପାଳନ ଅବସରରେ ମଣ୍ଡଘରେ ଜୁଆଙ୍ଗମାନଙ୍କ 'ଜୁରିପକା' (ସମୂହ ମଦ୍ୟପାନ) କାର୍ଯ୍ୟକ୍ରମ**

ସମସ୍ତ ପରିବାରର ପ୍ରତିନିଧିମାନେ ନିଜନିଜ ଘରୁ ଧାନ, ମାଣ୍ଡିଆ, ଗଙ୍ଗେଇ, କାଙ୍ଗୁ, ସୁଆଁ ଆଦି ଶସ୍ୟ ଡାଲାରେ ଭର୍ତ୍ତି କରି ନାଗମ୍ କିମ୍ବା ପଧାନଙ୍କ ଘରେ ଠୁଳ କରନ୍ତି । ସଂଗୃହୀତ ଧାନ, ଚାଉଳ, ବିରି, ମାଣ୍ଡିଆ ଆଦି ଶସ୍ୟକୁ ପୃଥକ କରି ରଖାଯାଏ । ପରେ ଏହାକୁ ଭାଗଭାଗ କରାଯାଏ । ଗ୍ରାମବାସୀଙ୍କଠାରୁ ସଂଗୃହୀତ ଏହି ଶସ୍ୟକୁ ଚାରି ଭାଗ କରାଯାଏ । ଗୋଟିଏ ଭାଗ ଗାଁର ବୟସ୍କ ବ୍ୟକ୍ତି (ବାରଭାଇ)ଙ୍କୁ ପ୍ରଦାନ କରାଯାଏ । ଦ୍ୱିତୀୟ ଭାଗଟି ଗାଁର ଯୁବକ, ଯୁବତୀଙ୍କୁ, ତୃତୀୟ ଭାଗଟି ପୂଜକ ଏବଂ ଚତୁର୍ଥ ଭାଗଟି ଗାଁ ମୁଖିଆ ପଧାନଙ୍କୁ ପ୍ରଦାନ କରାଯାଇଥାଏ । ଏହି ଚାରିଭାଗ ଧାନ, ବିରି, ମାଣ୍ଡିଆ ଓ ଅନ୍ୟାନ୍ୟ ଶସ୍ୟକୁ ନାଗମ୍ କିମ୍ବା ପଧାନଙ୍କ ଘରର ସ୍ତ୍ରୀଲୋକମାନେ ଶୁଖେଇ ଏଥିରୁ ଏକ ବିଶେଷ ପ୍ରକାରର ଚୂନା ପ୍ରସ୍ତୁତ କରନ୍ତି । ଏହି ଚୂନାରେ ଗୋଲାକୃତି ମଣ୍ଡା ସଦୃଶ ପିଠା ପ୍ରସ୍ତୁତ ହୋଇ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଇଥାଏ । ଏହି ପିଠା ପୂଜା ତୃତୀୟ ଦିନ ହୋଇଥାଏ ।

ପ୍ରଥମ ଦିନ ନାଗମ୍ ଓ ପଧାନଙ୍କୁ ଏକ ଶୋଭାଯାତ୍ରାରେ ମଣ୍ଡଘର ନିକଟକୁ ଅଣାଯାଏ । ନାଗମ୍

ଓ ପଧାନ ଏକ ଏକ ଡାଲାରେ ଅରୁଆ ଚାଉଳ, ହଳଦିଗୁଣ୍ଡ, ସିନ୍ଦୁର, କଜଳ, ଧୂପଦୀପ, ଦୁବ, ଶିଆଳିପତ୍ର, ଲାଉ ତୁମ୍ବାରେ ଭର୍ତ୍ତି ପବିତ୍ର ପାଣି ଓ ଅନ୍ୟାନ୍ୟ ପୂଜାସାମଗ୍ରୀ ହାତରେ ଧରି ମଣ୍ଡଘର ନିକଟକୁ ଆସନ୍ତି । ଗ୍ରାମର କିଛି ଜୁଆଙ୍ଗ ବାଜା ବଜେଇ ଘୋଷଣି କରି ବୁଇତା ଓ ପଧାନଙ୍କୁ ମଣ୍ଡଘର ନିକଟକୁ ଆଣିଥାନ୍ତି । ମଣ୍ଡଘର ନିକଟରେ ପହଞ୍ଚିବା ପରେ ବୁଇତା ଓ ପଧାନ ମଣ୍ଡଘର ପାଣ୍ଡିରେ ପୂର୍ବରୁ ରଖାଯାଇଥିବା ମହୁଲି ମଦ ବାହାର କରି ଗ୍ରାମଶିରିଙ୍କ ନିକଟରେ ପହଞ୍ଚନ୍ତି । ସେଠାରେ ବୁଇତା ଓ ପଧାନ ଧରମ୍ ଦେବତା, ବସୁମତି ମାତା ଏବଂ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜାଅର୍ପଣ କରିଥାନ୍ତି । ଭୂମି ଉପରେ ମହୁଲି ମଦ ଢାଳି ନାଗମ୍, ପଧାନ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଏତିକିରେ ପ୍ରଥମ ଦିନର ପୂଜା କାମ ଶେଷ ହୋଇଥାଏ ଏବଂ ସମସ୍ତ ଜୁଆଙ୍ଗ ନିଜନିଜର ଘରକୁ ଚାଲି ଯାଆନ୍ତି ।

**ଦ୍ୱିତୀୟ ଦିନ:** ଦ୍ୱିତୀୟ ଦିନ ମଧ୍ୟ ସକାଳୁ ସକାଳୁ ଗାଁର ସେଲାନ୍ (ଯୁବତୀ)ମାନେ ମଣ୍ଡଘରକୁ ପୁନର୍ବାର ଲିପାପୋଛା କରି ପବିତ୍ର କରନ୍ତି । ନାଗମ୍ ଓ ପଧାନ ସ୍ନାନ ସାରି ଦ୍ୱିତୀୟ ଦିନର



▶ ମାଘପୋଡି: ଗ୍ରାମଶିରିଙ୍କ ନିକଟରେ 'ଗା ବନ୍ଧା' କାର୍ଯ୍ୟକ୍ରମ



▶ **ମାଘପୋଡି: ଗ୍ରାମ ଶାଳଘରେ ଅନୁଷ୍ଠିତ ପାରଂପରିକ ପୂଜାପଦ୍ଧତି**

ପୂଜାକାର୍ଯ୍ୟ ପାଇଁ ତତ୍ପରତା ପ୍ରକାଶ କରନ୍ତି । ପ୍ରଥମଦିନ ଭଳି ଦ୍ୱିତୀୟ ଦିନ ନାଗମ୍ ଓ ପଧାନଙ୍କୁ ଏକ ଶୋଭାଯାତ୍ରାରେ ମଣ୍ଡଘର ନିକଟକୁ ଅଣାଯାଏ । ନାଗମ୍ ଓ ପଧାନ ଏକ ଏକ ଡାଲାରେ ଅରୁଆ ଚାଉଳ, ହଳଦିଗୁଣ୍ଡ, ସିନ୍ଦୁର, କଜଳ, ଧୂପଦୀପ, ଦୁବ, ଶିଆଳିପତ୍ର ଓ ଅନ୍ୟାନ୍ୟ ପୂଜାସାମଗ୍ରୀ ହାତରେ ଧରି ମଣ୍ଡଘର ନିକଟକୁ ଆସନ୍ତି । ଗ୍ରାମର କିଛି ଜୁଆଙ୍ଗ ବାଜା ବଜେଇ ଘୋଷଣି କରି ବୁଇତା ଓ ପଧାନଙ୍କୁ ମଣ୍ଡଘର ନିକଟକୁ ଆଣିଥାନ୍ତି । ଏହାପରେ ନାଗମ୍ ଓ ପଧାନ ଗ୍ରାମଶିରିଙ୍କ ନିକଟକୁ ଯାଇ ସେଠାରେ ଧରମ୍ ଦେବତା, ବସୁମତି ମାତା, ନିଜର ପିତୃପୁରୁଷ ଏବଂ ଅନ୍ୟାନ୍ୟ ଦେବଦେବୀଙ୍କୁ ଆବାହନ କରନ୍ତି । ଗ୍ରାମଶିରି ପିଣ୍ଡିରେ ଭୂମି ଉପରେ ମହୁଲି ମଦ ଢାଳି ନାଗମ୍, ପଧାନ ନିଜର ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ସେଠାରେ ନାଗମ୍ (ବୁଇତା) ଓ ପଧାନ ମଦ ଢାଳି ଉପରେ ଧରମ୍ ଦେବତା, ତଳେ ବସୁମତି ମାତା, ଗ୍ରାମଶିରି, ବାସୁଳି, ବଡ଼ପାଟ, ନାଗଶିରିଆ, ଗାଙ୍ଗରାଜିଆ, ସାହାରପାଟ, ବାଉଁଶୁଳି, ବୈତରଣୀପାଟ ପ୍ରମୁଖ ଗ୍ରାମଦେବଦେବୀ ଏବଂ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରନ୍ତି । (ସୂଚନାଯୋଗ୍ୟ, ବାସୁଳି,

ବଡ଼ପାଟ, ନାଗଶିରିଆ, ଗାଙ୍ଗରାଜିଆ, ସାହାରପାଟ, ବାଉଁଶୁଳି, ବୈତରଣୀପାଟ ପ୍ରମୁଖ ଗୁପ୍ତଗଙ୍ଗା ଗ୍ରାମର ଦେବଦେବୀ ଅଟନ୍ତି । ଅନ୍ୟ ଗ୍ରାମର ଗ୍ରାମଦେବଦେବୀଙ୍କ ନାମ ଭିନ୍ନ ହୋଇଥାଏ ।) । ନାଗମ୍, ପଧାନ ଓ ବାରଭାଇ (ବୟସ୍କ ଜୁଆଙ୍ଗ ବୃଦ୍ଧମାନେ) ଗ୍ରାମଶିରିଙ୍କ ନିକଟରେ ଉପସ୍ଥିତ ରହି ଗୁଣୁଗୁଣୁ ହୋଇ ଦେବଦେବୀଙ୍କୁ ଆବାହନ କରନ୍ତି । ସେମାନେ ଗୁଣୁଗୁଣୁ ହୋଇ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଯାହା ଜଣାଣ କରନ୍ତି ତାହାର ଅର୍ଥ ହେଉଛି-

" ଉପରେ ଧରମ୍ ଦେବତା, ତଳେ ବସୁମତି ମାତା ଓ ଗ୍ରାମଶିରି, ବାସୁଳି, ବଡ଼ପାଟ, ନାଗଶିରିଆ, ଗାଙ୍ଗରାଜିଆ, ସାହାରପାଟ, ବାଉଁଶୁଳି, ବୈତରଣୀପାଟ ଓ ପିତୃପୁରୁଷଙ୍କ ଆତ୍ମାମାନେ ତମେ ଆଂଭମାନଙ୍କୁ ବିପଦଆପଦରେ ସାହା ହୁଅ । ଗାଁକୁ ସକଳ ବିପଦରୁ ରକ୍ଷା କର । ପିଲାମାନଙ୍କୁ ସୁରକ୍ଷିତ ରଖ । ଗାଈଗୋରୁ, ଛେଳିମେଣ୍ଢା ଆଦି ଜୀବଜନ୍ତୁଙ୍କୁ ରୋଗବଇରାଗରୁ ରକ୍ଷା କର । ଏବର୍ଷ ଗାଁରେ ଭଲ ଫସଲ ହେବା ପାଇଁ କୃପା କର ଇତ୍ୟାଦି ଇତ୍ୟାଦି ।"

ଏହାପରେ ମଣ୍ଡଘରୁ ଅଣାଯାଇଥିବା ମଦକୁ ବାରଭାଇଙ୍କ ପକ୍ଷରୁ କେହି ଜଣେ ବୟସ୍କ ବୃଦ୍ଧ ନାଗମ୍ ଓ ପଧାନଙ୍କ ହାତ ପାପୁଲିରେ ଢାଳନ୍ତି । ନାଗମ୍ ଓ ପଧାନ ନିଜ ହାତ ପାପୁଲିରୁ ଏହି



› ମାଘପୋଡି ପାଳନ ଅବସରରେ ଗାଁ ଶାଳଘରେ ଜୁଆଙ୍ଗ ମାନଙ୍କ 'ଜୁରିପଜା' କାର୍ଯ୍ୟକ୍ରମ



▶ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ

ମଦକୁ ଭୂମି ଉପରେ ଢାଳି ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି ।

ଗ୍ରାମଶିରିଙ୍କ ନିକଟରେ ପୂଜାକାମ ଶେଷହେଲା ପରେ ନାଗମ୍, ପଧାନଙ୍କ ସମେତ ବାରଭାଇମାନେ ଗାଁ ମୁଣ୍ଡରେ ଥିବା **'ଶାଳଘର'**କୁ ଯାଆନ୍ତି । ଗ୍ରାମଶିରିଙ୍କ ନିକଟରୁ ଶାଳ ପର୍ଯ୍ୟନ୍ତ ଜୁଆଙ୍ଗମାନେ ପଧାନ, ନାଗମ୍‌ଙ୍କୁ ବାଜା ବଜେଇ ଶୋଷଣି କରି ନେଇଥାନ୍ତି । ଶାଳଘର ନିକଟରେ ପହଞ୍ଚିବାପରେ ସେଠାରେ ବାକି ପୂଜାକାର୍ଯ୍ୟ ସଂପନ୍ନ ହୋଇଥାଏ । ଶାଳଘର ନିକଟରେ ନାଗମ୍ (ବୁଇତା), ପଧାନ ଭୂମି ଉପରେ ଏକ ଚୂଲି ନିର୍ମାଣ କରନ୍ତି । ଛୋଟଛୋଟ ଶୁଖିଲା ଶାଳକାଠ ସଂଗ୍ରହ କରନ୍ତି । ପୂର୍ବରୁ ଶାଳଘରେ ଥିବା ଏକ ଶାଳଗଛର କୋରଡରେ ଏକ ମାଟିହାଣ୍ଡି ଗୁପ୍ତରେ ରଖାଯାଇଥାଏ । ନାଗମ୍ ଗଛ କୋରଡରୁ ଏହି ମାଟି ହାଣ୍ଡିଟିକୁ ବାହାର କରି ସେଥିରେ ଗାଈ ଦୁଧ ଭର୍ତ୍ତି କରି ଶାଳଘର ନିକଟରେ ନିର୍ମାଣ କରାଯାଇଥିବା ଚୂଲିରେ ବସାନ୍ତି । ଏହି ମାଟି ହାଣ୍ଡିରେ ଗାଈ ଦୁଧ ସହିତ ଅରୁଆ ଚାଉଳ ପକେଇ ପଧାନ, ନାଗମ୍ ଓ ପଧାନ ସାତ ଫୁଟଣା କରନ୍ତି । ଏହି ସାତ ଫୁଟଣା ସମୟରେ

ଯେଭଳି ପେଜ ଉତୁରି ତଳେ ନ ପଡେ, ସେଥିପ୍ରତି ଧ୍ୟାନ ଦେବାକୁ ପଡିଥାଏ । ପେଜ ଉତୁରି ଭୂମି ଉପରେ ପଡିଗଲେ ଗାଁ ପ୍ରତି ଅମଙ୍ଗଳ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ସାତ ଫୁଟଣା ହୋଇଯିବା ପରେ ମାଟି ହାଣ୍ଡିକୁ ତଳକୁ ଓହ୍ଲାଇ ରୋଷେଇ ହୋଇଥିବା ଭାତ (ଖିରି)କୁ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଆତ୍ମା ଉଦ୍ଦେଶ୍ୟରେ ବାଢନ୍ତି । ଦେବଦେବୀ ଓ ପିତୃପୁରୁଷଙ୍କୁ ସମର୍ପଣ କରିବା ପରେ ମାଟିହାଣ୍ଡିରେ ଯାହା ଭାତ ବଳିଥାଏ ତାକୁ ଆଉ ସାତଗୋଟି ଶିଆଳିପତ୍ରରେ ଗୁଡେଇ ନାଗମ୍ ଶାଳଗଛ କୋରଡରେ ଲୁକ୍କାୟିତ ଭାବେ ରଖି ଦିଅନ୍ତି । ମାଘପୋଡି ପର୍ବ ପରେ ଯେତେବେଳେ ଗାଁରେ ଆମ୍ବ ନୂଆଖିଆ ପାଳନ କରାଯାଏ ସେତେବେଳେ ଏହି ମାଟିହାଣ୍ଡିକୁ ଶାଳଗଛ କୋରଡରୁ ପୁନର୍ବାର ବାହାର କରାଯାଇଥାଏ ।

ଶାଳଘରେ ପୂଜା ସମୟରେ ଦେବଦେବୀ ଓ ପିତୃପୁରୁଷଙ୍କୁ ମଦ ଦାନ କରାଯାଇଥାଏ । ଦେବଦେବୀ ଓ ପିତୃପୁରୁଷଙ୍କ ମଦ ଅର୍ପଣ କରିବା ପରେ ନାଗମ୍, ପଧାନଙ୍କ ସମେତ ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ଭୋଗ ଲାଗି ହୋଇଥିବା ମଦକୁ ପାନ କରିଥାନ୍ତି । ଜୁଆଙ୍ଗମାନଙ୍କର



▶ ମାଘପୋଡି: ଗ୍ରାମ ଶାଳଘରେ ଅନୁଷ୍ଠିତ ପାରଂପରିକ ପୂଜାପଦ୍ଧତି



▶ **ମାଘପୋଡି: ଗ୍ରାମ ଶାଳରେ ଛେଦ ପଡିବା ପୂର୍ବରୁ ପଶୁ, ପକ୍ଷୀମାନଙ୍କୁ ନୈବେଦ୍ୟ ଅରୁଆ ଚାଉଳ ଖୁଆ ଯାଉଛି ।**

ଏହି ସମୂହ ମଦ୍ୟପାନକୁ **'ଢୁରିପକା'** କହନ୍ତି । ଏହାପରେ ପଧାନ, ବୁଇତା ଓ ବାରଭାଇ ଶାଳଘରୁ ପୁନର୍ବାର ଗ୍ରାମକୁ ଫେରନ୍ତି । ଗାଁକୁ ଫେରିବା ପରେ ବୁଇତା, ପଧାନଙ୍କ ସମେତ ବାରଭାଇମାନେ ନିଜନିଜର ଘରକୁ ଚାଲି ଯାଆନ୍ତି ଏବଂ ତୃତୀୟ ଦିନ ତଥା ଉଦ୍‌ଯାପନୀ ଦିବସ ପାଇଁ ପ୍ରସ୍ତୁତି ଆରମ୍ଭ କରିଦିଅନ୍ତି ।

**ତୃତୀୟ ଦିନ:** ତୃତୀୟଦିନ ପିଠାଖିଆ ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ଗାଁର ସମସ୍ତ ପରିବାରଙ୍କ ପକ୍ଷରୁ ପୂଜକ (ନାଗମ୍)ଙ୍କୁ ପ୍ରଦାନ କରାଯାଇଥିବା ବୁଆ (ଧାନ), କୁଦୁ (ମାଣ୍ଡିଆ), ଗୁମା (ବରୁଗୁଡି), ଢାଲି, ଗଙ୍ଗେଇ (ବାଜରା), କାଙ୍ଗୁ (ସୁଆଁ), ଢୁଆଣି (ମକା) ଆଦି ନୂତନ ଶସ୍ୟରୁ ଚାଉଳ ପ୍ରସ୍ତୁତ କରାଯାଇ ସେଥିରୁ ଏକ ବିଶେଷ ଧରଣର ମିଶ୍ର ଚୁନା ପ୍ରସ୍ତୁତ କରାଯାଇଥାଏ । ଏହି ଚୁନାରେ ନାଗମ୍ ପିଠା ପ୍ରସ୍ତୁତ କରନ୍ତି । ନୂତନ ମାଟି ହାଣ୍ଡିରେ ଗରମ ପାଣି ଫୁଟେଇ ସେଥିରେ ଚାଉଳ ଚୁନା ମିଶେଇ ଆଣ ପ୍ରସ୍ତୁତ କରାଯାଏ । ଏହି ଆଣକୁ ନାଗମ୍ ପରିବାରର ସଦସ୍ୟମାନେ ଗୁଳାଗୁଳା କରି ପିଠା ପ୍ରସ୍ତୁତ କରିଥାନ୍ତି । ଏହି ପିଠା ବହୁତ କଠିନ ହୋଇଥାଏ । ନାଗମ୍‌ଙ୍କ ଘରେ ପିଠା ପ୍ରସ୍ତୁତ

ହେବା ସହିତ ଗ୍ରାମର ଅନ୍ୟମାନଙ୍କ ଘରେ ମଧ୍ୟ ପିଠା ହୋଇଥାଏ । ତୃତୀୟ ଦିନକୁ **'ପିଠାଖିଆ'** ବୋଲି କୁହାଯାଏ । ପିଠାଖିଆ ଦିନ ଗ୍ରାମର ସମସ୍ତ ପରିବାର ପିଠା କରି ନାଗମ୍‌ଙ୍କ ଦ୍ୱାରକୁ ନିଅନ୍ତି । ସେଠାରେ ସମସ୍ତ ପିଠାକୁ ଏକତ୍ର କରି ଗ୍ରାମବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଏ ।

ପୂର୍ବ ଦୁଇ ଦିନମାନଙ୍କ ଭଳି ସକାଳୁ ସକାଳୁ ନାଗମ୍ ଓ ପଧାନ ସ୍ନାନ ସାରି ହାତରେ ପୂଜା ସାମଗ୍ରୀ ଡାଲା ଧରି ଗ୍ରାମଶିରିଙ୍କ ନିକଟରେ ହାଜର ହୁଅନ୍ତି । ପୂର୍ବଦିନମାନଙ୍କ ଭଳି ବାଜା ବଜେଇ ଭୂମି ଉପରେ ପବିତ୍ର ଜଳ ସିଞ୍ଚନ କରି ନାଗମ୍ ଓ ପଧାନଙ୍କୁ ସେମାନଙ୍କ ଘରୁ ଗ୍ରାମଶିରି (ମଣ୍ଡଘର) ନିକଟକୁ ଅଣାଯାଏ । ନାଗମ୍ ଗ୍ରାମଶିରିଙ୍କ ନିକଟରେ ପହଞ୍ଚି ସେଠାରେ ପୂଜା କାର୍ଯ୍ୟ କରନ୍ତି । ଗ୍ରାମର ଶୁଭ ମନାସି ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୁନର୍ବାର ମଦ ଦାନ କରାଯାଏ ।

ଏହାପରେ ନାଗମ୍ ଓ ପଧାନଙ୍କ ସମେତ ବାରଭାଇ, ସେଲାନ୍, କଙ୍ଗେର୍‌ମାନେ ଗ୍ରାମ ନିକଟସ୍ଥ ଏକ ଖୋଲା ରାସ୍ତା ନିକଟକୁ ଯାଇ ସେଠାରେ ପୂଜାପାଠ କରନ୍ତି । ଏହାକୁ **'ଦାଣ୍ଡ ପୂଜା'** କହନ୍ତି । ନାଗମ୍ ସେଠାରେ ଭୂମି ଉପରେ ଗୋବର ପାଣି ଢାଳି ଭୂମିକୁ ଲେପି ଶୁଦ୍ଧ କରନ୍ତି । ଭୂମି ସଂସ୍କାର କରିବା ପରେ ସାତଗୋଟି ଶିଆଳିପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଭୋଗ



▶ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ



▶ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ

ଅର୍ପଣ କରନ୍ତି । ଏଠାରେ ମଧ୍ୟ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପୁନର୍ବାର ମହୁଲି ମଦ ଦାନ କରାଯାଏ । ଜୁଆଙ୍ଗମାନେ ପ୍ରତ୍ୟକ ପୂଜାରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମଦ ଦାନ କରିଥାନ୍ତି । ଏହି ଦାଣ୍ଡ ପୂଜା ସମୟରେ ନାଗମ୍ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଗୋଟିଏ ଛୋଟ କୁକୁଡା ଛୁଆ ବଳି ପକେଇଥାନ୍ତି । ପ୍ରଥମେ କୁକୁଡା ଛୁଆଟିକୁ ମନ୍ତ୍ର ଦ୍ଵାରା ହଳଦିଗୁଣ୍ଡ ଓ ଅରୁଆ ଚାଉଳ ପକାଇ ସଂସ୍କାର କରାଯାଏ । ଏହାପରେ ନାଗମ୍ ଛୁଆ କୁକୁଡାଟିକୁ କିଛି ଅରୁଆ ଚାଉଳ ଖାଇବାକୁ ଦେଇଥାନ୍ତି । ପ୍ରତ୍ୟକ ବଳି (ଛେଦ) ପୂର୍ବରୁ ଜୁଆଙ୍ଗମାନେ ପଶୁପକ୍ଷୀଙ୍କୁ ଖାଇବାକୁ ଦେବାର ବିଧି ରହିଛି । ଖାଇବାକୁ ଦେଇ ବଳି ପଡିବାକୁ ଥିବା ପଶୁପକ୍ଷୀମାନଙ୍କର ଆତ୍ମା ଶାନ୍ତି କରିବା ସେମାନଙ୍କର ଉଦ୍ଦେଶ୍ୟ ଥାଏ । ଯଦି କୁକୁଡା ଛୁଆଟି ଅରୁଆ ଚାଉଳ ନ ଖାଏ, ତେବେ ଏହା ଏକ ବିପଦ ସୂଚନା ବୋଲି ଧରି ନେବାକୁ ହୋଇଥାଏ । ଏଣୁ କଳେବଳେ କୌଶଳେ କୁକୁଡା ଛୁଆଟିକୁ ଅରୁଆ ଚାଉଳ ଖୁଆଇବା ପରେ ଯାଇ ତାକୁ ବଳି ପକାଯାଏ । ଯେପର୍ଯ୍ୟନ୍ତ ପଶୁପକ୍ଷୀମାନେ

କିଛି ଭକ୍ଷଣ ନ କରନ୍ତି ସେ ପର୍ଯ୍ୟନ୍ତ ପଶୁପକ୍ଷୀମାନଙ୍କୁ ବଳି ପକାଯାଇ ନଥାଏ । ଏଣୁ ଜୁଆଙ୍ଗମାନଙ୍କୁ ଅପେକ୍ଷା କରିବାକୁ ପଡିଥାଏ । ପୂଜା କାର୍ଯ୍ୟରେ ଯଦି କିଛି ତ୍ରୁଟି ରହିଯାଇଥାଏ କିମ୍ବା ପିତୃପୁରୁଷ କୋପ କରିଥା'ନ୍ତି; ଜୁଆଙ୍ଗମାନେ ସେତେବେଳେ ପିତୃପୁରୁଷ ଓ ଦେବଦେବୀଙ୍କ ନିକଟରେ କ୍ଷମା ପ୍ରାର୍ଥନା କରନ୍ତି । ନାଗମ୍. ପଧାନ ଓ ବାରଭାଇ ମିଶି ନିଜ ଗ୍ରାମର ସୁରକ୍ଷା ଏବଂ ଗୃହପାଳିତ ପଶୁପକ୍ଷୀ ତଥା ନିଜ ପିଲାମାନଙ୍କର ସୁରକ୍ଷା ନିମନ୍ତେ ଦେବଦେବୀ ଓ ପିତୃପୁରୁଷଙ୍କୁ ପ୍ରାର୍ଥନା କରନ୍ତି ।

ଏହି କାର୍ଯ୍ୟକ୍ରମ ପରେ ନାଗମ୍. ପଧାନ. ବାରଭାଇ ପୁନର୍ବାର ଗ୍ରାମଶିରି ନିକଟକୁ ଫେରନ୍ତି । ଏହା ପରେ ସେମାନେ ଗ୍ରାମଶିରି ସାମ୍ନା ସଦର ଦାଣ୍ଡରେ ଏକତ୍ରିତ ହୁଅନ୍ତି । ନାଗମ୍ ଗାଁ ମଝି ଦାଣ୍ଡରେ ପୂଜାପାଠ ଆରଂଭ କରନ୍ତି । ଗ୍ରାମର ସମସ୍ତ ସେଲାନ୍. କଙ୍ଗେର୍. ବୃଦ୍ଧ. ବୃଦ୍ଧା ଓ ଛୋଟଛୋଟ ଶିଶୁମାନଙ୍କୁ ଏକତ୍ର କରାଯାଏ । ସମସ୍ତେ ପୂଜାସ୍ଥଳର ଚତୁର୍ପାର୍ଶ୍ୱରେ ଘେରି ବସନ୍ତି କିମ୍ବା ଠିଆ ହୁଅନ୍ତି । ସେଠାରେ ନାଗମ୍ ଓ ପଧାନ ଧରମ୍ ଦେବତା. ବସୁମତିମାତାଙ୍କ ଉଦ୍ଦେଶ୍ୟରେ ପୂଜା



► ମାଘପୋଡି: ଛେଦ ପଡିବା ପରେ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ପଶୁମାନଙ୍କ କଟାମୁଣ୍ଡ



▶ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ

କରନ୍ତି ଓ ସେମାନଙ୍କ ଉଦ୍ଦେଶ୍ୟରେ ମଦ ଉତ୍ସର୍ଗ କରନ୍ତି । ୯ ଖଣ୍ଡ ସାନସାନ ଶୁଖିଲା ଓ କଞ୍ଚା ଫାଳିକିଆ ଶାଳ କାଠିକୁ ନାଗମ୍ (ବୁଇତା) ଦେବତାମାନଙ୍କ ନାମ ଉଚ୍ଚାରଣ କରି ଭୂମି ଉପରେ ଫିଙ୍ଗିଥାନ୍ତି । ଏହି ଦୁଇ ଫାଳ କାଠିରୁ ଗୋଟିଏ ଉପରକୁ ଓ ଅନ୍ୟଟି ତଳକୁ ମୁହଁ କରି ଭୂମି ଉପରେ ପଡିଲେ ଏହା ଶୁଭ ବୋଲି ବିଚାର କରାଯାଏ । ଏହା ଦ୍ୱାରା ଗାଁ ରୋଗମୁକ୍ତ ହେବା ସହିତ ଜମିରେ ଭଲ ଫସଲ ଓ ଗୃହପାଳିତ ପଶୁପକ୍ଷୀ, ଶିଶୁମାନେ ସୁରକ୍ଷିତ ରହିଥାନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ୯ ଖଣ୍ଡ ସାନସାନ ଶୁଖିଲା ଓ କଞ୍ଚା ଫାଳିକିଆ କାଠି ବ୍ୟତୀତ ୭ଟି କଞ୍ଚା ପିଢୁଳି, କଣାଯୁକ୍ତ ଏକ ଗୋଲ୍ ଲାଉ ତୁମ୍ବା, ୭ଟି ଶିଆଳିପତ୍ର, ଧୂପ, ଦୀପ, ଅରୁଆ ଚାଉଳ, ସିନ୍ଦୁର, କଜଳ, ହଳଦିଗୁଣ୍ଡ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଏହି ପୂଜାକାର୍ଯ୍ୟରେ ଦରକାର ପଡିଥାଏ । ଏହି ସଦର ଦାଣ୍ଡରେ ନାଗମ୍ ପ୍ରଥମେ ପବିତ୍ର ଜଳ ସିଞ୍ଚନ କରି ଗାଁ ଦାଣ୍ଡକୁ ଶୋଧନ କରି ଦିଅନ୍ତି । ଏକ ଲାଉ ତୁମ୍ବାରେ ଭର୍ତ୍ତି ଥିବା ପବିତ୍ର ପାଣିକୁ ବୁଇତା କିମ୍ବା ପଧାନ ସେଠାରେ ସମବେତ ହୋଇଥିବା ସେଲାନ୍, କଙ୍ଗେର୍ ଓ ଛୋଟଛୋଟ ଶିଶୁମାନଙ୍କ ଚତୁର୍ପାର୍ଶ୍ୱରେ ସାତ ଥର ପରିକ୍ରମା କରି ଭୂମି

ଉପରେ ସିଞ୍ଚନ କରନ୍ତି । ଏହା ଦ୍ୱାରା ଗାଁ ଦାଣ୍ଡ ଓ ଗାଁର ସମସ୍ତ ସଦସ୍ୟମାନଙ୍କୁ ଶୁଦ୍ଧପବିତ୍ର କରାଯାଏ ବୋଲି ସେମାନଙ୍କର ବିଶ୍ୱାସ ରହିଛି । ଏହାକୁ **'ଗାଁ ବନ୍ଧା'** କୁହାଯାଏ । ଗାଁ ବନ୍ଧା କାର୍ଯ୍ୟକ୍ରମ ଦ୍ୱାରା ଗ୍ରାମକୁ ସଂସ୍କାର କରାଯିବା ସହିତ ଯୁବକ, ଯୁବତୀ ଓ ଶିଶୁମାନଙ୍କୁ ଶୁଦ୍ଧପବିତ୍ର କରାଯାଇଥାଏ । ଆସନ୍ତା ବର୍ଷକ ମଧ୍ୟରେ ଯେଭଳି ଗ୍ରାମର ଶିଶୁ ଓ ଯୁବକ, ଯୁବତୀମାନଙ୍କୁ କୌଣସି ପ୍ରକାର ବିପଦଆପଦ ଆସିବ ନାହିଁ ଏବଂ ଗାଁରେ କେହି ଭୟଙ୍କର ରୋଗର ଶିକାର ହେବେନାହିଁ ସେହି ଉଦ୍ଦେଶ୍ୟରେ ଗାଁ ବନ୍ଧା କରାଯାଇଥାଏ । ଏହା ଗ୍ରାମ ସଂସ୍କାର ପର୍ବର ଏକ ଅଂଶ ହୋଇଥାଏ ।

ଗାଁ ବନ୍ଧା କାର୍ଯ୍ୟକ୍ରମ ପରେ ନାଗମ୍, ପଧାନ ଓ ବାରଭାଇ ନିକଟସ୍ଥ ଝରଣା କିମ୍ବା ନଦୀ କୂଳକୁ ଯାଆନ୍ତି । ସେଠାରେ ବହୁ ପ୍ରତୀକ୍ଷିତ ଏବଂ ପର୍ବର ସବୁଠୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ପଶୁବଳି ଅନୁଷ୍ଠିତ ହୋଇଥାଏ । ଏହାକୁ **'ଛେଦ'** କୁହାଯାଏ । ଏଠାରେ ଏକାଧିକ ଛେଳି, କୁକୁଡା, ମେଣ୍ଢାକୁ ବଳି ଦିଆଯାଇଥାଏ । ଛେଦ କାର୍ଯ୍ୟକ୍ରମ ପୂର୍ବରୁ ନାଗମ୍ ପ୍ରଥମେ ଝରଣା କୂଳ ଭୂମିକୁ ଗୋବର ପାଣିରେ



➢ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ ଓ ପୂଜାର୍ଚ୍ଚନା



✍ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ

ଲେପନ କରି ମାଟିକୁ ସଂସ୍କାର କରନ୍ତି । ଏହାକୁ **'ଭୂମି ବନ୍ଧା'** ବୋଲି କୁହାଯାଇଥାଏ । ଏଠାରେ ଧରମ୍ ଦେବତା, ବସୁମତିମାତା, ପିତୃପୁରୁଷ ଓ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଭୋଗ ଓ ମଦ ଅର୍ପଣ କରାଯାଏ । ଏହାପରେ ପରେ ଛେଦ ପକାଇଯାଇଥାଏ । ଗୁପ୍ତଗଙ୍ଗା ଗ୍ରାମର ଜୁଆଙ୍ଗମାନେ ଗାଁ ନିକଟ ଦେଇ ବହି ଯାଇଥିବା **ଜାଉଁରିଝର** (ବୈତରଣୀ ନଦୀର ଆଞ୍ଚଳିକ ନାମ) ନିକଟରେ ଭୂମି ବନ୍ଧା ଓ ଛେଦ କାର୍ଯ୍ୟକ୍ରମ ଅନୁଷ୍ଠିତ କରିଥିଲେ । ଛେଦ ପଡିବା ପୂର୍ବରୁ ପ୍ରତ୍ୟକ ପଶୁପକ୍ଷୀଙ୍କୁ ଖାଦ୍ୟ ପ୍ରଦାନ କରାଯାଇଥାଏ । ଗୁପ୍ତଗଙ୍ଗାର ନାଗମ୍ ଛେଦ ପଡିବାକୁ ଥିବା ସମସ୍ତ ଛେଳି, ମେଣ୍ଢା ଓ କୁକୁଡାଙ୍କୁ ଚାଉଳ, ବେଲପତ୍ର ଖୁଆଇ ଏବଂ ମନ୍ତ୍ର ପାଠ ଦ୍ୱାରା ସଂସ୍କାର କରିଥିଲେ । ଏହାପରେ ଗାଁର ପଧାନ ନିଜେ ଧରିଥିବା ପବିତ୍ର ଦେବ ଟାଙ୍ଗିଆ ଦ୍ୱାରା ଗୋଟିକ ପରେ ଗୋଟିଏ ଛେଳି, ମେଣ୍ଢା ଓ କୁକୁଡାଙ୍କୁ କାଟି ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥିଲେ । ଛେଦ ପଡିବା ପରେ ନାଗମ୍ ସମସ୍ତ ପଶୁପକ୍ଷୀଙ୍କର ମୁଣ୍ଡକୁ ପୂଜାସ୍ଥଳକୁ ଆଣି ଦେବଦେବୀଙ୍କୁ ଅର୍ପଣ କରନ୍ତି ।

ଛେଦ କାର୍ଯ୍ୟକ୍ରମ ଶେଷ ହୋଇଯିବା ପରେ ପଶୁପକ୍ଷୀଙ୍କର କଟାମୁଣ୍ଡକୁ ନାଗମ୍ ଓ ପଧାନଙ୍କୁ ପ୍ରଦାନ କରାଯାଏ । ଏହିସବୁ କଟାମୁଣ୍ଡକୁ ନାଗମ୍ ଓ ପଧାନ ନିଜେ ରନ୍ଧନ କରି ଭକ୍ଷଣ କରନ୍ତି । ଛେଦ ପଡିଥିବା ପଶୁପକ୍ଷୀର ମାଂସକୁ ନେଇ ଅତୀତରେ ସେହି ଝରଣା କୂଳରେ ଏକ ଗୋଷ୍ଠୀ (ପଙ୍‌କ୍ତି) ଭୋଜନର ଆୟୋଜନ କରାଯାଉଥିଲା । ଜୁଆଙ୍ଗ କଙ୍ଗେର୍ ଓ ସେଲାନ୍‌ମାନେ ଭୋଜିଭାତ ସହ ମଦ ପାନକରି ମତୁଆଲା ଅବସ୍ଥାରେ ଚାଙ୍ଗୁ ନାଚ ଓ ଗୀତର ଆସର ଜମେଇ ଦେଉଥିଲେ । ଜୁଆଙ୍ଗମାନେ ମହୁଲି, ହାଣ୍ଡିଆ ପିଇ ମାଂସ, ଭାତ ଖାଇ ସେହି ଝରଣା କୂଳରେ ଦିନତମାମ୍ ଚାଙ୍ଗୁ ନାଚଗୀତରେ ମାତି ଉଠୁଥିଲେ । ମାତ୍ର ଦୁଃଖର କଥା, ଏବେ ଏହି ଗୋଷ୍ଠୀ ଭୋଜନ, ଚାଙ୍ଗୁ ନାଚ ଓ ସାମୂହିକ ନୃତ୍ୟ, ଗୀତ ଆଉ ଦେଖିବାକୁ ମିଳୁନି । ଏବେ ବଳି ପଡିଥିବା ପଶୁପକ୍ଷୀର ମାଂସକୁ ପ୍ରତ୍ୟକ ଜୁଆଙ୍ଗ ପରିବାର ନିଜନିଜ ମଧ୍ୟରେ ଭାଗବାଣ୍ଟ କରି ନେଉଛନ୍ତି ।

ଛେଦ ପଡିଥିବା ପଶୁପକ୍ଷୀମାନଙ୍କୁ ବୋହିକରି ମଣ୍ଡଘର ନିକଟକୁ ଅଣାଯାଏ । ଏଠାରେ କିଛି



▶ ମାଘପୋଡି: ଗ୍ରାମ ଶାଳରେ ଛେଦ ପଡିବା ପରେ ମୃତ ପଶୁକୁ ବୋହି ମଣ୍ଡଘର ନିକଟକୁ ଅଣାଯାଉଛି ।



ମାଘପୋଡି ପାଳନ ଅବସରରେ ଗ୍ରାମ ଶାଳରେ ଜୁଆଙ୍ଗମାନଙ୍କ 'ଜୁରିପକା' (ସମୂହ ମଦ୍ୟପାନ) କାର୍ଯ୍ୟକ୍ରମ

ଜୁଆଙ୍ଗ ଏହି ପଶୁପକ୍ଷୀଙ୍କୁ କାଟି ସେଥିରୁ ଟୁକୁରା ମାଂସ ପ୍ରସ୍ତୁତ କରନ୍ତି । ଏହାପରେ କଟା ମାଂସକୁ ଶାଳପତ୍ରରେ ଭାଗଭାଗ କରି ପ୍ରତ୍ୟକ ଜୁଆଙ୍ଗ ପରିବାର ମଧ୍ୟରେ ବାଣ୍ଟି ଦିଆଯାଏ । ଜୁଆଙ୍ଗମାନେ ଏହି ମାଂସକୁ ନେଇ ନିଜ ଘରେ ଆଉ ମାଂସ ମିଶେଇ ରୋଷେଇ କରି ଖାଆନ୍ତି । ଅତୀତରେ ଅନୁଷ୍ଠିତ ହେଉଥିବା ସାମୂହିକ ଭୋଜନ ନ ହେବା କାରଣରୁ ଜୁଆଙ୍ଗମାନଙ୍କର ଗୋଷ୍ଠୀ ଜୀବନ ଅନେକ ମାତ୍ରାରେ ପ୍ରଭାବିତ ହୋଇଛି ବୋଲି କୁହାଯାଇପାରେ ।

ମାଘପୋଡି ପର୍ବ ପାଳନ ବେଳେ ଯୁବକ, ଯୁବତୀମାନେ ପଥମ ଥର ପାଇଁ ଚାଙ୍ଗୁ ନାଚ ଓ ଗୀତ କରିଥାନ୍ତି । ଏହା ପୂର୍ବରୁ ଚାଙ୍ଗୁ ନାଚ ଓ ଗୀତ ହୋଇ ନଥାଏ । ମାଘ ପୋଡି ପର୍ବ ପାଳନ ପରେ ହିଁ ଜୁଆଙ୍ଗମାନେ ବିଭିନ୍ନ ପ୍ରକାର ଡାଲିଜାତୀୟ ଶସ୍ୟକୁ ବିଧିବଦ୍ଧ ଭାବେ ଖାଇବା ଆରଂଭ କରନ୍ତି । ପ୍ରଥମେ ନାଗମ୍ ଖାଇବା ପରେ ଗ୍ରାମବାସୀ ଖାଆନ୍ତି ।

ତିନି ଦିନ ଧରି ପାଳନ କରାଯାଉଥିବା 'ମାଘପୋଡି' ପର୍ବ ଉଦ୍‌ଯାପନର ପ୍ରାୟ ସପ୍ତାହେ ପରେ

ଗ୍ରାମର ଜୁଆଙ୍ଗମାନଙ୍କ ମଧ୍ୟରେ ଚାଷ ଜମିର ଭାଗବଣ୍ଟା ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ଦିନରେ ଗାଁ ମୁଖିଆ 'ପଧାନ', ପୂଜକ 'ନାଗମ୍', ବାରଭାଇ ଓ ଅନ୍ୟାନ୍ୟ ମୁରବୀ ଶ୍ରେଣୀୟ ଜୁଆଙ୍ଗମାନେ ମଣ୍ଡଘରେ ବସି ନିଜନିଜ ମଧ୍ୟରେ ତଇଲା ଓ ଅନ୍ୟାନ୍ୟ ଭୂମି ବଣ୍ଟନ କରିବାର ଯୋଜନା କରନ୍ତି । ସମସ୍ତ ଗ୍ରାମବାସୀ ନିକଟସ୍ଥ ଜଙ୍ଗଲକୁ ଯାଇ ଜଙ୍ଗଲ ଓ ଗଛବୃଛ ସଫା କରି ନିଜନିଜର ମନ ମୁତାବକ ତଇଲା ଜମି ବାଣ୍ଟି ନେଇଥାନ୍ତି । ସମସ୍ତ ପରିବାରର ସଦସ୍ୟମାନେ ପର୍ବତ ଉପରକୁ ଯାଇ ନିରୂପଣ କରାଯାଇଥିବା ତଇଲା ଭୂମିର ସ୍ଥାନ ଚିହ୍ନଟ କରନ୍ତି ।

ଅତୀତରେ ଜୁଆଙ୍ଗ ଗ୍ରାମଗୁଡିକର ସମସ୍ତ ଭୂମି ଅର୍ଥାତ୍ ତଇଲା ଭୂମି, ଏକାନ୍ (ଚାଷଜମି), ଗୋଡା ଭୂମି ଏପରିକି ଘରବାଡିମାନଙ୍କରେ ମଧ୍ୟ ଜୁଆଙ୍ଗମାନଙ୍କର ବ୍ୟକ୍ତିଗତ ମାଲିକାନା ନଥିଲା । ସମସ୍ତ ଭୂମି ଗ୍ରାମର ସାମୁହିକ ସଂପତ୍ତି ଥିଲା । ଗାଁ ମୁଖିଆ 'ପଧାନ', ପୁରୋହିତ 'ନାଗମ୍' (ବୁଇତା), ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ 'ମାଘ ପୋଡି' ପର୍ବରେ ଏକତ୍ରିତ ହୋଇ ପରିବାରଗୁଡିକ ମଧ୍ୟରେ ଏହିସବୁ ଭୂମିଗୁଡିକର ବଣ୍ଟନ କରୁଥିଲେ । ଜନବସତିଗୁଡିକ ମଧ୍ୟ ଏକ ନିର୍ଦ୍ଦିଷ୍ଟ ସମୟ



► ମାଘପୋଡି: 'ଗାଁ ବନ୍ଧା' କାର୍ଯ୍ୟକ୍ରମ ଅବସରରେ 'ପଧାନ' ଲାଉ ତୁମ୍ବାରେ ଥିବା ପବିତ୍ର ଜଳକୁ ସମବେତ ଶିଶୁଙ୍କ ଚତୁର୍ପାର୍ଶ୍ୱରେ ସିଞ୍ଚନ କରୁଛନ୍ତି ।



▶ **ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ ଓ ପୂଜାର୍ଚ୍ଚନା**

ବ୍ୟବଧାନରେ ସ୍ଥାନାନ୍ତରିତ ହେଉଥିଲା । 'ମାଘପୋଡି' ପର୍ବ ପାଳନ ଅବସରରେ ଗ୍ରାମର ସମସ୍ତ ପରିବାର ନିଜନିଜର ପୁରାତନ ଗୃହ ଭାଙ୍ଗି ନୂତନ ବସତି ସ୍ଥାପନ କରୁଥିଲେ । ଗ୍ରାମର 'ପଧାନ', 'ନାଗମ୍' ଏବଂ 'ବାରଭାଇ' ଜୁଆଙ୍ଗମାନଙ୍କୁ ଘରବାଡି ଭୂମି ଚିହ୍ନଟ କରାଉଥିଲେ । ବସତି ପରିବର୍ତ୍ତନ ପର୍ଯ୍ୟନ୍ତ ସେହିସବୁ ଭୂମି, ଘରବାଡି ସଂପୃକ୍ତ ପରିବାର ଅଧୀନରେ ରହୁଥିଲେ ମଧ୍ୟ ଏଗୁଡିକ ଗ୍ରାମର ସାମୁହିକ ସଂପତ୍ତି ହୋଇ ରହୁଥିଲା । ତେବେ ବର୍ତ୍ତମାନ ଜୁଆଙ୍ଗମାନଙ୍କ ଗାଁରେ ଏହି ମାଘପୋଡ଼ି ପର୍ବର ଆଭିମୁଖ୍ୟରେ ଅନେକ ପରିବର୍ତ୍ତନ ଦେଖାଦେଇଛି । ଜଙ୍ଗଲ, ଜମି ଉପରେ ଜୁଆଙ୍ଗମାନଙ୍କର ଅଧିକାର ନେଇ ବିବାଦମୂଳକ ପରିସ୍ଥିତି ଜାରି ରହିଛି । ଅପରପକ୍ଷେ, ଜୁଆଙ୍ଗମାନେ ପୂର୍ବଭଳି ଆଉ ବାରମ୍ବାର ବସତି (ସ୍ଥାନ) ପରିବର୍ତ୍ତନ କରୁନାହାନ୍ତି । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥାୟୀ ଭାବେ ସେମାନେ ବସତି (ଗ୍ରାମ) ପ୍ରତିଷ୍ଠା କରି ପାରିଛନ୍ତି । ଏଣୁ ମାଘପୋଡି ପର୍ବ ପାଳନବେଳେ ବସତି ପରିବର୍ତ୍ତନ କରିବାର ଆବଶ୍ୟକ ପଡୁନାହିଁ । ତେବେ 'ମାଘପୋଡି' ପର୍ବ ପାଳନବେଳେ ଜୁଆଙ୍ଗମାନଙ୍କ ମଧ୍ୟରେ ପୋଡୁ ଚାଷ ପାଇଁ 'ତଇଲା' (ଚାଷଜମି)ର ଆବଣ୍ଟନ ହୋଇଥାଏ ।

▶ ମାଘପୋଡି: ଗ୍ରାମଶିରିଙ୍କ ନିକଟରେ 'ଗା ବନ୍ଧା' କାର୍ଯ୍ୟକ୍ରମ



▶ ମାଘପୋଡି: ଗ୍ରାମ ନିକଟ ଦେଇ ବହିଯାଇଥିବା ଝରଣା କୂଳରେ 'ଭୂମି ବନ୍ଧା' କାର୍ଯ୍ୟକ୍ରମ

▶ ମାଘପୋଡି: ଗ୍ରାମ ଶାଳରେ ଛେଦ କାର୍ଯ୍ୟକ୍ରମ ଓ ପୂଜାର୍ଚ୍ଚନା



▶ ମାଘପୋଡି: ଧୂଆଁପତ୍ର ଟାଣିବାରେ ବ୍ୟସ୍ତ ଲେଖକ

# ଆମ୍ବ ନୂଆ

*(new mango eating festival of the Juang)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

ଗ୍ରାମ: ଉପରରଡୁଆଁ

ଗ୍ରାମ ପଞ୍ଚାୟତ: ତଳଚଂପେଇ

ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।

ଅଧ୍ୟୟନ ଦିବସ: ୧୪, ୧୫, ୧୬ ଓ ୧୭ ଏପ୍ରିଲ୍ ୨୦୧୩ (ଚାରିଦିନ ବ୍ୟାପୀ)

ତଥ୍ୟ ପ୍ରଦାନକାରୀ: ଉପରରଡୁଆଁ ଗ୍ରାମର ପରବାସିଆ ଜୁଆଙ୍ଗ (ପଧାନ), ମଣିଆ ଜୁଆଙ୍ଗ (ନାଗମ୍), ନାରଦ ଜୁଆଙ୍ଗ(କାର୍ଡି), ଚେମନ୍ ଜୁଆଙ୍ଗ (ଡ଼ାଙ୍ଗୁଆ), ଗୋବିନ୍ଦ ଜୁଆଙ୍ଗ, ବଙ୍ଗାଳି ଜୁଆଙ୍ଗ, ବେନୁ ଜୁଆଙ୍ଗ, ବିନୋଦ ଜୁଆଙ୍ଗ (ମାଟା କଙ୍ଗେର) ଏବଂ ପ୍ରାଣବଲ୍ଲଭ ଘଣା ।



▶ ଆମ୍ବନୂଆ ପର୍ବ ପାଳନ ପୂର୍ବରୁ ଜୁଆଙ୍ଗ ସେଲାନ୍ (ଯୁବତୀ)ମାନେ ମଣ୍ଡଘରକୁ ଲିପାପୋଛା କରୁଛନ୍ତି



▶ **ଆମ୍ବନୂଆଖିଆର ପ୍ରଥମ ଦିନରେ ଗ୍ରାମଶିରିଙ୍କ ନିକଟରେ ପୂଜା କରୁଥିବା ଗାଁର ପୂଜକ (ନାଗମ୍)**

ପୂର୍ବରୁ କୁହାଯାଇଛି, ଜୁଆଙ୍ଗମାନେ ପ୍ରତ୍ୟକ ଶସ୍ୟ, ଡାଲି, ପନିପରିବା ଖାଇବା ପୂର୍ବରୁ ପ୍ରଥମେ ଦେବଦେବୀ ଓ ନିଜନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥା'ନ୍ତି । ଏହାକୁ 'ନୂଆଖିଆ' କୁହାଯାଇଥାଏ । ସେମିତି 'ଆମ୍ବ ନୂଆ' ପର୍ବରେ ନୂଆ କରି ଫଳିଥିବା ଆମ୍ବକୁ ବିଧିବଦ୍ଧ ଭାବେ ଖାଇବା ପୂର୍ବରୁ ତାହାକୁ ଦେବତା ଓ ପିତୃପୁରୁଷଙ୍କୁ ଅର୍ପଣ କରିଥା'ନ୍ତି । ଏହି ଆମ୍ବ ନୂଆଖିଆ ପର୍ବଟି ଜୁଆଙ୍ଗମାନଙ୍କର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପର୍ବ ଅଟେ । ଏହି ପର୍ବଟି ବିଶେଷକରି ବର୍ଷର ମାର୍ଚ୍ଚ-ଏପ୍ରିଲ୍ ମାସ ବେଳକୁ ପାଳିତ ହୋଇଥାଏ । ଆମ୍ବ ଗଛରେ ଆମ୍ବ ସାମାନ୍ୟ ବଡ଼ ହୋଇ ଭୋଜନ ଯୋଗ୍ୟ ଅବସ୍ଥାକୁ ଆସିଲେ ଏହାକୁ ଦେବତାମାନଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଇଥାଏ । ଗ୍ରାମବାସୀ ଆମ୍ବ ବଉଳ ଓ ଆମ୍ବ କଷିଗୁଡିକୁ ସଂଗ୍ରହ କରି ନାଗମ୍ (ପୂଜକ)ଙ୍କୁ ଅର୍ପଣ କରନ୍ତି । ନାଗମ୍ ସେଗୁଡିକୁ ଦେବତାମାନଙ୍କ ଉଦ୍ଦେଶ୍ୟରେ ପୂଜା କରି ଗ୍ରାମବାସୀଙ୍କୁ ବିତରଣ କରନ୍ତି । ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବା ପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ ଆମ୍ବ ଖାଇବା ଆରଂଭ କରନ୍ତି ।

ଆମ୍ବ ନୂଆ ପର୍ବଟି ଚାରିଦିନ ଧରି ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ମଣ୍ଡାଖିଆ, ଦ୍ୱିତୀୟ ଦିନ ବାରଗୁଆ, ତୃତୀୟ ଦିନ ଭାତଖିଆ ଏବଂ ଚତୁର୍ଥ ଦିନ ଆମ୍ବ ନୂଆଖିଆ କରାଯାଇଥାଏ । ଏହି ଚତୁର୍ଥ ଦିନରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁବଳି ଅର୍ଥାତ୍ ଛେଦ ପଡିଥାଏ । ଏହିଦିନ ନୂତନ କରି ଯୁବକ, ଯୁବତୀମାନେ ଗ୍ରାମ ସଂଗଠନ କୁହାଯାଉଥିବା ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥାନ୍ତି । ଏହି ଦିନଟି ଅବିବାହିତ ଯୁବକ, ଯୁବତୀମାନଙ୍କ ପାଇଁ ଏକ ସ୍ମରଣୀୟ ଦିବସ ଭାବେ ପରିଗଣିତ ହୋଇଥାଏ । ଏହି ଦିନରେ ଯୁବକ, ଯୁବତୀମାନେ ନୂତନ ଭାବେ ବ୍ରତ ଗ୍ରହଣ କରି ବିଧିବଦ୍ଧ ଭାବେ ଯୁବ ଅନୁଷ୍ଠାନ (ମଜାଙ୍ଗ)ର ସଭ୍ୟ ହୁଅନ୍ତି । ଏହା ସହିତ ବିବାହିତ ଯୁବକ, ଯୁବତୀମାନେ ମଜାଙ୍ଗ୍ର ସଭ୍ୟ ପଦରୁ ଅବ୍ୟାହତି ନିଅନ୍ତି । ଏହି ଦିନ ନୂତନକରି ସଭ୍ୟପଦ ଗ୍ରହଣ କରିଥିବା ଯୁବକ, ଯୁବତୀମାନେ ସ୍ୱୟଂ କିମ୍ବା ନାଗମ୍ଙ୍କ ଦ୍ୱାରା ଚାଙ୍ଗୁ ଦେବତାଙ୍କୁ କୁକୁଡା ଅଣ୍ଡା ଓ ପେଣ୍ଠି କୁକୁଡା ଅର୍ପଣ କରନ୍ତି । ଯୁବକ, ଯୁବତୀମାନେ ଘୋଡା, ହାତୀ ଭଳି ବିଭିନ୍ନ ବେଶ ଧାରଣ କରି ନୃତ୍ୟ କରନ୍ତି । ଏହାକୁ 'ଘୋଡ଼ାନାଚ' କୁହାଯାଏ । ରାତିର ବିଳମ୍ବିତ ପ୍ରହରରେ ଏହି ଘୋଡାନାଚ ଆୟୋଜନ



୫ ଗ୍ରାମବାସୀ ଗାଁର ପଧାନଙ୍କୁ ମଣ୍ଡଘର ନିକଟକୁ ବାଜା ବଜେଇ ପାଛୋଟି ଆଣୁଛନ୍ତି



▶ ଆମ୍ବନୂଆଖିଆର ପ୍ରଥମ ଦିନରେ ଗ୍ରାମଶିରିଙ୍କ ନିକଟରେ ପୂଜା କରୁଥିବା ଗାଁର ପୂଜକ (ନାଗମ୍)

କରାଯାଇଥାଏ । ଦିନବେଳା ଗ୍ରାମରେ ଭୋଜିଭାତ, ମଦପାଣି ଓ ନାଚଗୀତର ଆୟୋଜନ ହୁଏ । ଏହି ପର୍ବ ଶେଷ ହେବା କ୍ଷଣି ସାମୁହିକ ଶିକାର (ପାରିଧି) ପର୍ବର ଆୟୋଜନ ହୋଇଥାଏ ।

ଅନ୍ୟ ପର୍ବପର୍ବାଣିମାନଙ୍କ ଭଳି ଏହି ପର୍ବ ପାଳନ ହେବାର ସପ୍ତାହେ କି ଦୁଇ ସପ୍ତାହ ପୂର୍ବରୁ ପ୍ରଥମେ ଗାଁ ମୁଖିଆ 'ପଧାନ' ଓ ଧାର୍ମିକ ମୁଖ୍ୟ 'ନାଗମ୍'ଙ୍କ ନେତୃତ୍ୱରେ ଗାଁର ମଣ୍ଡଘରେ ଏକ ପ୍ରସ୍ତୁତି ବୈଠକ ଅନୁଷ୍ଠିତ ହୋଇଥାଏ । ଏଥିରେ ନାଗମ୍ (ପୂଜକ), ଡ଼ାଙ୍ଗୁଆ, କାର୍ଜି, ଗାଉଳିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତି (ବାରଭାଇ)ମାନେ ଉପସ୍ଥିତ ରହି ପର୍ବର ଦିନ ଧାର୍ଯ୍ୟ କରିଥାନ୍ତି । ପର୍ବ ପାଳନ ପାଇଁ ଗ୍ରାମର ପ୍ରତ୍ୟକ ପରିବାରରୁ ନିର୍ଦ୍ଦିଷ୍ଟ ପରିମାଣର ଚାନ୍ଦା ମଗାଯାଇ 'ମଣ୍ଡଘର' ପାଣ୍ଠିରେ ଦାଖଲ କରାଯାଏ । 'ପଧାନ' ଏହି ସଂଗୃହୀତ ଅର୍ଥକୁ ନିଜ ହେପାଜତରେ ରଖନ୍ତି ଏବଂ ପର୍ବ ପାଳନ ପାଇଁ ଖର୍ଚ୍ଚ କରିଥାନ୍ତି ।

**ପ୍ରଥମ ଦିନ (ମଣ୍ଡାଖିଆ):** ପ୍ରଥମ ଦିନରେ ଗ୍ରାମର ପ୍ରତ୍ୟେକ ଜୁଆଙ୍ଗ ପରିବାରର ମୁଖ୍ୟମାନେ ନିଜନିଜର ଘରୁ ଚାଉଳ, ମାଣ୍ଡିଆ, ଗହମ, କାଙ୍ଗୁ, ଗଙ୍ଗେଇ, କାଠିଆ ଚୁନା ଆଣି ମଣ୍ଡଘର ସମ୍ମୁଖରେ

ଥିବା ଗ୍ରାମଶିରିଙ୍କ ପୂଜା ମଣ୍ଡପ (ବେଦୀ) ନିକଟରେ ଏକତ୍ର କରନ୍ତି । ଏହା ସହିତ ପ୍ରତ୍ୟକ ପରିବାରରୁ ଧୂପ, ଦୀପ, ଫୁଲ, ହଳଦିଗୁଣ୍ଡ, ସିନ୍ଦୁର, ଅରୁଆ ଚାଉଳ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ମଧ୍ୟ ପୂଜାସ୍ଥଳକୁ ଆସିଥାଏ । ନାଗମ୍ ଓ ପଧାନ ଏକ ଏକ ଡାଲାରେ ଅରୁଆ ଚାଉଳ, ହଳଦିଗୁଣ୍ଡ, ସିନ୍ଦୁର, କଜଳ, ଧୂପଦୀପ, ଦୁବ, ଶିଆଳିପତ୍ର, ଲାଉ ତୁମ୍ବାରେ ଭର୍ତ୍ତି ପବିତ୍ର ପାଣି ଓ ଅନ୍ୟାନ୍ୟ ପୂଜାସାମଗ୍ରୀ ହାତରେ ଧରି ମଣ୍ଡଘର ନିକଟକୁ ଆସନ୍ତି । ଗ୍ରାମର କିଛି ଜୁଆଙ୍ଗ ବାଜା ବଜେଇ ଘୋଷଣି କରି ବୂଇତା, ପଧାନ ଓ କାର୍ଜିଙ୍କୁ ମଣ୍ଡଘର ନିକଟକୁ ପାଛୋଟି ଆଣିଥାନ୍ତି । ମଣ୍ଡଘର ନିକଟରେ ପହଞ୍ଚିବା ପରେ ନାଗମ୍ ଓ ପଧାନ ମଣ୍ଡଘର ପାଣ୍ଡିରେ ପୂର୍ବରୁ ରଖାଯାଇଥିବା ମହୁଲି ମଦ ବାହାର କରି ଗ୍ରାମଶିରିଙ୍କ ନିକଟରେ ପହଞ୍ଚନ୍ତି । ସେଠାରେ ନାଗମ୍ ଓ ପଧାନ ଧରମ୍ ଦେବତା, ବସୁମତି ମାତା ଏବଂ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜାଅର୍ପଣ କରିଥାନ୍ତି । ଭୂମି ଉପରେ ମହୁଲି ମଦ ଢାଳି ନାଗମ୍, ପଧାନ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଗାଁରୁ ସଂଗୃହୀତ ହୋଇଥିବା ଚାଉଳ ଚୂନାକୁ ଦୁଇ ଭାଗ କରି ଗୋଟିଏ ଭାଗକୁ ମଣ୍ଡଘରେ



ଆମ୍ବନୂଆ ପର୍ବ ପାଳନର ଦ୍ୱିତୀୟ ଦିନରେ ପୂଜା ନିମନ୍ତେ ଗ୍ରାମଶାଳକୁ ଯାଉଛନ୍ତି ଜୁଆଙ୍ଗମାନେ



➢ ନୂଆ କଙ୍ଗେର୍ (ନୂତନ ଜରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନଙ୍କ ଉଦ୍ଦେଶ୍ୟରେ ପୂଜା କାର୍ଯ୍ୟକ୍ରମ

ରଖାଯାଏ । ଅନ୍ୟ ଭାଗଟିକୁ ଏକ ବାଉଁଶପାତିଆରେ ନିର୍ମିତ ଡାଲା (ଟାଙ୍ଗୁଡି)ରେ ଧରି ନାଗମ୍ ନିକଟସ୍ଥ ନଦୀକୂଳକୁ ପୂଜାର୍ଚ୍ଚନା ଉଦ୍ଦେଶ୍ୟରେ ବାହାରିପଡନ୍ତି । ତାଙ୍କ ସାଥୀରେ ଗାଁ ମୁଖିଆ ପଧାନ, କାର୍ଜି ଏବଂ ଅନ୍ୟ କିଛି ପିଲାମାନେ ନଦୀକୂଳକୁ ଯାଇଥାନ୍ତି । ଉପରରତୁଆଁ ଗ୍ରାମର ଜୁଆଙ୍ଗମାନେ ପୂଜା ନିମନ୍ତେ ଗାଁ ନିକଟରେ ବହିଯାଉଥିବା ମାଛକାନ୍ଦଣା ନଦୀ କୂଳକୁ ଯାଇଥିଲେ ।

ନଦୀ କୂଳରେ ପହଞ୍ଚିଲାପରେ ନାଗମ୍ ଓ ପଧାନ ନିଜ ସାଥୀରେ ନେଇଥିବା ଚୁନାକୁ ଦୁଇ ଭାଗ କରି ସେଥିରୁ ଗୋଟିଏ ଭାଗ ଚୁନାକୁ ଡାଲାରେ ପୂରେଇ ପାଣିରେ ଭସେଇ ଦିଅନ୍ତି । ଏହି ଅବସରରେ ନଦୀକୂଳରେ ନାଗମ୍ ନିଜର ପୂର୍ବପୁରୁଷ ଏବଂ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କରନ୍ତି । ଗୋଟିଏ ଭାଗ ଚୁନା ନଦୀରେ ଭସେଇ ଦେବାପରେ ଅନ୍ୟ ଭାଗ ଚୁନାକୁ ପାଣିରେ ଗୋଳେଇ ଶର୍ଗିପତ୍ରରେ ଗୁଡେଇ ନିଆଁରେ ପୋଡି ଏକପ୍ରକାର ପିଠା ପ୍ରସ୍ତୁତ କରାଯାଏ । ଏହି ପିଠାକୁ ନାଗମ୍, ପଧାନ, କାର୍ଜି ଓ ସେଠାରେ ଉପସ୍ଥିତ ପିଲାମାନେ ଖାଇ ପୁନର୍ବାର ଗାଁକୁ ଫେରନ୍ତି ।

ଗାଁକୁ ଫେରିଲାପରେ ମଣ୍ଡଘରେ ଗଚ୍ଛିତ ଥିବା ଚୁନାରେ ପିଠା କରାଯାଇ ପ୍ରତ୍ୟକ ପରିବାରରେ ବଣ୍ଟନ କରାଯାଏ । ସେହିଦିନ ସନ୍ଧ୍ୟାରେ ଗାଁ ମୁଣ୍ଡରେ ଥିବା ଶାଳ ଜଙ୍ଗଲରେ ଜୁଆଙ୍ଗମାନଙ୍କ ମଧ୍ୟରେ ଏକ ଗୋଷ୍ଠୀ ଭୋଜିର ଆୟୋଜନ ହୋଇଥାଏ । ପ୍ରତ୍ୟେକ ଜୁଆଙ୍ଗଘରୁ କୁକୁଡା, ଚାଉଳ, ପନିପରିବା ଆଦାୟ ହୋଇଥାଏ । ଆବଶ୍ୟକସ୍ଥଳେ ମଣ୍ଡଘର ପାଣ୍ଠିରୁ ଛେଳି, ମେଣ୍ଢା ଏବଂ ମଦ କିଣାଯାଇ ଏହି ଭୋଜିରେ ବ୍ୟବହୃତ ହୋଇଥାଏ । ଗାଁରୁ ଯୁବକ, ଯୁବତୀମାନେ ଭୋଜି ଖାଇ ମଦ ପିଇ ନାଚଗୀତରେ ମସ୍‌ଗୁଲ୍ ହୋଇ ଉଠନ୍ତି । ବିଳମ୍ବିତ ରାତିଯାଏ ଯୁବକ, ଯୁବତୀମାନେ ଚାଙ୍ଗୁ ନାଚଗୀତର ଆସର ଜମେଇଥାନ୍ତି ।

**ଦ୍ୱିତୀୟ ଦିନ (ବାରରୁଆ):** ଆମ୍ବ ନୂଆ ପର୍ବର ଦ୍ୱିତୀୟ ଦିନ ଗାଁର ପୂଜକ, ମୁଖିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ସକାଳୁ ସ୍ନାନ ଓ ନିତ୍ୟକର୍ମ ସାରି ନିଷ୍ଠାର ସହ ଉପବାସ ରହିଥାନ୍ତି । ଏହାକୁ **'ବାର ରୁଆ'** ବୋଲି କୁହାଯାଏ । ଗାଁ ମୁଖିଆ 'ପଧାନ', ପୂଜକ 'ବୁଇତା' ବାରଭାଇ ଓ



**ଆମ୍ବନୂଆ ପର୍ବ ପାଳନ ତୃତୀୟ ଦିନରେ ଗ୍ରାମଶାଳରେ ଖୀରି ପ୍ରସ୍ତୁତ ହେଉଛି**



**ବଳିରେ ବ୍ୟବହୃତ ହେଉଥିବା ଦେବ ଟାଙ୍ଗିଆକୁ ଗ୍ରାମଶିରିଙ୍କ ନିକଟରେ ପୂଜା କରାଯାଉଛି**

ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଗାଁର ମଙ୍ଗଳ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଉପବାସ ରହିବା ସାଙ୍ଗକୁ ନିଷ୍ଠାର ସହ ବ୍ରତ ଧାରଣ କରନ୍ତି । ଗାଁର ପୂଜକ (ନାଗମ୍), ପଧାନ ନୂତନ ବସ୍ତ୍ର ପରିଧାନ କରିଥାନ୍ତି । ବୁଇତା ସକାଳୁ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୋଇଯାଏ । ସେଲାନ୍ (ଯୁବତୀ)ମାନେ ଗୋବର, ରଙ୍ଗୀନ୍ ମାଟିରେ 'ମଜାଙ୍ଗ୍' (ମଣ୍ଡଘର)ର କାନ୍ଥ ଓ ଅଗଣାକୁ ଲିପାପୋଛା କରିବା ପରେ ଝୋଟି ଚିତା ପକେଇଥାନ୍ତି । ଯୁବତୀମାନେ ମଣ୍ଡଘର ଲିପାପୋଛା କରିବା ପରେ ମଣ୍ଡଘର ସାମ୍ନାରେ ଥିବା 'ଗ୍ରାମଶିରି' ଆସ୍ଥାନକୁ ଗୋବର ପାଣିରେ ସଫା କରିବା ସହ ଗ୍ରାମଶିରିଙ୍କ ମୂର୍ତ୍ତି କୁହାଯାଉଥିବା ପଥରଖଣ୍ଡମାନଙ୍କୁ ପାଣିରେ ଧୋଇ ଶୁଦ୍ଧ କରନ୍ତି । ତେଣେ ସ୍ନାନ ସାରିବା ପରେ ଗାଁର ନାଗମ୍, ପଧାନ ଓ କାର୍ଜି ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଗ୍ରାମର ଜୁଆଙ୍ଗମାନେ ବାଜା ବଜେଇ ଘୋଷଣି କରି ଜଣକ ପରେ ଜଣେ ନାଗମ୍, ପଧାନ ଓ କାର୍ଜିଙ୍କୁ କ୍ରମାନ୍ୱୟରେ ନିଜନିଜ ଘରୁ ପାଛୋଟି ଆଣି ମଣ୍ଡଘରେ ହାଜର କରାନ୍ତି । ସକାଳୁ ସକାଳୁ ଗାଁର କିଛି ଅବିବାହିତ ଯୁବକ ନିକଟସ୍ଥ ଗଉଡ ଘରୁ ଗୋଟିଏ ପବିତ୍ର ମାଟି ହାଣ୍ଡିରେ ଗାଈ ଦୁଧ ଆଣିଥା'ନ୍ତି ।

ଏହି ଦୁଧକୁ ନାଗମ୍ ଗ୍ରାମଶିରିଙ୍କ ଉପରେ ଢାଳି ତାଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କରିବା ସହ ଧରମ୍ ଦେବତା, ବସୁମତି ମାତା ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରନ୍ତି । ଏହାପରେ ନାଗମ୍ ଓ ପଧାନ କାଚ ବୋତଲରେ ଥିବା ମହୁଲି ମଦକୁ ଗ୍ରାମଶିରିଙ୍କ ଉପରେ ଢାଳି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି । ଗ୍ରାମଶିରିଙ୍କ ନିକଟରେ ପୂଜାର୍ଚ୍ଚନା ଶେଷ ହେବାପରେ ପଧାନ, ନାଗମ୍, କାର୍ଜି, ବାରଭାଇ ଓ ଗ୍ରାମର ଅନ୍ୟାନ୍ୟ ଯୁବକ, ପିଲାମାନେ ଗାଁ ନିକଟରେ ଥିବା ଶାଳକୁ ଯାଇ ସେଠାରେ ପୂଜାର୍ଚ୍ଚନା କରନ୍ତି । ଉପରରତୁଆଁର ଶାଳର ନାମ ହେଉଛି 'ବଡ଼ାମ୍ ଶାଳ' । ଏଣୁ ଉପରରତୁଆଁ ଗ୍ରାମର ସମସ୍ତ ଜୁଆଙ୍ଗମାନେ ବଡ଼ାମ୍ ଶାଳକୁ ଯାଇ ସେଠାରେ ବଡାମ୍ ଠାକୁର, ପିତୃପୁରୁଷ, ଗ୍ରାମଦେବଦେବୀ, ଧରମ୍ ଦେବତା, ବସୁମତି ମାତା ଓ ଅନ୍ୟାନ୍ୟ ଦେବଦେବୀଙ୍କୁ ଧୂପ, ଦୀପ, ମହୁଲିମଦ, ପଣା ଦେଇ ପୂଜାର୍ଚ୍ଚନା କରିଥିଲେ ।

**ତୃତୀୟ ଦିନ (ଭାତଖିଆ):** ଅନ୍ୟ ଦିନମାନଙ୍କ ଭଳି ନାଗମ୍, ପଧାନ, କାର୍ଜି ସକାଳୁ ସ୍ନାନ



► 'ଆମ୍ବନୂଆ' ପର୍ବ ଅବସରରେ ଗ୍ରାମଶିରିଙ୍କ ବେଦୀ ନିକଟରେ ପୂଜାକାର୍ଯ୍ୟ



ଆମ୍ବନୂଆ ପର୍ବ ପାଳନର ଦ୍ୱିତୀୟ ଦିନରେ ପୂଜା ନିମନ୍ତେ ଗ୍ରାମଶାଳକୁ ଯାଉଛନ୍ତି ଜୁଆଙ୍ଗମାନେ

ସାରି ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଜୁଆଙ୍ଗ ଯୁବକମାନେ ବାଜାବଜେଇ ଗୋଷଣି କରି ଏମାନଙ୍କୁ ମଣ୍ଡଘର ଓ ଗ୍ରାମଶିରି ନିକଟକୁ ଆଣନ୍ତି । ଗ୍ରାମଶିରିଙ୍କ ନିକଟରେ ଯଥାବିଧି ପ୍ରକାରେ ପୂଜାକାମ ଶେଷହେଲା ପରେ ନାଗମ୍, ପଧାନ, କାର୍ଜିଙ୍କ ସମେତ ବାରଭାଇମାନେ ଗ୍ରାମ ନିକଟସ୍ଥ **'ଶାଳଘର' (ଉପରରତୁଆଁର ଶାଳଘରର ନାମ ବଡାମ୍ ଶାଳ)**କୁ ଯାଆନ୍ତି । ଗ୍ରାମଶିରିଙ୍କ ନିକଟରୁ ଶାଳ ପର୍ଯ୍ୟନ୍ତ ଜୁଆଙ୍ଗମାନେ ପଧାନ, ନାଗମ୍, କାର୍ଜିଙ୍କୁ ବାଜା ବଜେଇ ଗୋଷଣି କରି ନେଇଥାନ୍ତି । ଶାଳ ନିକଟରେ ପହଞ୍ଚିବାପରେ ସେଠାରେ ରୀତିନୀତି ମୁତାବକ ପୂଜାକାର୍ଯ୍ୟ କରାଯାଇଥାଏ । ଶାଳଘର ପରିସରରେ ପୂର୍ବରୁ ଏକ ଚୂଲି ଥାଏ । ନାଗମ୍, କାର୍ଜି ଛୋଟଛୋଟ ଶୁଖିଲା ଶାଳକାଠ ସଂଗ୍ରହ କରନ୍ତି । ବଡ଼ାମ୍‌ଶାଳରେ ଥିବା ଗଛ କୋରଡରେ ପୂର୍ବରୁ ଏକ ଛୋଟ ମାଟିହାଣ୍ଡି (ବଢା) ଥାଏ । ସୂଚନାଯୋଗ୍ୟ, ପୂର୍ବରୁ ଏହି ବଢାଟିକୁ 'ମାଘପୋଡି' ପର୍ବ ପାଳନ ସମୟରେ ଗଛର କୋରଡରେ ଶିଆଳିପତ୍ରରେ ଗୁଡେଇ ରଖାଯାଇଥାଏ । ବଢାଟି ଯଦି କୌଣସି କାରଣରୁ ଗଛରେ ଥିବା ଅବସ୍ଥାରେ ଭାଙ୍ଗିଯାଏ ତେବେ ଏହା ଗାଁ ପ୍ରତି ବିପଦ ସୂଚନା ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏମିତି

ହେଲେ ପୁନର୍ବାର ଏକ ନୂଆ ବଢା ପ୍ରତିଷ୍ଠା ହୋଇଥାଏ । ଏହି ନୂତନ ବଢା ସ୍ଥାପନ ସମୟରେ ଜୁଆଙ୍ଗମାନେ ବଡ଼ାମ୍‌ଦେବତା, ଧରମ୍ ଦେବତା ଓ ବସୁମତି ମାତାଙ୍କ ଉଦ୍ଦେଶ୍ୟରେ ଏକ ଘୁଷୁରି ବଳି ପକେଇଥାନ୍ତି ।

ନାଗମ୍ ଗଛ କୋରଡରୁ ମାଟିହାଣ୍ଡି (ବଢା)କୁ ବାହାର କରି ସେଥିରେ ନିଜ ସାଥୀରେ ନେଇଥିବା ଗାଈ ଦୁଧକୁ ଭର୍ତ୍ତି କରି ଶାଳରେ ଥିବା ଚୂଲିରେ ବସାନ୍ତି । ଏହି ମାଟି ହାଣ୍ଡିରେ ପାଣି ଓ ଅରୁଆ ଚାଉଳ ପକେଇ ପଧାନ, ନାଗମ୍ ସାତ ଫୁଟଣା କରନ୍ତି । ଏହି ସାତ ଫୁଟଣା ସମୟରେ ଯେଭଳି ପେଜ ଉତୁରି ତଳେ ନ ପଡେ, ସେଥିପ୍ରତି ଧ୍ୟାନ ଦେବାକୁ ପଡିଥାଏ । ପେଜ ଉତୁରି ଭୂମି ଉପରେ ପଡିଗଲେ ଗାଁ ପ୍ରତି ଅମଙ୍ଗଳ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ସାତଥର ଫୁଟିବା ପରେ ମାଟି ହାଣ୍ଡିକୁ ତଳକୁ ଓହ୍ଲାଇ ରୋଷେଇ ହୋଇଥିବା 'ଭାତ'କୁ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଆତ୍ମା ଉଦ୍ଦେଶ୍ୟରେ ବାଢନ୍ତି । ଏଠାରେ ପିତୃପୁରୁଷଙ୍କୁ ଭାତ ପିଣ୍ଡଦାନ କରାଯିବା ପରେ ଜୁଆଙ୍ଗମାନେ ନିଜନିଜ ଘରେ ରୋଷେଇ କରନ୍ତି । ଏହି ଦିନ ଭାତ ରନ୍ଧା ଯାଉଥିବାରୁ



▸ ଛେଦ ପଡିଥିବା ମାଂସ ଭାଗବଣ୍ଟା କରାଯାଉଛି



'ଆମ୍ବ ନୂଆ' ପର୍ବ ପାଳନ ଅବସରରେ ମଣ୍ଡଘରର ସଦସ୍ୟତା ଗ୍ରହଣ କରୁଥିବା ନୂଆ କଙ୍ଗେର୍‌ମାନେ

ଏହାକୁ ଭାତଖିଆ କୁହାଯାଇଥାଏ । ଶାଳଘରେ ଭାତଖିଆ ପୂଜା ସମୟରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରାଯାଇଥାଏ । ଦେବଦେବୀ ଓ ପିତୃପୁରୁଷଙ୍କ ମଦ ଅର୍ପଣ କରିବା ପରେ ନାଗମ୍, ପଧାନଙ୍କ ସମେତ ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ଭୋଗ ଲାଗି ହୋଇଥିବା ମଦକୁ ପାନ କରିଥାନ୍ତି । ଏହାପରେ ସମସ୍ତେ ମଣ୍ଡଘରକୁ ଫେରି ମଣ୍ଡଘରେ ଗଛିତ ଥିବା ମଦ ପିଇ ଚାଙ୍ଗୁ ନୃତ୍ୟଗୀତରେ ମଜ୍ଜି ଯାଆନ୍ତି । ଏହି ଚାଙ୍ଗୁ ନାଚ, ଗୀତ ଦୀର୍ଘ ସମୟ ଧରି ଚାଲେ ।

**ଚତୁର୍ଥ ଦିନ (ଆମ୍ବଖିଆ/ଛେଦ/ଯୁବକମାନଙ୍କର ମଣ୍ଡଘରେ ସଦସ୍ୟତା ଗ୍ରହଣ/ ଜୁରିପକା/କାଞ୍ଚୁଣିପୂଜା/ଘୋଡ଼ାନାଚ):** ଆମ୍ବ ନୂଆ ପର୍ବ ପାଳନର ପୂର୍ବ ତିନି ଦିନମାନଙ୍କ ଭଳି ନାଗମ୍, ପଧାନ, କାର୍ଜି ସକାଳୁ ସ୍ନାନ ସାରି ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଜୁଆଙ୍ଗ ଯୁବକମାନେ ବାଜାବଜେଇ ଘୋଷଣି କରି ଏମାନଙ୍କୁ ମଣ୍ଡଘର ଓ ଗ୍ରାମଶିରି ନିକଟକୁ ଆଣନ୍ତି ।

ନାଗମ୍ ସାଥୀରେ ଏକ ଡାଲାରେ ଆମ୍ବ, ବେଲପତ୍ର, ଶିଆଳିପତ୍ର, ଫୁଲ, ଚନ୍ଦନ, ସିନ୍ଦୁର, ହଳଦିଗୁଣ୍ଡ, ଅରୁଆ ଚାଉଳ, ଗାଇ ଦୁଧ, ଘିଅ, ପାଚିଲା କଦଳି, ନଡ଼ିଆ, ଧୂପ, ଦୀପ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି ଆସିଥା'ନ୍ତି । ସାଥୀରେ କାର୍ଜି ପଶୁପକ୍ଷୀ ବଳି (ଛେଦ) ପାଇଁ ବ୍ୟବହୃତ ଟାଙ୍ଗିଆ ସାଥୀରେ ଧରି ଆସିଥା'ନ୍ତି । ଏହା ପୂର୍ବରୁ ସକାଳୁ ସକାଳୁ କିଛି ଅବିବାହିତ ଜୁଆଙ୍ଗ ଯୁବକ (କଙ୍ଗେର୍) ନିକଟସ୍ଥ ଜଙ୍ଗଲକୁ ଯାଇ ଗଛରୁ ଡାଳଲଗା ଆମ୍ବ ତୋଳି ଆଣନ୍ତି । ଆମ୍ବ ବ୍ୟତୀତ ଯୁବକମାନେ ଜଙ୍ଗଲରୁ ଫୁଲ, ବେଲପତ୍ର, ଶିଆଳି ପତ୍ର, ଶାଳପତ୍ର ଆଦି ସଂଗ୍ରହ କରି ଆଣିଥା'ନ୍ତି । ଏହି ସାମଗ୍ରୀଗୁଡିକୁ ମଣ୍ଡଘରେ ରଖିବା ପରେ ଯୁବକମାନେ ଅନ୍ୟତ୍ର ଚାଲି ଯାଆନ୍ତି ।

ନାଗମ୍, ପଧାନ, କାର୍ଜି ମଣ୍ଡଘରେ ପହଞ୍ଚିବାପରେ ସେଠାରୁ ଗ୍ରାମଶିରିକୁ ପୂଜାର୍ଚ୍ଚନା କରିବାକୁ ବାହାରି ପଡନ୍ତି । ଏହା ପୂର୍ବରୁ ଜୁଆଙ୍ଗ ଯୁବତୀମାନେ ମଣ୍ଡଘର ଓ ଗ୍ରାମଶିରିକୁ ପାଣି ଓ ଗୋବରରେ ଲେପି ସୁଦ୍ଧ କରିଥାନ୍ତି । ଗ୍ରାମଶିରିଙ୍କ ପୂଜାବେଦୀ ସ୍ଥଳରେ ପହଞ୍ଚିବାପରେ ନାଗମ୍, ପଧାନ ଓ କାର୍ଜି ପୂଜାପ୍ରକ୍ରିୟାର ଶୁଭାରଂଭ କରିଦିଅନ୍ତି ।



➢ ନୂଆ କଙ୍ଗେର୍‌ମାନଙ୍କ ଜୁରିପକା କାର୍ଯ୍ୟକ୍ରମ



▶ ନୂଆ କଙ୍ଗେର୍ (ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନଙ୍କ ଉଦ୍ଦେଶ୍ୟରେ ପୂଜା କାର୍ଯ୍ୟକ୍ରମ

ପ୍ରଥମେ ନାଗମ୍ ଡାଲାରେ ଥିବା ପୂଜା ସାମଗ୍ରୀ ମଧ୍ୟରୁ ଦୁଇଗୋଟି ଆମ୍ବକୁ ଟାଙ୍ଗିଆରେ ସମାନ ଚାରି ଫାଳ କରନ୍ତି । ଏହାପରେ ନାଗମ୍ ଯଥାରୀତି ପୂଜା କାର୍ଯ୍ୟ ଆରଂଭ କରନ୍ତି । ଗୋଟିଏ ପାତ୍ରରେ ଅରୁଆ ଚାଉଳ, ଘିଅ ଓ କଦଳୀ ଚକଟି ଗ୍ରାମଶିରି, ଧରମ୍ ଦେବତା, ବସୁମତି ମାତା ଓ ସେମାନଙ୍କ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି । ଏହି ଅବସରରେ ଗୋଟିଏ ବୋତଲ ମହୁଲି ମଦ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସମର୍ପଣ କରାଯାଏ । ନାଗମ୍, ପଧାନ ଓ କାର୍ଜି ବୋତଲରେ ଥିବା ମହୁଲି ମଦକୁ ନିଜର ପିତୃପୁରୁଷ, ଧରମ୍ ଦେବତା, ବସୁମତି ମାତା ଓ ଅନ୍ୟାନ୍ୟ ଦେବଦେବୀଙ୍କୁ ସ୍ମରଣ କରି ଅଳ୍ପଅଳ୍ପ ଭୂମି ଉପରେ ଢାଳନ୍ତି । ଏଠାରେ ଠାକୁରଙ୍କୁ ଆମ୍ବ ଅର୍ପଣ କରାଯିବା ପରେ ପ୍ରତ୍ୟେକ ଜୁଆଙ୍ଗ ନିଜନିଜ ଘରେ ଆମ୍ବ ଖାଇଥା'ନ୍ତି । ମାତ୍ର, ଏହାପୂର୍ବରୁ କୌଣସି ପରିସ୍ଥିତିରେ ବି ଜୁଆଙ୍ଗମାନେ ଆମ୍ବ ଖାଇ ନଥା'ନ୍ତି । ଯଦି ଠାକୁରଙ୍କୁ ଅର୍ପଣ କରିବା ପୂର୍ବରୁ କେହି ଜୁଆଙ୍ଗ ଆମ୍ବ ଖାଇଦିଏ ତେବେ ସବୁ ଅନର୍ଥ ହୋଇଯିବ ବୋଲି ବିଶ୍ୱାସ ରହିଛି । ଆମ୍ବ ନୂଆଖିଆ ପୂର୍ବରୁ ଜୁଆଙ୍ଗମାନେ ଭୁଲ୍‌ବଶତଃ ଆମ୍ବ ଖାଇଦେଲେ ଗ୍ରାମପ୍ରତି ବହୁପ୍ରକାର ବିପଦ ଆସିଥାଏ ।

ଗାଁରେ ବାଘ, ଭାଲୁ, ହାତୀ ଭଳି ଜଙ୍ଗଲୀପଶୁଙ୍କ ଉପଦ୍ରବ ବୃଦ୍ଧି ପାଏ ଏବଂ ଜୁଆଙ୍ଗମାନଙ୍କୁ ନାନା ପ୍ରକାର ରୋଗବଇରାଗ ହୋଇଥାଏ ।

ଦେବତାଙ୍କ ଉଦ୍ଦେଶ୍ୟରେ ଆମ୍ବ ଅର୍ପଣ କରାଯିବାପରେ ଛେଦ ପକା କାର୍ଯ୍ୟକ୍ରମ ହୋଇଥାଏ । ପୂର୍ବରୁ ଛେଦ ପକାଇବା ପାଇଁ ସଂରକ୍ଷିତ ଥିବା ସ୍ୱତନ୍ତ୍ର ବୋଦା (ବର୍ତ୍ତ ହୋଇ ନଥିବା ଅଣ୍ଡିରା ଛେଳି)କୁ ଗ୍ରାମଶିରିଙ୍କ ନିକଟକୁ ଅଣାଯାଏ । ପ୍ରଥମେ ବୋଦା ମୁଣ୍ଡରେ ସିନ୍ଦୁର ଲଗାଇ ତାକୁ କିଛି ଅରୁଆ ଚାଉଳ ଖାଇବାକୁ ଦିଆଯାଏ । ବଳି ପକାଇବା ପୂର୍ବରୁ ପ୍ରତ୍ୟେକ ପଶୁ, ପକ୍ଷୀଙ୍କୁ କିଛି ଖୁଆଇବାକୁ ଦିଆଯିବାର ଜୁଆଙ୍ଗ ସମାଜରେ ବିଧି ରହିଛି । ଯଦି ବୋଦାଟି ଅରୁଆ ଚାଉଳ ଖାଏ, ତେବେ ସବୁ କିଛି ଶୁଭ ବୋଲି ନାଗମ୍ ପ୍ରକାଶ କରେ । ଯଦି ବୋଦାଟି ଅରୁଆ ଚାଉଳ ନଖାଏ ତେବେ ଗ୍ରାମପ୍ରତି ଅଶୁଭ ବୋଲି ଜୁଆଙ୍ଗମାନେ ଶଂକା ପ୍ରକାଶ କରନ୍ତି । ଏଣୁ ବୋଦାଟି ଯେ ପର୍ଯ୍ୟନ୍ତ ଚାଉଳ ନ ଖାଏ ସେ ପର୍ଯ୍ୟନ୍ତ ତାକୁ ବଳି ପକାଯାଇ ନଥାଏ । ଏହିଭଳି ଭାବେ ଗ୍ରାମର ଜୁଆଙ୍ଗମାନେ ମାନସିକ ରଖିଥିବା ଅନ୍ୟ ପଶୁପକ୍ଷୀଙ୍କୁ ମଧ୍ୟ ଚାଉଳ ଖାଇବାକୁ ଦିଆଯାଇଥାଏ । ଉପରରତୁଆଁ



ଜୁଆଙ୍ଗ ଯୁବକମାନଙ୍କ ଜାମ୍ବୁଣୀ ପୂଜା । ଏହି ପୂଜା କେବଳ ଯୁବକମାନଙ୍କ ଦ୍ୱାରା ଚାଙ୍ଗୁ ଦେବତାଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହୋଇଥାଏ ।



▶ ନୂଆ କଙ୍ଗେର୍ (ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନେ ଜୁରି ପକାଉଛନ୍ତି (ମଦ୍ୟପାନ କରୁଛନ୍ତି)

ଗ୍ରାମରେ ପାଖାପାଖି ୫୦ରୁ ଊର୍ଦ୍ଧ୍ୱ କୁକୁଡା ବଳି ପକାଇବାକୁ ଗ୍ରାମବାସୀ ମାନସିକ କରିଥିଲେ । ସବୁ କୁକୁଡାଙ୍କୁ ଗୋଟିଗୋଟି କରି ନାଗମ୍. ପଧାନ ଚାଉଳ ଖୁଆଇବା ପରେ ସେମାନଙ୍କୁ ଛେଦ ପକାଇଥିଲେ । ଏହା ମଧ୍ୟରୁ ଦୁଇଟି କୁକୁଡା ଆଦୌ ଚାଉଳ ନ ଖାଇବାରୁ ସେମାନଙ୍କୁ ଛେଦ ପକା ନଯାଇ ଛାଡି ଦିଆଯାଇଥିଲା । (ସୂଚନାଯୋଗ୍ୟ, ଏହି ଦୁଇଟି କୁକୁଡାକୁ ଚାଉଳ ଖୁଆଇବାକୁ ନାଗମ୍. ପଧାନ, କାର୍ଜି ଓ ଅନ୍ୟାନ୍ୟ ଜୁଆଙ୍ଗମାନେ ନାକେଦମ୍ ହୋଇଯାଇଥିଲେ । ପାଖାପାଖି ଦୁଇ ଘଣ୍ଟାକାଳ ଏମାନଙ୍କୁ ଚାଉଳ ଖୁଆଇବାକୁ ଉଦ୍ୟମ କରି ଜୁଆଙ୍ଗମାନେ ବିଫଳ ହୋଇଥିଲେ । ଶେଷରେ ଏହି ଦୁଇଟି କୁକୁଡାକୁ ଛାଡି ଦିଆଯାଇଥିଲା । ବାକି ସମସ୍ତ କୁକୁଡା ଛେଦ ପଡିଥିଲେ) । କାର୍ଜି ବୋଦାଟିକୁ ନେଇ ନିକଟରେ ଥିବା ଛେଦଖୁଣ୍ଟରେ ବାନ୍ଧି ଦେବାପରେ ପଧାନ ଟାଙ୍ଗିଆରେ ତା' ବେକକୁ ଦୁଇ ଖଣ୍ଡ କରିଦେବାପରେ ଛେଦ କାର୍ଯ୍ୟକ୍ରମ ଶେଷ ହୋଇଥିଲା । ଛେଦ ପକାଯିବା ପରେ ସମସ୍ତ ଛେଳି ଓ କୁକୁଡାମାନଙ୍କର ରକ୍ତକୁ ନାଗମ୍ ଦେବତାମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥା'ନ୍ତି । ଆଉ ମଧ୍ୟ ଛେଦ ପକାଯାଇଥିବା ପଶୁପକ୍ଷୀମାନଙ୍କର ଗଣ୍ଡିକୁ ଜୁଆଙ୍ଗମାନେ ଖାଇବାକୁ ରଖିବାବେଳେ ସେମାନଙ୍କର

କଟାମୁଣ୍ଡକୁ ଦେବତାଙ୍କୁ ଅର୍ପଣ କରାଯାଇଥାଏ । ପରେ ଏହି କଟାମୁଣ୍ଡଗୁଡିକୁ ନାଗମ୍‌ଙ୍କୁ ପ୍ରଦାନ କରାଯାଇଥାଏ ।

ଛେଦ ପଡିଥିବା କୁକୁଡାମାନଙ୍କୁ ନିଆଁରେ ପୋଡି ଏଥିରୁ ମାଂସ ପ୍ରସ୍ତୁତ କରାଯାଏ । ଜଣେ ଦୁଇଜଣ ଜୁଆଙ୍ଗ ଏହି ମାଂସକୁ ଛୋଟଛୋଟ ଖଣ୍ଡକରି ପାଖାପାଖି ୨୦ରୁ ୩୦ ଭାଗ କରନ୍ତି । ଗୋଟିଏ ଗୋଟିଏ ଶିଆଳି ପତ୍ରରେ ଏହି ଭାଗସବୁ ପ୍ରସ୍ତୁତ କରାଯାଏ । ଶିଆଳି ପତ୍ରରେ ଥିବା ଏହି ମାଂସକୁ ପ୍ରତ୍ୟକ ପରିବାରର ମୁଖ୍ୟ ସଦସ୍ୟମାନେ ନିଜନିଜ ଘରକୁ ନିଅନ୍ତି । ତେବେ ଶିଆଳି ପତ୍ରରେ ଭାଗ ଲଗାଯାଇଥିବା ଏହି ମାଂସର ପରିମାଣ ଖୁବ୍ ନଗଣ୍ୟ । ପ୍ରତି ଜୁଆଙ୍ଗ ଏହି ଛେଦ ମାଂସକୁ ନିଜ ଘରକୁ ନେଇ ଘରେ କଟାଯାଇଥିବା ମାଂସରେ ମିଶେଇ ନିଜନିଜର ଘରେ ରୋଷେଇ କରନ୍ତି । ଏହି ଅବସରରେ ପ୍ରତ୍ୟେକ ଜୁଆଙ୍ଗ ପରିବାରରେ 'ଆମ୍ବ ନୂଆଖିଆ' କରାଯାଏ । ପ୍ରତି ପରିବାରରେ ମୁଖ୍ୟ ସଦସ୍ୟ ଆମ୍ବକୁ କାଟି, ରୋଷେଇ ହୋଇଥିବା ମାଂସ ତର୍କାରୀ, ଭାତ ସହିତ ମହୁଲି ମଦ ନିଜନିଜର ପିତୃପୁରୁଷଙ୍କୁ ଅର୍ପଣ କରିବା ପରେ ଅନ୍ୟମାନେ ଭୋଜନ ଆରଂଭ କରନ୍ତି । ଏହାପରେ ସମସ୍ତେ ବିଧିବଦ୍ଧ ଭାବେ ଆମ୍ବ ଖାଇବା ଆରଂଭ କରିଥାନ୍ତି ।

ଛେଦ ପକା କାର୍ଯ୍ୟକ୍ରମ ଶେଷହେବା ପରେ ଗ୍ରାମର ବାରଭାଇ, ନାଗମ୍, ପଧାନ, କାର୍ଡି ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ମଣ୍ଡଘରେ ଏକତ୍ରିତ ହୁଅନ୍ତି । ଏହି ଅବସରରେ ଜୁଆଙ୍ଗମାନେ



ପ୍ରତ୍ୟେକ ଜୁଆଙ୍ଗ ଘରେ ନୂଆ ଆମ୍ବ ଖିଆଯିବା ନେଇ ପ୍ରସ୍ତୁତି ଚାଲିଛି



▶ **ସମୂହ ମଦ୍ୟପାନ (ଜୁରି ପକା) ପାଇଁ ପ୍ରସ୍ତୁତି**

ନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରନ୍ତି । ଏହାକୁ **'ଜୁରିପକା'** ବୋଲି କହନ୍ତି । 'ଜୁରିପକା'କୁ ଅନ୍ୟଅର୍ଥରେ 'ସମୂହ ମଦ୍ୟପାନ' ବୋଲି ବୁଝାଯାଏ । ଜୁରିପକା କାର୍ଯ୍ୟକ୍ରମ ପୂର୍ବରୁ ଗାଁର ଡାଙ୍ଗୁଆ ଗାଁର ରାସ୍ତା ମଝିରେ ଠିଆ ହୋଇ ସବୁ ଜୁଆଙ୍ଗମାନଙ୍କୁ ବଡ଼ ପାଟିରେ ଡାକେ । ଜୁଆଙ୍ଗ ଭାଇମାନେ ଜୁରି ଢାଳିବା ପାଇଁ ତୁରନ୍ତ ମଣ୍ଡ ଘରକୁ ଆସ ବୋଲି ଡାଙ୍ଗୁଆ ଡାକପକାଏ । ଉପରରଡୁଆ ଗାଁର ଡାଙ୍ଗୁଆ ଡେମନ୍ ଜୁଆଙ୍ଗ ସେଦିନ ଏହିଭଳି ଭାବେ ଡାକଛାଡିଥିଲା

**"ଓ୍ୱାଡେ ବାଇଙ୍କି ଆଉସାଇ, ନିସାଇ**
**ମଣ୍ଡାଙ୍ଗ୍ ଡେନାପେ ଜୁରି ନେରଗେ ।"**

ଅର୍ଥାତ୍ ହେ, ଜୁଆଙ୍ଗ ଭାଇମାନେ, ତଳସାହି ଓ ଉପରସାହିର ଜୁଆଙ୍ଗମାନେ ତୁରନ୍ତ ମଣ୍ଡଘରକୁ ଆସ । ଜୁରି ଢଳାଯିବ ।

ନାଗମ୍, ପଧାନ, କାର୍ଜି ଏବଂ ସବୁ ବୟସ୍କ ଜୁଆଙ୍ଗମାନେ ମଣ୍ଡଘରେ ଏକତ୍ରିତ ହେବାପରେ ସମସ୍ତେ ମଣ୍ଡଘର ଚଟାଣରେ ବୃତ୍ତାକାରରେ ଘେରି ବସନ୍ତି । ନାଗମ୍ ମଣ୍ଡଘର ପାଣ୍ଡିରେ ଏକ ବଡ଼

ଡାର୍‌ରେ ସଂଗୃହୀତ ଥିବା ମହୁଲି ମଦରୁ କିଛି ମଦ ଗୋଟିଏ କାଚ ବୋତଲରେ ବାହାର କରି ସମସ୍ତ ଡୁଆଙ୍ଗମାନଙ୍କ ହାତ ପାପୁଲିରେ ଟୋପାଏ ଟୋପାଏ ଢାଳନ୍ତି । ସମସ୍ତେ ମନ୍ତ୍ର ଉଚ୍ଚାରଣ କରି ଏହି ମହୁଲି ମଦକୁ ନିଜନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସମର୍ପଣ କରନ୍ତି । ଏହାପରେ ଆରଂଭ ହୁଏ ସମୂହ ମଦ୍ୟପାନ କାର୍ଯ୍ୟକ୍ରମ । ପ୍ରତି ଡୁଆଙ୍ଗମାନଙ୍କୁ ଗୋଟିଏ ଗୋଟିଏ ଶିଆଳିପତ୍ର ବଣ୍ଟାଯାଇଥାଏ । ପ୍ରତ୍ୟେକ ଡୁଆଙ୍ଗ ଏହି ଶିଆଳିପତ୍ରକୁ ମୋଡି ଏକ ଚୌପତି ବା ଠୋଲା ପ୍ରସ୍ତୁତ କରନ୍ତି ।କାର୍ଡି କିମ୍ବା ଯେକୌଣସି କଙ୍କେର୍ ମହୁଲି ଡବା (ପ୍ଲାଷ୍ଟିକ୍ ଡାର୍)ରୁ ମଦ ଢାଳି ଜଣଜଣଙ୍କ ଠୋଲାରେ ଢାଳନ୍ତି । ସବୁ ଡୁଆଙ୍ଗମାନେ ମହୁଲି ପିଇ କିଛି ସମୟ ମଧ୍ୟରେ ମାତାଲ୍ ହୋଇ ଉଠନ୍ତି । ଏତିକିବେଳେ କିଛିକିଛି କାରଣକୁ ନେଇ ସେମାନଙ୍କ ମଧ୍ୟରେ ଯୁକ୍ତିତର୍କ. ପାଟିତୁଣ୍ଡ ମଧ୍ୟ ହୋଇଥାଏ । ଯଦି କୌଣସି ଡୁଆଙ୍ଗ କିଛି ଭୁଲ୍ କରିଥାଏ. ବାରଭାଇ ବସି ତା' ଉପରେ ଅର୍ଥ ଦଣ୍ଡ କରିଥା'ନ୍ତି । ଯୁବକମାନେ କିଛି ଭୁଲ୍ କରିଥିଲେ ସେମାନଙ୍କୁ ଦଣ୍ଡ ଦିଆଯାଏ । ସାଧାରଣତଃ ବୟସ୍କମାନେ ଯୁବକମାନଙ୍କ ଉପରେ (ପୂଜା କାର୍ଯ୍ୟରେ ସେମାନଙ୍କ ତ୍ରୁଟିବିଚ୍ୟୁତି ପାଇଁ କିମ୍ବା ବୟସ୍କମାନଙ୍କୁ ଅସମ୍ମାନ ପ୍ରଦର୍ଶନ ପାଇଁ) ଅର୍ଥଦଣ୍ଡ ଓ ଜୋରିମାନା ଲାଗୁ କରିଥା'ନ୍ତି । ବୟସ୍କ ଡୁଆଙ୍ଗମାନେ



▶ ଛେଦ କାର୍ଯ୍ୟକ୍ରମ



▶ **ଛେଦ କାର୍ଯ୍ୟକ୍ରମ**

ମହୁଲି ନିଶାରେ ଚୁର୍ ହୋଇଯାଇଥିବାବେଳେ ଯୁବକମାନଙ୍କର ଚାଙ୍ଗୁପୂଜା କାର୍ଯ୍ୟ ଆରମ୍ଭ ହୋଇଥାଏ ।

ଆମ୍ବ ନୂଆଖିଆ ସାଧାରଣତଃ ଯୁବକମାନଙ୍କର ପର୍ବ ବୋଲି ଗ୍ରହଣ କରାଯାଇଥାଏ । ଏଥିରେ ଗ୍ରାମର ଯୁବକମାନେ ସକ୍ରିୟ ଭାବେ ଅଂଶଗ୍ରହଣ କରିଥା'ନ୍ତି । ଏହିଦିନ ନୂଆକରି ଯୌବନପ୍ରାପ୍ତ କରିଥିବା ଯୁବକମାନଙ୍କୁ ମଣ୍ଡଘରର ସଦସ୍ୟତା ଗ୍ରହଣ କରିବାକୁ ହୋଇଥାଏ । ମଣ୍ଡଘରର ସଦସ୍ୟତା ଗ୍ରହଣ ନ କରିବା ପର୍ଯ୍ୟନ୍ତ କୌଣସି ଯୁବକ ମଣ୍ଡଘରକୁ ଆସିପାରନ୍ତି ନାହିଁ । ଉପରରଡୁଆଁ ଗ୍ରାମରେ ସେଦିନ ମୋଟ ୪ ଜଣ ଯୁବକଙ୍କୁ ଆମ୍ବନୂଆ ପର୍ବ ପାଳନ ଅବସରରେ ମଣ୍ଡଘରର ସଦସ୍ୟତା ଗ୍ରହଣ କରିବାକୁ ପଡିଥିଲା । ସେମାନେ ହେଲେ ଗୁରା ଜୁଆଙ୍ଗ (୧୫), ଗମା ଜୁଆଙ୍ଗ (୧୪), କାନ୍ଦରା ଜୁଆଙ୍ଗ (୧୮), ସୁରେନ୍ଦ୍ର ଜୁଆଙ୍ଗ (୧୬) । ନୂଆକରି ମଣ୍ଡଘରରର ସଦସ୍ୟତା ଗ୍ରହଣ କରୁଥିବା ଯୁବକମାନଙ୍କୁ ବିଗତବର୍ଷମାନଙ୍କରେ ସଦସ୍ୟ ହୋଇଥିବା ପୁରୁଣା ଯୁବକମାନେ ରୀତିମୁତାବକ ସଦସ୍ୟ କରାଇଥା'ନ୍ତି । ଏହି ସମସ୍ତ କାର୍ଯ୍ୟକ୍ରମକୁ ଜଣେ ପୁରୁଖା ନେତା ଶ୍ରେଣୀୟ ଯୁବକ ପରିଚାଳନା କରିଥା'ନ୍ତି । ଏହି ପୁରୁଖା ତଥା ନେତୃତ୍ୱ ନେଇପାରୁଥିବା ଯୁବକଙ୍କୁ **'ମାଟା ଜଙ୍ଗେର୍'** କହନ୍ତି ।

ସକାଳୁ ସକାଳୁ ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିବାକୁ ଥିବା ଯୁବକମାନଙ୍କୁ ମାଟାକଙ୍କେର ନିକଟସ୍ଥ ନଦୀକୂଳକୁ ନେଇ ଯାଆନ୍ତି । ସେଠାରେ ଏହି ଯୁବକମାନେ ସ୍ନାନତର୍ପଣ ସାରି ଗୋଟିଏ ଗୋଟିଏ କଳସରେ ପାଣି ଭର୍ତ୍ତି କରି ମଣ୍ଡଘରକୁ ଆଣନ୍ତି । ମାଟା କଙ୍କେର୍ ପ୍ରତ୍ୟକ ଯୁବକମାନଙ୍କ ଉପରେ ସାତ ଢାଳ ପାଣି ଢାଳି ସେମାନଙ୍କୁ ସ୍ନାନ କରାନ୍ତି । ଏମାନେ ଦିନତମାମ୍ ଉପବାସ ରହି ବ୍ରତ ଧାରଣ କରନ୍ତି । ଏହି ନୂତନ ଯୁବକମାନେ କଳସରେ ପାଣି ଆଣି ମଣ୍ଡଘରେ ରଖିବା ପରେ ଚାଙ୍ଗୁଦେବତାଙ୍କ ପୂଜା କାର୍ଯ୍ୟ ଆରଂଭ ହୋଇଥାଏ । ଜୁଆଙ୍ଗମାନଙ୍କର ଚାଙ୍ଗୁ ଦେବତା ହେଉଛନ୍ତି **'ଜାମ୍ବୁଣୀ'** । ଏଣୁ ଏହି ପୂଜାକୁ **'ଜାମ୍ବୁଣୀ ପୂଜା'** କୁହାଯାଏ । ଏହି ଅବସରରେ ଜୁଆଙ୍ଗ ଯୁବକମାନେ ନିଜନିଜର ଚାଙ୍ଗୁ ବାଦ୍ୟକୁ ପୂଜା କରିଥା'ନ୍ତି । ଯୁବକମାନେ ମଣ୍ଡଘର କାଛରୁ ସମସ୍ତ ଚାଙ୍ଗୁ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ଯଥା ଢୋଲ, ମାଦଲ ଆଦିକୁ ଗ୍ରାମଶିରିଙ୍କ ବେଦୀ ନିକଟକୁ ଆଣନ୍ତି । ସେଠାରେ ଚାଙ୍ଗୁ ଓ ଅନ୍ୟବାଦ୍ୟଯନ୍ତ୍ରକୁ ସଜାଡ଼ି ରଖାଯାଏ । ମାଟାକଙ୍କେର୍ ଦୁଇଗୋଟି



▶ ବଳି ପଡିବା ପୂର୍ବରୁ ଗ୍ରାମଶିରିଙ୍କ ନିକଟରେ ପଶୁପକ୍ଷୀମାନଙ୍କୁ ଅରୁଆ ଚାଉଳ ଖୁଆଯାଉଛି



'ଆମ୍ବ ନୂଆ' ପର୍ବରେ ବଳି ପଡୁଥିବା ପଶୁ

ଡେମ୍ଫଲଗା କଞ୍ଚା ଆମ୍ବ, ଧୂପ, ଦୀପ, ବେଲପତ୍ର, ଶିଆଳିପତ୍ର, ଅରୁଆ ଚାଉଳ, କଦଳୀ, ନଡ଼ିଆ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି ଏଠାରେ ଉପସ୍ଥିତ ହୁଅନ୍ତି । ଅନ୍ୟ ନୂତନ କଂଗେର୍‌ମାନେ ଚାଙ୍ଗୁ ଚାରିପାର୍ଶ୍ୱରେ ଘେରି ବସନ୍ତି । ଏଠାରେ ବିଶେଷକରି ଦୁଇଟି କୁକୁଡା ଛୁଆଙ୍କର ଛେଦ ପଡିଥାଏ । ଗୋଟିଏ କଳା କୁକୁଡା ଛୁଆ ଏବଂ ଗୋଟିଏ ଧଳା କୁକୁଡା ଛୁଆ ଏହି ପୂଜା କାର୍ଯ୍ୟରେ ଲାଗିଥାଏ । ଏହି ଦୁଇଟି କଳା ଓ ଧଳା କୁକୁଡା ଛୁଆମାନଙ୍କୁ ଚାଙ୍ଗୁ ଦେବତା 'କାଞ୍ଚୁଣୀ'ଙ୍କ ଉଦ୍ଦେଶ୍ୟରେ ଛେଦ ପକାଯାଇଥାଏ । ମାଟା କଂଗେର୍ ଏହି କୁକୁଡା ଛୁଆମାନଙ୍କ ମୁଣ୍ଡରେ ସିନ୍ଦୁର ଲଗାଇ ପ୍ରତ୍ୟକଙ୍କୁ ଅରୁଆ ଚାଉଳ ଖୁଆଏ । କୁକୁଡା ଛୁଆ ଅରୁଆ ଚାଉଳ ଖାଇବା ପରେ ମାଟାକଙ୍ଗେର ଏମାନଙ୍କ ବେକକୁ କାଟି କାଞ୍ଚୁଣୀ ଦେବତାଙ୍କୁ ରକ୍ତ ଅର୍ପଣ କରନ୍ତି । ଏହି କୁକୁଡା ଛୁଆଙ୍କ ରକ୍ତକୁ ମାଟାକଙ୍ଗେର୍ ସେଠାରେ ରଖାଯାଇଥିବା ସମସ୍ତ ଚାଙ୍ଗୁ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ଉପରେ ସିଞ୍ଚନ କରନ୍ତି । ମାଟାକଙ୍ଗେର୍ ଦୁଇଗୋଟି ଆମ୍ବକୁ ଚାରି ଫାଳ କରି ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି । ଏହି ପୂଜା କାର୍ଯ୍ୟକୁ ମାଟାକଙ୍ଗେର୍ ସମାପନ କରୁଥିବାବେଳେ ନାଗମ୍ ସେଥିରେ ସହାୟତା କରିଥା'ନ୍ତି ।

ନାଗମ୍‌ଙ୍କର ନିର୍ଦ୍ଦେଶ ଅନୁସାରେ ମାଟା କଙ୍ଗେର୍ ସମସ୍ତ ପୂଜା କାର୍ଯ୍ୟ ପରିଚାଳନା କରନ୍ତି ।

ଏହାପରେ ମାଟା କଙ୍ଗେର ସମେତ ମଣ୍ଡଘରର ସଦସ୍ୟତା ଗ୍ରହଣ କରୁଥିବା ନୂଆ କଙ୍ଗେର୍‌ମାନେ ପୁନର୍ବାର ମଣ୍ଡଘରକୁ ପ୍ରବେଶ କରନ୍ତି । ମଣ୍ଡଘରେ ନାନା ପ୍ରକାର ପୂଜାପାଠ ହୋଇଥାଏ । ମାଟା କଙ୍ଗେର୍ ମଣ୍ଡଘରର ଚଟାଣରେ ଗୋବର, ପାଣି ଓ ମାଟିରେ ଏକ ବର୍ଗାକାର କ୍ଷେତ୍ରବିଶିଷ୍ଟ ବେଦୀ



▸ ଛେଦ କାର୍ଯ୍ୟକ୍ରମ



➤ ମଣ୍ଡଘର ପରିସରରେ ଜୁଆଙ୍ଗମାନଙ୍କ ଜୁରିପକା (ସମୂହ ମଦ୍ୟ ପାନ) କାର୍ଯ୍ୟକ୍ରମ

ପ୍ରତିଷ୍ଠା କରେ । ଏଥିରେ ପୂଜାକାର୍ଯ୍ୟ ସଂପାଦନ ହୋଇଥାଏ । ମାଟା କଙ୍ଗେର ପ୍ରଥମେ ଏକ ପାତ୍ରରେ ଅରୁଆ ଚାଉଳ, ଘିଅ, କଦଳୀ, କ୍ଷୀର ମିଶେଇ ଚକଟି ଭାଗଭାଗ କରି ସାତ ଭାଗ ଭୂମି ଉପରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରେ ଏବଂ ଏହାପରେ ୨ଟି ଆମ୍ବକୁ ଚାରି ଫାଳ କରି ଦେବତାଙ୍କୁ ପ୍ରଦାନ କରେ । ମଣ୍ଡଘରର ସଦସ୍ୟତା ଗ୍ରହଣ କରୁଥିବା ନୂଆ କଙ୍ଗେରମାନେ ପ୍ରତ୍ୟକ ଗୋଟିଏ ଲେଖା କୁକୁଡା ନିଜ ସାଥୀରେ ଆଣିଥା'ନ୍ତି । ଏହି କୁକୁଡାମାନଙ୍କୁ ଯଥା ରୀତିରେ ଚାଉଳ ଖୁଆଇ ମଣ୍ଡଘର ମଧ୍ୟରେ ଦେବତାଙ୍କ ଉଦ୍ଦେଶ୍ୟରେ ଛେଦ ପକାଯାଏ । ଏହି କାର୍ଯ୍ୟକ୍ରମ ମଣ୍ଡଘର ମଧ୍ୟରେ ଅନୁଷ୍ଠିତ ହୋଇଥାଏ ।

ନୂଆ କଙ୍ଗେର୍‌ମାନେ ଦେବତାଙ୍କୁ ଅର୍ପଣ କରିଥିବା କୁକୁଡାରୁ ମାଂସ ପ୍ରସ୍ତୁତ ହୋଇ ଏହାକୁ ସତ୍ୱନ୍ତ ଭାବେ ଏକ ରୋଷେଇ ଶାଳରେ ରନ୍ଧନ କରାଯାଏ । ଏହି ରୋଷେଇ କାର୍ଯ୍ୟକୁ କେବଳ ନୂଆକରି ସଦସ୍ୟତା ଗ୍ରହଣ କରୁଥିବା ଯୁବକ (କଙ୍ଗେର୍‌)ମାନେ ସଂପାଦନ କରନ୍ତି । ନୂଆ କଙ୍ଗେର୍‌ମାନେ ନିଜନିଜ ଘରୁ ଆଦାୟ କରି ଆଣିଥିବା ଚାଉଳରୁ ଭାତ ପ୍ରସ୍ତୁତ କରାଯାଏ । କୁକୁଡାକୁ କାଟି ମାଂସ

ପ୍ରସ୍ତୁତ କରିବା ପରେ କଙ୍ଗେର୍‌ମାନେ ନିଜେ ରୋଷେଇ କରନ୍ତି । ଏଥିରେ ମାଟା କଙ୍ଗେର୍ ସହାୟତା କରିଥାଏ । ଭାତ. ମାଂସ ପ୍ରସ୍ତୁତ ହୋଇଯିବା ପରେ ଏହାକୁ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଏ । ଏହି ସମୟରେ ନୂଆ କଙ୍ଗେର୍‌ମାନଙ୍କୁ ମାଟା କଙ୍ଗେର୍ ଓ ଅନ୍ୟ ପୁରୁଣା କଂଗେରମାନେ ଖୁଆଇ ଦେଇଥା'ନ୍ତି । ସକାଳୁ ଉପବାସରେ ରହିଥିବା ଏହି ନୂଆ କଙ୍ଗେର୍‌ମାନେ ପ୍ରାୟ ସଞ୍ଜ ବେଳକୁ ଖାଇଥା'ନ୍ତି ।

ନୂଆ କଙ୍ଗେର୍‌ମାନଙ୍କର ଏହି ଖାଇବା ପ୍ରକ୍ରିୟା ଅତ୍ୟନ୍ତ ରୋମାଞ୍ଚକର ହୋଇଥାଏ । ପ୍ରଥମେ ମାଟା କଙ୍ଗେର୍ ଗୋଟିଏ ଧାଡିରେ କିଛି ଶିଆଳି ପତ୍ର ରଖିଦିଏ । ପାଖରେ ଭାତ ଓ ମାଂସ ତର୍କାରୀ ହାଣ୍ଡି ଥୁଆଯାଇଥାଏ । ମାଟା କଙ୍ଗେର୍ ପ୍ରତ୍ୟକ ନୂଆ କଙ୍ଗେର୍‌ମାନଙ୍କର ଗୋଡକୁ ଉପରକୁ ରଖି ଏବଂ ମୁଣ୍ଡକୁ ତଳକୁ କରି ଠିକ୍ ଶିଆଳି ପତ୍ର ଉପରକୁ ଟେକି ଧରନ୍ତି । ତଳକୁ ମୁଣ୍ଡ କରି ମାଟା କଙ୍ଗେର୍ କାନ୍ଧରେ ଓହଳି ରହିଥିବା ନୂଆ କଙ୍ଗେରମାନେ ନିଜ ହାତରେ ସେଠାରେ ଥିବା ହାଣ୍ଡିରୁ ଭାତ ଓ ମାଂସ ଆଣି ଶିଆଳିପତ୍ରରେ ପରସି ଦିଅନ୍ତି ଏବଂ ଏହାକୁ ନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ



➤ ଛେଦ ପଡିଥିବା ପଶୁ ଓ ପକ୍ଷୀଙ୍କ ମାଂସ ରନ୍ଧାଯାଇ ମଦ୍ୟପାନ ନିମନ୍ତେ ପ୍ରତ୍ୟେକ ଜୁଆଙ୍ଗମାନଙ୍କ ମଧ୍ୟରେ ଭାଗଭାଗ କରାଯାଉଛି



► ପ୍ରସାଧନ ସାମଗ୍ରୀ ବ୍ୟବହାର କରି ନାଚ କରିବାକୁ ଅପେକ୍ଷାରତ ଜୁଆଙ୍ଗ ଯୁବତୀ

ଅର୍ପଣ କରିବା ପରେ ସେମାନଙ୍କୁ ପୁନର୍ବାର ଭୂମି ଉପରେ ଓହ୍ଲେଇ ଦିଆଯାଏ । ଏତିକିବେଳେ ଆଉ ଜଣେ ଯୁବକ ନୂଆ କଙ୍ଗେର୍ ପାଟିରେ କିଛି ଭାତ ପୂରେଇ ଦୁଇଖଣ୍ଡ କାଠିକୁ ଖୋଞ୍ଚି ଦେଇ ତାକୁ ଦୁଇ ବିଧା ମାରି ଘର ବାହାରକୁ ବିଦା କରିଦିଏ । ଏଭଳି ଭାବେ ସବୁ ନୂଆ କଙ୍ଗେର୍‌ମାନେ ପାଟିରେ ଭାତ ଓ କାଠି ପୂରେଇ ଘରୁ ବାହାରି ଯାଇ ପ୍ରବଳ ଯୋର୍‌ରେ ଦୌଡନ୍ତି । ସେମାନଙ୍କୁ ପୁରୁଣା କଂଗେରମାନେ ପଛରୁ ଗୋଡାନ୍ତି ଏବଂ ପରସ୍ପର ଉପରେ ଧୂଳି. ବାଲି ପକେଇ କିଛି ସମୟ ଖେଳକୁଦରେ ମାତି ଉଠନ୍ତି । ଏହାପରେ ମଣ୍ଡଘରର ନୂତନ ସଦସ୍ୟତା ଗ୍ରହଣ କରିଥିବା ନୂଆ କଙ୍ଗେରମାନେ ରୋଷେଇ କରିଥିବା ଭାତ. ମାଂସ ତର୍କାରୀକୁ ଉଭୟ ନୂଆ କଂଗେରମାନଙ୍କ ସମେତ ପୁରୁଣା କଂଗେର୍‌ମାନେ ମିଳିମିଶି ଖାଆନ୍ତି ।

ଏତିକିବେଳକୁ ସଞ୍ଜ ବୁଡିଯାଇଥାଏ । କଂଗେର୍, ସେଲାନ୍‌ମାନେ ଚାଙ୍ଗୁ ନାଚ କରିବାକୁ ମଣ୍ଡଘର ସାମ୍ନାରେ ହାଜର ହୋଇଯାଆନ୍ତି । ପ୍ରଥମେ ଦଳଦଳ ହୋଇ କଂଗେର୍‌ମାନେ ନିଜନିଜର ଚାଙ୍ଗୁ ଧରି ମଣ୍ଡଘର ସଦର ଦାଣ୍ଡରେ ଏକତ୍ରିତ ହୋଇ ଚାଙ୍ଗୁ ବଜେଇ ଗୀତ ଗାଇ ନାଚ କରନ୍ତି । କଂଗେର୍‌ମାନଙ୍କ

ଚାଙ୍ଗୁ ମାଡ ଶୁଣି ସେଲାନ୍‌ମାନେ ଗୋଟିଏ ପରେ ଗୋଟିଏ ସଜବାଜ ହୋଇ ମଣ୍ଡଘର ସାମ୍ନାରେ ହାଜର ହୁଅନ୍ତି । ଏହାପରେ ଚାଲେ ନାଚଗୀତର ଆସର । ଚାଙ୍ଗୁନାଚ ଓ ଗୀତ ସଞ୍ଜ ପହରୁ ଆରଂଭ ହୋଇ ବିଳମ୍ବିତ ରାତିଯାଏ ଚାଲେ ।

ଶେଷରେ ବିଳମ୍ବିତ ରାତିରେ ଜୁଆଙ୍ଗମାନେ **ଘୋଡାନାଚର** ଆୟୋଜନ କରନ୍ତି । ଏହି ଘୋଡ଼ାନାଚ ଓ ଘୋଡ଼ାପୂଜା ବିଶେଷକରି ରାତିରେ ଅନୁଷ୍ଠିତ ହୋଇଥାଏ । କୌଣସି ପ୍ରକାରେ ଏହି କାର୍ଯ୍ୟ ଦିନରେ କରାଯାଏନାହିଁ । ରାତି ପ୍ରାୟ ଏଗାରଟା ବେଳକୁ ଏହି ଘୋଡ଼ାନାଚ ହୋଇଥାଏ । ଦିନବେଳୁ ନୂଆ କଂଗେରମାନେ ନିକଟସ୍ଥ ଜଙ୍ଗଲକୁ ଯାଇ କାଠ, ବାଉଁଶ ଓ ଶିଆଳି ଲଟା ଆଣିଥା'ନ୍ତି । ସେଥିରେ ଏକ ବିରାଟ ଆକାରର ଘୋଡା ନିର୍ମାଣ କରାଯାଏ । ଏହାଉପରେ ରଙ୍ଗବେରଙ୍ଗର କପଡା, ଜରି ଗୁଡେଇ ଏକ ସଂପୂର୍ଣ୍ଣ ଘୋଡା ପ୍ରସ୍ତୁତ କରାଯାଏ । ଗାଁଠାରୁ କିଛି ଦୂରରେ ଏକ ନିର୍ଦ୍ଦିଷ୍ଟ ଘୋଡାଶାଳରେ ଏହି ଘୋଡା ନିର୍ମାଣ କାର୍ଯ୍ୟ ହୋଇଥାଏ । ଏହି ଘୋଡାଟିକୁ ଗ୍ରାମର ସମସ୍ତ କଂଗେର୍ (ଯୁବକ)ମାନେ ମିଳିମିଶି ନିର୍ମାଣ କରନ୍ତି । ଘୋଡା ନିର୍ମାଣ କାମ ସଂପୂର୍ଣ୍ଣ ହୋଇଯିବା



ମଣ୍ଡଘର ପରିସରରେ ଜୁଆଙ୍ଗମାନଙ୍କ ଜୁରିପଜା (ସମୂହ ମଦ୍ୟ ପାନ) କାର୍ଯ୍ୟକ୍ରମ



ନୂଆ ଜଙ୍ଗେର୍ (ନୂତନ ଜରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନେ ମାଟା ଜଙ୍ଗେର (ଯୁବକମାନଙ୍କର ନେତା)ଙ୍କ ଜାଙ୍ଗରେ ଓହଳି ମୁଣ୍ଡକୁ ତଳକୁ କରି ଭାତ ପରସୁଛନ୍ତି



▶ ଆମ୍ବନୂଆ ପର୍ବ ପାଳନ ଅବସରରେ ନୂଆ ଜଙ୍ଗେର୍ (ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନଙ୍କର ଭାତ ଖିଆ



ଆମ୍ବନୂଆ ପର୍ବ ପାଳନ ଅବସରରେ ନୂଆ କଙ୍କେର୍ (ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନଙ୍କର ଭାତ ଖିଆ



ନୂଆ କଙ୍ଗେର୍ (ନୂତନ କରି ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକ)ମାନେ ମାଟା କଙ୍ଗେର (ଯୁବକମାନଙ୍କର ନେତା)ଙ୍କ କାନ୍ଧରେ ଓହଳି ମୁଣ୍ଡକୁ ତଳକୁ କରି ଭାତ ପରସୁଛନ୍ତି



▶ ଛେଦ ପଡିଥିବା ପଶୁପକ୍ଷୀଙ୍କ କଟାମୁଣ୍ଡ



▶ ଚାଙ୍ଗୁ ଦେବତା 'କାଷ୍ଟୁଣୀ ପୂଜା'ରେ ଛେଦ ପଡିଥିବା କୁକୁଡା ମାଂସକୁ ନୂଆ କଙ୍ଗେରମାନେ ରୋଷେଇ କରୁଛନ୍ତି । ଏହି ରୋଷେଇ କାର୍ଯ୍ୟକ୍ରମ ଶେଷ ହେଲାପରେ ନୂଆ କଙ୍ଗେରମାନେ ଉପବାସ ଭଙ୍ଗ କରି ଭାତ ଖାଇବେ ।



ଆମ୍ବନୂଆ ପର୍ବ ପାଳନ ଅବସରରେ ଜୁଆଙ୍ଗ ଯୁବକ, ଯୁବତୀଙ୍କ ଚାଙ୍ଗୁ ନୃତ୍ୟ ପରିବେଷଣ

➤ ଆମ୍ବନୂଆ ପର୍ବ ପାଳନ ପାଇଁ ଜୁଆଙ୍ଗ ଯୁବକମାନେ କାଠ, ବାଉଁଶରେ ଘୋଡା ନିର୍ମାଣ କରୁଛନ୍ତି





ଆମ୍ବନୂଆ ପର୍ବ ପାଳନ ଅବସରରେ ବିଳମ୍ବିତ ରାତ୍ରିରେ ପ୍ରଦର୍ଶିତ କରାଯାଉଥିବା ଘୋଡାନାଚ

ପରେ ବିଳମ୍ବିତ ରାତିରେ ନାଗମ୍, ପଧାନ, କାର୍ଜି ଓ ଅନ୍ୟ ଜୁଆଙ୍ଗ ବାରଭାଇମାନେ ଯାଇ ଉକ୍ତ ଘୋଡାକୁ ପୂଜାର୍ଚ୍ଚନାପୂର୍ବକ ସେଥିରେ ପ୍ରାଣ ପ୍ରତିଷ୍ଠା କରନ୍ତି । ଘୋଡା ମଧ୍ୟରେ ଜୀବନ୍ୟାସ ପ୍ରଦାନ ପରେ ଜଣେ ଯୁବକ ଏହି ଘୋଡାକୁ ନଚେଇ ନଚେଇ ବାଜାବାଣ, ରୋଷଣି ମାଧ୍ୟମରେ ମଣ୍ଡଘର ଓ ଗ୍ରାମଶିରି ନିକଟକୁ ଆଣିଥା'ନ୍ତି । ଗ୍ରାମକୁ ପ୍ରବେଶ କରିବା ପୂର୍ବରୁ ସ୍ତ୍ରୀଲୋକମାନେ ଏହି ଘୋଡାକୁ ବାଟରେ ବରଣୀ କରିଥାନ୍ତି । ଏହାପରେ ଉକ୍ତ ଘୋଡାଟି ସାତ ଥର ଗ୍ରାମଶିରିଙ୍କ ବେଦୀ ଚତୁର୍ପାର୍ଶ୍ୱରେ ପରିକ୍ରମା କରିଥାଏ । ଜୁଆଙ୍ଗମାନେ ବାଣ, ବାଜା ବଜେଇ ଧୂମ୍‌ଧାମ୍‌ରେ ଏହି ଘୋଡାକୁ ଶୋଭାଯାତ୍ରାରେ ଗ୍ରାମ ପରିକ୍ରମା କରାନ୍ତି । ଏହି ଘୋଡାଟି ଗାଁର ପଧାନ, ନାଗମ୍ ଓ କାର୍ଜିଙ୍କ ଘରକୁ ଯାଏ । ସେଠାରେ ଘୋଡାଟିକୁ ସ୍ୱାଗତ ସମ୍ବର୍ଦ୍ଧନା ଓ ପୂଜାର୍ଚ୍ଚନା କରାଯାଏ । ବହୁ ରାତି ପର୍ଯ୍ୟନ୍ତ ଜୁଆଙ୍ଗମାନେ ଏହି ଘୋଡାଟିକୁ ଗ୍ରାମ ପରିକ୍ରମା କରିବା ସହିତ ମଣ୍ଡଘର ସାମ୍ନାରେ ନଚାଇଥାନ୍ତି । ଏମିତି ଏମିତି ରାତି ପାହିଯାଏ ଜୁଆଙ୍ଗ ଯୁବକମାନେ ଥକ୍କି ପଡନ୍ତି ନାହିଁ । ପରଦିନ ସକାଳକୁ ଏହି ଘୋଡାଟିକୁ ବିସର୍ଜନ କରାଯାଏ ।



▶ ଆମ୍ବ ନୂଆଖିଆ ପର୍ବ ପାଳନ ଅବସରରେ ଗ୍ରାମଶିରିଙ୍କ ବେଦୀ ଉପରେ ଲେଖକ । ଲେଖକଙ୍କୁ ଗାଁ ପୂଜକ 'ନାଗମ୍' ଆଶିର୍ବାଦ ପ୍ରଦାନ କରୁଛନ୍ତି ।



କରଂଜ ଫଳରୁ ମଞ୍ଜି ବାହାର କରୁଛନ୍ତି ଜଣେ ଜୁଆଙ୍ଗ

**ଆମ୍ବନୂଆ ଗୀତ:** ଆମ୍ବ ନୂଆଖିଆ ପର୍ବ ପାଳନବେଳେ କଂଗେର୍‌ମାନେ ଚାଙ୍ଗୁ ବଜେଇ ନାଚ କରିବା ସହିତ ଅନେକ ମାଦକଭରା ଗୀତ ବୋଲିଥାନ୍ତି । ଉପରଗଡୁଆଁ ଗ୍ରାମରୁ ସଂଗ୍ରହ କରାଯାଇଥିବା ଗୋଟିଏ ଦୁଇଟି ଗୀତ ନିମ୍ନରେ ପ୍ରଦାନ କରାଯାଉଛି । ଆପଣମାନେ ଲକ୍ଷ୍ୟ କରନ୍ତୁ ।

**ଗୀତ ନଂ୧**

ଉଆଳେ ବାଇକି ନିବିଚାରନା
ଅଲେରେ ଅବରେ ନିକୁକିମା
ମଜାଙ୍ଗ୍‌ତେ ନେଡ଼କାଞ୍ଜ ବିଚାର ନିକିମା
ବର୍ଷ ମୁଇଁତେ ତରମେଇଁ ବର୍ଷ ମୁଇଁତେ ତରମେଇଁ
ଅଲେ ଅବ ନିକିବିତେ
ନାଗମ୍‌କି ଆଗିଲା ତେଣ୍ଡେକି
ଆକାତା ସୁନ୍ଦର ନାଗମ୍‌କି ଯୁଗେର୍‌କି
ବାଇଦ ଗଗଖିଜ ନାଗମ୍. ପଧାନକି ମଜାଙ୍ଗ ବ ତେଣ୍ଡେକି
ତେଣିକି ଉଜା କିପ୍‌କେକି
ମଜାଙ୍ଗ୍ ବ ତେଣ୍ଡେକି. ଶାଳ ବ ଅଣ୍ଡେକି
କୈଲଙ୍ଗ ଇଞ୍ୟା ତୁଇତେକି ଉଜା କିପ୍‌କେକି
ଉଜା କିବକିଜ ଆକାତା ଅବଳକ୍ କିକି
ବୋଦା. ସେଙ୍କଏ ଅରେନ୍ କିକି ଶାଳବ
ନାଗମ୍ ଅକବ୍ କେ ଆକାତା ଅକବ୍ କେ
ଗଗକିଜ କଙ୍ଗେର୍‌କି ତର୍କିକି
ନାଗମ୍. ପଧାନତେ ମୁଟାମି ଆକାତା ଡିଙ୍କେ
ପଧାନ୍‌ତେ ତେଣିକି ତେଇକେ
ଉଚୁଲିଆ ଇଜିଂ ତାକ୍‌ତେ ଟାଣେଇକେ କାର୍ଜି
ତା ଅଚତା ପଧାନ ତେଇକେ
ଉଆଳେ ବାଇକି ନିବିଚାରନା
ଅଲେରେ ଅବରେ ନିକୁକିମା
ମଜାଙ୍ଗ୍‌ତେ ନେଡ଼କାଞ୍ଜ ବିଚାର ନିକିମା

## ଶବ୍ଦାର୍ଥ

| ଶବ୍ଦ | ଅର୍ଥ |
|---|---|
| ଆକାତା | ଅରୁଆ ଚାଉଳ |
| ଡେଇକେ | ଛେଦ (ବଳି) |
| ତରମେଇଁ | ଥରେ |
| ଅଲେ ଅବ | ଆମ୍ବନୂଆଖିଆ ପର୍ବ |
| ଉଜା | ପୂଜାର୍ଚ୍ଚନା |
| କୈଲଙ୍ଗ ଇଞ୍ଜ୍ୟା | ଠାକୁରଘର |

## ଭାବାର୍ଥ:

ଆସ ଭାଇମାନେ ମଣ୍ଡଘରକୁ ଆସ
ଆମ୍ବନୂଆ ପର୍ବ ପାଳିବା
ମଜାଙ୍ଗରେ ବସି ବିଚାରବିର୍ମଷ କରିବା
ଏଇ ଆମ୍ବନୂଆଖିଆ ପର୍ବ ବର୍ଷରେ ଥରେ ଆସିଛି
ନାଗମ୍, ପଧାନ ଭୋଗରାଗ, ସିନ୍ଦୁର ସଜାଡି ଗ୍ରାମଶିରିକୁ ଆସିଲେଣି
ବାଜାବଜେଇ ନାଗମ୍, ପଧାନଙ୍କୁ ପାଛୋଟି ଆଣରେ
ଗ୍ରାମଶିରି ନିକଟରେ ବୋଦା, କୁକୁଡା ଛେଦ ପଡିବ
ନାଗମ୍ ସେମାନଙ୍କୁ ଅରୁଆ ଚାଉଳ ଖୁଆଇଲେଣି
ପଧାନ ଛେଦ ପକେଇବା ପାଇଁ ପ୍ରସ୍ତୁତ ହୋଇଗଲେଣି
କାର୍ଜି ବୋଦାର ପଛଗୋଡ ଦୁଇଟାକୁ ଜୋର୍‌ରେ ଭିଡ଼ି ଧରିଛି
ପଧାନ ତା' ମୁଣ୍ଡରୁ ଗଣ୍ଡିକୁ ଅଲଗା କରିଦେଲାରେ ।
ଆସରେ ଜୁଆଙ୍ଗ ଭାଇମାନେ
ଆମ୍ବନୂଆଖିଆ ପାଳିବା, ଆସରେ ।

## ଗୀତ ବୋଲିଥିଲେ:

କାର୍ତ୍ତିକ ଜୁଆଙ୍ଗ, ବେନୁ ଜୁଆଙ୍ଗ, ବିନୋଦ ଜୁଆଙ୍ଗ
ଗ୍ରାମ: ଉପରରଡୁଆଁ, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।

# ଜୁଆଙ୍ଗଙ୍କ ଶିକାର ଯାତ୍ରା (ଅଖାଣି ପର୍ବ)

*(hunting festival of the Juang)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ବାର୍ହାଗଡ଼, ଗ୍ରାମ ପଞ୍ଚାୟତ: ବାର୍ହାଗଡ, ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୫ ଓ ୬ ମେ ୨୦୧୩**

**ତଥ୍ୟ ପ୍ରଦାନକାରୀ: ବାର୍ହାଗଡ଼ ଗ୍ରାମର ଶଇଳ ଜୁଆଙ୍ଗ, ବାରିକ ଜୁଆଙ୍ଗ, ଟୁନି ଜୁଆଙ୍ଗ, ସାଗର ଜୁଆଙ୍ଗ, ରାଜ ଜୁଆଙ୍ଗ, କୈଳାସ ଜୁଆଙ୍ଗ, ହୃଷି ଜୁଆଙ୍ଗ ।**

ଜୁଆଙ୍ଗ ଯୁବକଟିଏ ହୋଇଥିବ । ମାତ୍ର, ତା' କାନ୍ଧରେ ଟାଙ୍ଗିଆ, ଧନୁ, ତୀର, ବର୍ଚ୍ଛା ନଥିବ । ସେ କି ଆଦିବାସୀ ଯୁବକରେ ଗଣାଯିବ? ଆଦିବାସୀ ଯୁବକଟିର ଚିତ୍ର ଆଙ୍କିବାକୁ କୁହାଗଲେ, ପ୍ରଥମେ ତା' କାନ୍ଧରେ ଧନୁତୀର, ଟାଙ୍ଗିଆ, ବର୍ଚ୍ଛା ଅଛି କି ନାହିଁ ସେକଥା ଚିନ୍ତା କରିବାକୁ ପଡିଥାଏ । ବର୍ଚ୍ଛା, ଟାଙ୍ଗିଆ ଓ ଧନୁତୀର ଭଳି ପାରଂପରିକ ଅସ୍ତ୍ରଶସ୍ତ୍ର ଜୁଆଙ୍ଗ ଜୀବନଜୀବିକାର ସବୁଠୁ ଅନ୍ତରଙ୍ଗ ସାଥୀ ହୋଇଥାଏ । ଶିକାର କରିବା କିମ୍ବା ଜଙ୍ଗଲରୁ ବନ୍ୟଜାତ ଦ୍ରବ୍ୟ, ଜାଳେଣି ସଂଗ୍ରହ କରିବା ପାଇଁ ଏସବୁ ପାରଂପରିକ ଅସ୍ତ୍ରଶସ୍ତ୍ରର ଆବଶ୍ୟକତା ପଡିଥାଏ । ଜୁଆଙ୍ଗମାନେ ଶିକାର ପ୍ରିୟ । ବଣଜଙ୍ଗଲରୁ ଶିକାର କରି ଜୁଆଙ୍ଗମାନେ ନିଜର ଜୀବିକା ନିର୍ବାହ କରିଥା'ନ୍ତି । ପୂର୍ବକାଳରେ ଘଞ୍ଚ ଜଂଗଲ ଥିବା କାରଣରୁ ଜୁଆଙ୍ଗମାନେ ଅବାଧରେ ଶିକାର କରିବାକୁ ସକ୍ଷମ ହେଉଥିଲେ । ମାତ୍ର, ଦ୍ରୁତ ଜଙ୍ଗଲ କ୍ଷୟ କାରଣରୁ ବନ୍ୟଜନ୍ତୁଙ୍କ ସଂଖ୍ୟା ଦିନକୁଦିନ ହ୍ରାସ ପାଇବାରେ ଲାଗିଲାଣି । ଅତୀତରେ କେନ୍ଦୁଝର ଜିଲ୍ଲାର ଅନ୍ୟତମ ଘଞ୍ଚ ଜଙ୍ଗଲ ଭାବେ ପରିଚିତ ଗୋନାସିକା ପାର୍ବତ୍ୟାଞ୍ଚଳରେ ନାନା ପ୍ରକାର ଜଙ୍ଗଲୀ ଜୀବଜନ୍ତୁ ଦେଖିବାକୁ ମିଳୁଥିଲେ । ହାତୀ, ବାଘ, ଭାଲୁ, ସିଂହ, ସମ୍ବର, କୁଟ୍ରା, ହରିଣ, ନୀଳଗାଈ ଭଳି ନାନା ପ୍ରକାର ଜଙ୍ଗଲୀ ଜୀବଜନ୍ତୁ ଏହି ଜଙ୍ଗଲରେ ଥିଲେ । ମାତ୍ର ଆଜିର ଦିନରେ ଏସବୁ ଜୀବଜନ୍ତୁ ଦେଖିବାକୁ ମିଳୁନାହାନ୍ତି । କାଁ ଭାଁ ହାତୀ, କଲରାପତ୍ରିଆ ବାଘ, ଭାଲୁ, ହରିଣ, କୁଟ୍ରା ଭଳି କିଛି ପଶୁଙ୍କୁ ଛାଡିଦେଲେ ବାକି ଅନ୍ୟାନ୍ୟ ଜୀବଜନ୍ତୁ ପ୍ରାୟ ବିଲୁପ୍ତ ହୋଇଗଲେଣି ।

ଆମ୍ବ ନୂଆଖିଆ ପାଳନ ପରେପରେ ଏପ୍ରିଲ୍-ମେ ମାସ ବେଳକୁ ଜୁଆଙ୍ଗମାନଙ୍କର ଏହି ଶିକାର ଯାତ୍ରା ଅନୁଷ୍ଠିତ ହୋଇଥାଏ । ଅତୀତରେ ଏହି ପର୍ବ ଧୂମ୍‌ଧାମ୍‌ରେ ପାଳିତ ହେଉଥିଲା, ମାତ୍ର ଏବେ ଏହା ପ୍ରାସଙ୍ଗିକତା ହରାଇବସିଛି । ଗୋନାସିକା, ଗୁପ୍ତଗଙ୍ଗା ଅଞ୍ଚଳରେ ଏହି ପର୍ବ ପାଳନ ହେଉ

ନଥିବାବେଳେ ବାର୍ହାଗଡ, ନୋଡାମ୍, କପୋତଡିହା ଭଳି ଘଞ୍ଚ ଜଙ୍ଗଲ ଓ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା ଜୁଆଙ୍ଗମାନେ ଆଂଶିକ ଭାବେ ଏହି ପର୍ବ ପାଳନ କରୁଛନ୍ତି । ଅପରପକ୍ଷେ, ପଶୁପକ୍ଷୀ ଶିକାର ଓ ଗଛ କାଟିବା ନେଇ ସରକାର କଡାକଡି ଆଇନ୍ ପ୍ରଚଳନ କରିବା ଫଳରେ ଜୁଆଙ୍ଗମାନଙ୍କ ଏହି ପାରଂପରିକ ଧାର୍ମିକ କାର୍ଯ୍ୟକ୍ରମଟି ବାଧାପ୍ରାପ୍ତ ହୋଇଛି ।

ଶିକାର ଯାତ୍ରା କେବେ ପାଳନ କରାଯିବ ସେଥିନେଇ ପଧାନ, ନାଗମ୍ ଓ ଗ୍ରାମବାସୀ ମଣ୍ଡଘରେ ବସି ଦିନ ଧାର୍ଯ୍ୟ କରନ୍ତି । ଶିକାର ଯାତ୍ରାର ପୂର୍ବଦିନ ସନ୍ଧ୍ୟାରେ ଗାଁର ପୂଜକ 'ନାଗମ୍' ପ୍ରତି ଘରୁ ଧନୁ, ତୀର, ବର୍ଚ୍ଛା ଓ ଅନ୍ୟାନ୍ୟ ଶିକାର ସାମଗ୍ରୀ ସଂଗ୍ରହ କରି ମଣ୍ଡଘରେ ଏକତ୍ର କରିରଖନ୍ତି । ଏହାପରେ ଏ ସମସ୍ତ ଅସ୍ତ୍ରଶସ୍ତ୍ରକୁ ନାଗମ୍ ପୂଜା କରି ଶିକାର ପାଇଁ ଅନୁକୂଳ କରନ୍ତି । ଏହି ଅବସରରେ ମଣ୍ଡଘର ସାମ୍ନାରେ 'ଗ୍ରାମଶିରି'ଙ୍କ ନିକଟରେ ଜୁଆଙ୍ଗମାନେ ଏକତ୍ରିତ ହୋଇ ନିଜନିଜର ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜାଲାଗି କରିଥାନ୍ତି । ପରଦିନ ଶିକାର ଯାତ୍ରାରେ ସାମିଲ୍ ହେବାକୁଥିବା ପ୍ରତ୍ୟେକ ସଦସ୍ୟ ନିଜ ସାଥୀରେ ଅସ୍ତ୍ରଶସ୍ତ୍ର ସହିତ ଗୋଟିଏ ଗୋଟିଏ କୁକୁଡା ଛୁଆ ସଂଗ୍ରହ କରି ନେଇଥାନ୍ତି । ନାଗମ୍ ଶିକାର ଯାତ୍ରାରେ ଅଂଶଗ୍ରହଣ କରିଥିବା ଜୁଆଙ୍ଗ କଙ୍ଗେର୍‌ମାନଙ୍କର ନେତୃତ୍ୱ ନେଇଥାନ୍ତି । ଏହି ସମୟରେ ଗାଁର ସ୍ତ୍ରୀଲୋକମାନେ ଘର ମଧ୍ୟରେ କବାଟ ବନ୍ଦ କରି ରହିଥାନ୍ତି । ତେବେ ଯେଉଁ ଜୁଆଙ୍ଗ ମହିଳା ଋତୁବତୀ ହୋଇଥାଏ, ତା' ସ୍ୱାମୀଙ୍କୁ ଏହି ଶିକାର ଯାତ୍ରାରେ ସାମିଲ୍ ହେବାକୁ ବାରଣ କରାଯାଇଥାଏ ।

ଜୁଆଙ୍ଗମାନେ ଗ୍ରାମରୁ ବାହାରି ଯାଇ ଜଙ୍ଗଲରେ ପ୍ରବେଶ କଲାମାତ୍ରେ, ନାଗମ୍ ଜଙ୍ଗଲ ମଧ୍ୟରେ ଏକ ଭୂମିକୁ ସଫା କରି ଗୋବର ପାଣି ସିଞ୍ଚନ କରି ଶୋଧନ କରନ୍ତି । ଭୂମି ସଂସ୍କାର ହେବା ପରେ ନାଗମ୍ ସେଠାରେ ମାଟିରେ ଏକ ଛୋଟ ବେଦୀ(ମଣ୍ଡପ) ନିର୍ମାଣ କରନ୍ତି । ବେଦୀ ଉପରେ ନାଗମ୍ ହଳଦିଗୁଣ୍ଡ ଓ ଚାଉଳ ଚୂନାରେ ମୁରୁଜ ପକାନ୍ତି । ନାଗମ୍ ଦୁଇଖଣ୍ଡ ବଡ଼ ଶିଶୁ କାଠ ଓ ଦୁଇଖଣ୍ଡ ଶାଳ କାଠ ଏହି ବେଦୀର ଉଭୟ ପାର୍ଶ୍ୱରେ ପୋତି ଦିଅନ୍ତି । ଏହାପରେ ଜୁଆଙ୍ଗମାନେ ସାଥୀରେ ଆଣିଥିବା ସମସ୍ତ ଅସ୍ତ୍ରଶସ୍ତ୍ରକୁ ଏହି ବେଦୀ ନିକଟରେ ରଖାଯାଏ । ଜୁଆଙ୍ଗମାନେ ନିଜ ସାଥୀରେ ଆଣିଥିବା କୁକୁଡା ଛୁଆଗୁଡିକୁ ନାଗମ୍ ଜଙ୍ଗଲ ଠାକୁରାଣୀ ବନଦୁର୍ଗା ଓ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା କରି ବଳି ଚଢାଇଥା'ନ୍ତି । ଏହାପରେ ନାଗମ୍ କୁକୁଡାଛୁଆମାନଙ୍କର ରକ୍ତକୁ ବେଦୀ ନିକଟରେ ରଖାଯାଇଥିବା ଅସ୍ତ୍ରଶସ୍ତ୍ରରେ ସିଞ୍ଚନ କରନ୍ତି । ପୂଜା କାମ ଶେଷ ହେଲାପରେ ନାଗମ୍ ସେଠାରେ ପୋତାଯାଇଥିବା ଶାଳ କାଠ ଦୁଇଖଣ୍ଡକୁ ଶୂନ୍ୟରେ ଫିଙ୍ଗି ଦିଅନ୍ତି । ଯଦି ଶାଳକାଠ ଦୁଇଖଣ୍ଡ ଅସଜଡା ହୋଇ ଭୂମି ଉପରେ ପଡେ, ତେବେ ଏହା ଶୁଭସୂଚନା ବୋଲି ନାଗମ୍ ଘୋଷଣା କରନ୍ତି । ଏହାପରେ ନାଗମ୍ ସମସ୍ତ ଜୁଆଙ୍ଗମାନଙ୍କୁ ନିଜନିଜର ଅସ୍ତ୍ରଶସ୍ତ୍ର ଫେରେଇ ଦିଅନ୍ତି ।

ପ୍ରତ୍ୟେକ ଜୁଆଙ୍ଗ ଜଣଜଣ କରି ଶିଶୁ କାଠ ପୋତାଯାଇଥିବା ସ୍ଥାନକୁ ଡେଇଁକରି ଆଗକୁ ଆଗକୁ ମାଡି ଚାଲନ୍ତି । ଏତିକିବେଳେ ଶିକାର ଯାତ୍ରାର ନେତୃତ୍ୱ ନେଉଥିବା ଜୁଆଙ୍ଗ କଙ୍କେରଟ୍ଟି ଯଦି ଝୁଣ୍ଟିପଡେ ତା ପଛରେ ଥିବା ଅନ୍ୟ ଜୁଆଙ୍ଗମାନେ ତାକୁ ଧରି ନେଇ ତାକୁ ସମ୍ବର ବୋଲି ବଡ଼ପାଟିରେ ଘୋଷଣା କରନ୍ତି । ଜଣେ ଜୁଆଙ୍ଗ ତାର କାନ ଧରି ତାକୁ ଏହା ସତ୍ୟ ନା ମିଥ୍ୟା ବୋଲି ପଚାରେ । ଭୂମି ଉପରେ ଝୁଣ୍ଟି ପଡିଥିବା କଙ୍କେରଟି ଏହା ସତ୍ୟ ବୋଲି କହିବା ପରେ ସମସ୍ତ ଜୁଆଙ୍ଗ ସେମାନଙ୍କ ଲକ୍ଷ୍ୟପଥରେ ଯାତ୍ରା କରନ୍ତି ।

ଯେଉଁ ଯୁବକଟି ପ୍ରଥମେ ଏକ ପଶୁ ଶିକାର କରିବାରେ ସଫଳତା ହାସଲ କରେ ତାକୁ ଅନ୍ୟ ଜୁଆଙ୍ଗମାନେ 'ରାଜା' ବୋଲି ସମ୍ବୋଧନ କରନ୍ତି ଏବଂ ସେହି ସଫଳ ଯୁବକର ଗଳାରେ ଏକ ଫୁଲ ହାର ପିନ୍ଧାଇ ଅନ୍ୟ ଜୁଆଙ୍ଗମାନେ କାନ୍ଧରେ ବସେଇ ଜଙ୍ଗଲ ମଧ୍ୟରେ ବୁଲାନ୍ତି । ଏହାପରେ ଜୁଆଙ୍ଗମାନେ ମୃତ ପଶୁର ଶରୀରକୁ ବୋହିବୋହି ନିକଟସ୍ଥ ଝରଣା କୂଳକୁ ନିଅନ୍ତି । ସେଠାରେ ଏହି ପଶୁଟିକୁ କାଟି ମାଂସ ପ୍ରସ୍ତୁତ କରାଯାଏ । ଏହି ମାଂସକୁ ଭାଗଭାଗ କରି ସମସ୍ତ ଜୁଆଙ୍ଗମାନେ ନିଅନ୍ତି । ମାତ୍ର, ଯେଉଁ ଯୁବକଟି ଉକ୍ତ ପଶୁଟିକୁ ଶିକାର କରିବାରେ ସଫଳ ହୋଇଥାଏ ତାକୁ ଏକ ବଡ଼ ଭାଗ ପ୍ରଦାନ କରାଯାଏ । ଯଦି ପଶୁଟି ମାଈ ହୋଇଥାଏ, ତେବେ ତାହାର ସ୍ତନ ଦୁଇଟି ଏବଂ ଯଦି ପଶୁଟି ପୁରୁଷ ହୋଇଥାଏ ତେବେ ତା'ର ଅଣ୍ଡକୋଷକୁ ଶିକାର କରିଥିବା ଯୁବକଟିକୁ ପ୍ରଦାନ କରାଯାଇଥାଏ । ଏହା ସହିତ ମୃତ ପଶୁଟିର ପଞ୍ଜରାର ଅର୍ଦ୍ଧାଧିକ ଅଂଶ, ମୁଣ୍ଡ, ପଛ ଫଡିଆ, କଲିଜାକୁ ମିଶେଇ ଏକ ବଡ଼ ଭାଗ ଉକ୍ତ ଶିକାରୀ ଯୁବକକୁ ପ୍ରଦାନ କରାଯାଇଥାଏ । ଏହାପରେ ସମସ୍ତେ ନିଜନିଜର ଘରକୁ ଫେରନ୍ତି । ସଫଳ ଶିକାରୀ ଯୁବକଟି ମାଂସ ରୋଷେଇ କରି ନିଜର ପୂର୍ବପୁରୁଷ ଏବଂ ଧନୁ, ତୀରକୁ ଅର୍ପଣ କରିବା ପରେ ପରିବାର ଲୋକେ ଭକ୍ଷଣ କରନ୍ତି ।

ପରଦିନ ଶିକାରରେ ସଫଳ ହୋଇଥିବା ସଂପୃକ୍ତ ଯୁବକଟି ସାଥୀରେ ଏକ ମାଂସ ପୁଡିଆ ଧରି ନିଜର ମାମୁଁ ଘରକୁ ବୁଲିଯାଏ । ତା' ସାଥୀରେ ଅନ୍ୟ ଜୁଆଙ୍ଗମାନେ ଏକ ଶୋଭାଯାତ୍ରାରେ ଯାଇଥା'ନ୍ତି । ମାମୁଁ ଘରେ ପହଞ୍ଚିଲା ପରେ ସେଠାରେ ଉକ୍ତ ଯୁବକର ପାଦ, ହାତ ଧୋଇଦେଇ ତାକୁ ଉପଯୁକ୍ତ ଆତିଥେୟତା ପ୍ରଦାନ କରାଯାଏ । ସେଠାରେ ଉକ୍ତ ଯୁବକକୁ ବନ୍ଧାପନା କରାଯାଇ ଯୁବକଟିର ସଫଳତା ନେଇ ପିତୃପୁରୁଷଙ୍କୁ ଅବଗତ କରାଯାଏ । ଏହି ଖୁସିରେ ମାମୁଁଘର ପକ୍ଷରୁ ସେହି ଯୁବକକୁ ଏକ ନୂତନ ଧନୁ ପ୍ରଦାନ କରାଯାଏ । ଏହାପରେ ସଂପୃକ୍ତ ଯୁବକ ସହିତ ଅନ୍ୟାନ୍ୟ ଜୁଆଙ୍ଗମାନେ ନିଜ ଗ୍ରାମକୁ ଫେରନ୍ତି ।

ଶିକାରକୁ ନେଇ ଜୁଆଙ୍ଗମାନଙ୍କ ମଧ୍ୟରେ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି । "ଲାଧୁ ବୁଗା ନାମରେ ଜଣେ ଶକ୍ତିଶାଳି ଜୁଆଙ୍ଗ ବ୍ୟକ୍ତି ଥିଲା । ସେ ଶିକାରରେ ନିପୁଣ ଥିଲା । ପ୍ରତିଦିନ ସେ

ଦୁଇରୁ ତିନୋଟି ସମ୍ବର ଶିକାର କରି ଘରକୁ ଫେରୁଥିଲା । ଥରେ ଜଙ୍ଗଲରେ ଲାଧୁ ବୁରା ସହିତ ଏକ ବାଘୁଣୀର ସାକ୍ଷାତ ହେଲା । ବାଘୁଣୀ ଲାଧୁ ବୁରାର ଆକର୍ଷଣୀୟ ଚେହେରା ପ୍ରତି ଆକର୍ଷିତ ହୋଇ ତାକୁ ପ୍ରେମ ନିବେଦନ କଲା । ଲାଧୁବୁରା ପ୍ରଥମ ଦିନ ବାଘୁଣୀର ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରି ଚାଲି ଆସିଲା । ପରଦିନ ଲାଧୁବୁରା ପୁଣି ଜଙ୍ଗଲକୁ ଯାଇ ଦୁଇଟି ସମ୍ବର ଶିକାର କରି ଫେରୁଥିଲା । ମାତ୍ର, ଲାଧୁବୁରା ବାଟରେ ଏକ ଗଛମୂଳେ ନିଜର ଧନୁ, ତୀରକୁ ତଳେ ରଖି କିଛି ସମୟ ବିଶ୍ରାମ ନେଉଥିଲା । ଏତିକିବେଳକୁ ସେହି ବାଘୁଣୀଟି ଆସି ସେଠାରେ ପହଞ୍ଚିଲା । ବାଘୁଣୀଟିକୁ ଦେଖି ଶୋଇପଡିଥିବା ଲାଧୁବୁରାର ଜାଗ୍ରତ ଥିବା ଧନୁତୀର ଦୁହେଁ ତା' ଉପରକୁ ଆକ୍ରମଣ କରିବାକୁ ଉଦ୍ୟମ କଲେ । ସେ ଲାଧୁବୁରାକୁ ବହୁତ ଭଲପାଏ ଏବଂ ସେ ଲାଧୁବୁରାକୁ ବିବାହ କରିବାକୁ ଚାହୁଁଛି । ଏଣୁ ତାକୁ ନ ମାରିବାକୁ ବାଘୁଣୀ ଧନୁତୀର ଦୁହିଁକୁ ବହୁ ଅନୁରୋଧ କଲା । ବାଘୁଣୀର ଏଭଳି କଥାରେ ଧନୁତୀର ଦୁହେଁ ତରଳିଗଲେ । ଏତିକିବେଳକୁ ଲାଧୁବୁରା ନିଦରୁ ଉଠିଗଲା ଓ ସେ ବାଘୁଣୀ ପ୍ରେମ ନିବଦେନକୁ ଗ୍ରହଣ କଲା । ମାତ୍ର, ଏହାପରେ ସବୁ ଗଡ଼ବଡ଼ ହୋଇଗଲା । ସଙ୍ଗେସଙ୍ଗେ ଲାଧୁବୁରା ନିଜର ସମସ୍ତ ଶକ୍ତି ହରାଇବସିଲା । ଲାଧୁବୁରାର ସମସ୍ତ ଶକ୍ତି ବାଘୁଣୀ ଶରୀରକୁ ଚାଲିଗଲା । ସେହିଦିନୁ ଜୁଆଙ୍ଗମାନେ ଦୁର୍ବଳ ହୋଇଯାଇଛନ୍ତି ଏବଂ ବାଘମାନେ ଶକ୍ତିଶାଳୀ ହୋଇଯାଇଛନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

## ତିର୍ତିୟା (ଅକ୍ଷି ତୃତୀୟା)

*(ceremony for first sowing of paddy)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ଉପରବୈତରଣୀ, ଗ୍ରାମ ପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୧୨ ଓ ୧୩ ମେ' ୨୦୧୩ (ଦୁଇଦିନ ବ୍ୟାପୀ)**

**ତଥ୍ୟ ପ୍ରଦାନକାରୀ: ଉପରବୈତରଣୀ ଗ୍ରାମର ରଘୁ ଜୁଆଙ୍ଗ (ନାଗମ୍),**
**ସୁନିଆ ଜୁଆଙ୍ଗ (ପଧାନ), ଲକ୍ଷ୍ମୀଧର ଜୁଆଙ୍ଗ, ଦେଶ ଜୁଆଙ୍ଗ**
**ଏବଂ ଗୋନାସିକାର ବୀରବର ନାୟକ ।**

ଅକ୍ଷି ତୃତୀୟା ବା ତିର୍ତିୟା ଏକ କୃଷିଭିତ୍ତିକ ପର୍ବ । ଏହି ପର୍ବ ବୈଶାଖ ମାସ ଶୁକ୍ଳ ପକ୍ଷ ତୃତୀୟା ଦିନ ପାଳନ କରାଯାଇଥାଏ । ଜୁଆଙ୍ଗମାନେ ଏହି ପର୍ବଟିକୁ ଦୁଇଦିନ ଧରି ପାଳନ କରିଥା'ନ୍ତି ।ଭଲ

ଫସଲ ହେବା ଉଦ୍ଦେଶ୍ୟରେ ଜୁଆଙ୍ଗ ଗ୍ରାମର ଚାଷୀମାନେ ଏହି ପର୍ବକୁ ବେଶ୍ ଆନନ୍ଦ ଉଲ୍ଲାସର ସହ ପାଳନ କରିଥାନ୍ତି । ଏହାକୁ 'ମୁଠିଛୁଆଁ' ପର୍ବ ମଧ୍ୟ କୁହାଯାଏ । ତିର୍ତିୟା ଦିନ ମୁଠି ଅନୁକୂଳ କଲାପରେ ଜୁଆଙ୍ଗମାନେ ଚାଷ କାର୍ଯ୍ୟ ଆରମ୍ଭ କରିଥାନ୍ତି । ଅକ୍ଷିତୃତୀୟା ପରେପରେ ବର୍ଷା ଉପରେ ନିର୍ଭର କରି ଜୁଆଙ୍ଗମାନେ କୃଷିକାର୍ଯ୍ୟକୁ ଆଗକୁ ବଢେଇଥା'ନ୍ତି । ଏହି ପର୍ବଟି ଜୁଆଙ୍ଗମାନଙ୍କର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପର୍ବ ଭାବେ ଗଣାଯାଇଥାଏ । ତିର୍ତିୟା ପର୍ବରେ ପରିବାରର ବୟସ୍କ ସଦସ୍ୟ ମୁଠି ଅନୁକୂଳ କରିଥାନ୍ତି । ପୂଜକ (ନାଗମ୍)ଙ୍କ ଘରୁ ସଂଗୃହୀତ ଧାନକୁ ଗ୍ରାମଶିରିଙ୍କ ନିକଟରେ ପୂଜା କରିବା ପରେ ଏହାକୁ ପ୍ରତି ଜୁଆଙ୍ଗ ଘରକୁ ଗୋଟିଏ ଗୋଟିଏ ଚଉପତି (ଦନା)ରେ ଭାଗ କରାଯାଇ ପ୍ରଦାନ କରାଯାଇଥାଏ । ଜୁଆଙ୍ଗମାନେ ଏହି ଧାନକୁ ନେଇ ନିଜ ଘରେ ଥିବା ଧାନ ସହିତ ମିଶେଇ ଅକ୍ଷି ମୁଠି ଅନୁକୂଳ କରିବାକୁ ନିଜନିଜର **ଏଜାନ୍** (କ୍ଷେତ)କୁ ଯାଆନ୍ତି । ଏହି ପର୍ବଟି ଦୁଇ ଦିନ ଧରି ପାଳିତ ହୋଇଥାଏ ।

**ପ୍ରଥମ ଦିନ (ବୁଆ ଆବରଣ):** ପ୍ରଥମ ଦିନରେ ଜୁଆଙ୍ଗମାନେ ଧାନ (ଲକ୍ଷ୍ମୀ ଦେବୀ)ଙ୍କୁ ଆବରଣ କରି ଗ୍ରାମଶିରିଙ୍କ ନିକଟକୁ ଆଣିଥା'ନ୍ତି । ଗାଁର ଯୁବକମାନେ ଧାନ ନଡ଼ା (ପାଳ)ରେ



**➤ ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ ଗ୍ରାମଶିରିଙ୍କ ନିକଟରେ ପୂଜା କାର୍ଯ୍ୟ ସଂପନ୍ନ କରୁଛନ୍ତି**



▶ **ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ ଗ୍ରାମଶିରିଙ୍କ ନିକଟରେ ପୂଜା କାର୍ଯ୍ୟ ସଂପନ୍ନ କରୁଛନ୍ତି**

ଦୁଇଟି ଆଉଳିଆ (ଓଳିଆ) ନିର୍ମାଣ କରନ୍ତି । ନାଗମ୍‌ଙ୍କ ଘରୁ କିଛି (ପାଖାପାଖି ଦୁଇଚାରି ମାଣ) ପବିତ୍ର ଧାନ ଅଣାଯାଇ ଏହି ଦୁଇ ଓଳିଆରେ ଭର୍ତ୍ତି କରାଯାଏ । ଏହି ପବିତ୍ର ଧାନଭର୍ତ୍ତି ଦୁଇଗୋଟି ଓଳିଆକୁ ଗ୍ରାମର ଦୁଇ ମୁଣ୍ଡରେ ଥିବା ଦୁଇଟି ଉଚ୍ଚସ୍ଥାନ କିମ୍ବା ଗଛର କୋରଡରେ ରଖାଯାଏ । ଗ୍ରାମର ପୂଜକ, ପଧାନ ଓ ବାରଭାଇମାନେ ଏହି ସ୍ଥାନକୁ ଯାଇ ସେଠାରେ ଗଛ କୋରଡରେ ରଖାଯାଇଥିବା ଧାନଓଳିଆକୁ ଯଥା ବିଧିପୂର୍ବକ ପୂଜାପାଠ କରି ଶୋଭାଯାତ୍ରା ମାଧ୍ୟମରେ ଗ୍ରାମଶିରିଙ୍କ ନିକଟକୁ ବୋହିକରି ଆଣନ୍ତି । ଏହାକୁ **'ବୁଆ ଆବରଣ'** କୁହାଯାଏ । ଏହା ପୂର୍ବରୁ ମଣ୍ଡଘର ସନ୍ନିକଟ ଏବଂ ଗ୍ରାମଶିରିଙ୍କ ସାମ୍ନାରେ ନିର୍ଦ୍ଦିଷ୍ଟ ଭାବେ ଅଁଳା ଗଛର ଡାଳରେ ଏକ ବେଦୀ (ଭାଡି) ନିର୍ମାଣ କରାଯାଇଥାଏ । ଅଁଳା ଗଛ ଲକ୍ଷ୍ମୀଙ୍କର ପ୍ରିୟ ହୋଇଥିବାରୁ ଜୁଆଙ୍ଗମାନେ ଏହାକୁ ବ୍ୟବହାର କରିଥା'ନ୍ତି । ଗାଁ ମୁଣ୍ଡରେ ଥିବା ଧାନ ଓଳିଆକୁ ବରଣ କରି ଆଣିବା ପରେ ଏହାକୁ ଏହି ଭାଡି ଉପରେ ସ୍ଥାପନ କରାଯାଏ । ଏହି ଭାଡିର ଚର୍ତୁପାର୍ଶ୍ୱରେ ରଙ୍ଗୀନ୍ କପଡା ଓ ଝଲମଲ ରଙ୍ଗୀନ୍ ଜରି ଗୁଡେଇ ଏହାକୁ ଆକର୍ଷଣୀୟ କରାଯାଇଥାଏ । ଏହା ସହିତ ଏହି ଭାଡିକୁ ଆମ୍ବଡାଳ, ଅନ୍ୟାନ୍ୟ

ତାଳପତ୍ର ଓ ଫୁଲରେ ସଜାଯାଇଥାଏ । ଭାଡି ଉପରେ ଥିବା ଧାନ ଓଳିଆକୁ ଲକ୍ଷ୍ମୀ ମାତା ଭାବେ ଜୁଆଙ୍ଗମାନେ ପୂଜା କରିଥା'ନ୍ତି । ଗ୍ରାମଶିରିଙ୍କ ନିକଟରେ ନାଗମ୍ ଓ ପଧାନ ଉପସ୍ଥିତ ରହି ଯଥା ବିଧି ପ୍ରକାରେ ପୂଜାକାର୍ଯ୍ୟ ସମାପନ କରନ୍ତି ।

ଏହାପରେ ଏଠାରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁପକ୍ଷୀ ବଳି (ଛେଦ) ପଡିଥାଏ । ନାଗମ୍ ଗ୍ରାମଶିରି, ଧରମ୍ ଦେବତା, ବସୁମତି ମାତା ଓ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ବଳି ପଡିଥିବା ପଶୁପକ୍ଷୀଙ୍କ ରକ୍ତ ପ୍ରଦାନ କରି ଚଳିତବର୍ଷ ଭଲ ଫସଲ ହେବାକୁ ନିବେଦନ କରନ୍ତି । ସକାଳୁ ଏହି ପର୍ବ ପାଳନ ହେବାପରେ ଦିନତମାମ୍ ଏହି ଧାନ ଓଳିଆଟି ରଙ୍ଗୀନ କପଡାରେ ଆବଦ୍ଧ ହୋଇ ଉକ୍ତ ଭାଡି ଉପରେ ଥୁଆ ହୋଇଥାଏ । ସଞ୍ଜ ବେଳକୁ ପୁନର୍ବାର ଗ୍ରାମର ପଧାନ, ନାଗମ୍ ଓ ବାରଭାଇମାନେ ଗ୍ରାମଶିରି ନିକଟକୁ ଆସନ୍ତି । ଏଠାରେ ଭାଡି ଉପରେ ଥିବା ଧାନ ଓଳିଆକୁ ଯଥା ବିଧିପୂର୍ବକ ପୂଜାପାଠ କରି ନାଗମ୍ ମଣ୍ଡଘରକୁ ନିଜ କାନ୍ଧରେ ବୋହି ଆଣନ୍ତି । ଏହାପରେ ନାଗମ୍ ମଣ୍ଡଘରେ ରଖାଯାଇଥିବା ଏହି ଧାନ ଓଳିଆକୁ ଖୋଲି ଗ୍ରାମର ସମସ୍ତ ପରିବାର ମଧ୍ୟରେ ସମାନ



► ଅକ୍ଷିତୃତୀୟା ପାଳନ ଅବସରରେ ଧାନ ଓଳିଆକୁ ଗ୍ରାମଶିରିଙ୍କ ନିକଟରେ ନିର୍ମାଣ କରାଯାଇଥିବା ବେଦୀ ଉପରୁ ମଣ୍ଡଘରକୁ ନିଆଯାଉଛି



▶ **ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ ବୁଆ (ଧାନ ଓଳିଆ) ଆବରଣ କରି ଗ୍ରାମଶିରିଙ୍କ ନିକଟକୁ ଆଣୁଛନ୍ତି ।**

ଭାଗରେ ବଣ୍ଟନ କରନ୍ତି । ପ୍ରତି ପରିବାରର ମୁଖ୍ୟମାନେ ନାଗମ୍‌ଙ୍କଠାରୁ ଏହି ଧାନ ନେଇ ନିଜ ଘରେ ଥିବା ଧାନ ମିଶେଇ ଏକ **ବୁରୁଣି** (ପାଚିଆ/ଡାଲା)ରେ ଭର୍ତ୍ତି କରନ୍ତି । ପରଦିନ ଏହାକୁ ନିଜନିଜର ଧାନବିଲ (କମାଣ/ଏକାନ୍/ତଇଳା)କୁ ନେଇ ଜୁଆଙ୍ଗମାନେ ମାଟିରେ ମଞ୍ଜିବୁଣା କାର୍ଯ୍ୟର ଶୁଭାରଂଭ କରନ୍ତି ।

**ଦ୍ୱିତୀୟ ଦିନ (ମୁଠିଛୁଆଁ):** ସକାଳୁ ସକାଳୁ ନାଗମ୍, ପଧାନଙ୍କ ସମେତ ବାରଭାଇ ଓ ପ୍ରତ୍ୟକ ଜୁଆଙ୍ଗ ପରିବାରର ମୁଖିଆମାନେ ସ୍ନାନ ସାରି ନିଜକୁ ଶୁଦ୍ଧପବିତ୍ର କରନ୍ତି । ପ୍ରଥମେ ଗାଁର ନାଗମ୍ ମୁଠି ଅନୁକୂଳ କରିବା ପରେ ଗ୍ରାମର ଅନ୍ୟ ଜୁଆଙ୍ଗମାନେ ମୁଠି ଅନୁକୂଳ କରିଥା'ନ୍ତି । ନାଗମ୍ ସ୍ନାନ ସାରି ଏକ ବୁରୁଣି (ଡାଲା)ରେ ମଣ୍ଡଘରୁ ଆସିଥିବା ଧାନ ସହିତ ହଳଦିଗୁଣ୍ଡ, ଧୂପ, ଦୀପ, ଅରୁଆ ଚାଉଳ, ଫୁଲ, ଚନ୍ଦନ, ନିଆଁ ବେଣ୍ଟି, ପିତଳ ଢାଳରେ ଭର୍ତ୍ତି ପାଣି, କ୍ଷୀର, ଗୁଡ ଏବଂ ଏକ ଲୁହା ଶାବଳ ଆଦି ସାଙ୍ଗରେ ଧରି ନିଜର ବିଲ (କମାଣ)କୁ ବାହାରନ୍ତି । ଏହା ପୂର୍ବରୁ ଗାଁର ଡାଙ୍ଗୁଆ ଗାଁର ମଝି ଦାଣ୍ଡକୁ ଯାଇ ବଡ଼ପାଟିରେ ସମସ୍ତ ଗ୍ରାମବାସୀଙ୍କ ଉଦ୍ଦେଶ୍ୟରେ ଡାକ ପକାଏ- "ହେ,



ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ ଅକ୍ଷି ମୁଠି ଧରି ଜମାଣ୍ (ଧାନବିଲ)କୁ ଯାଉଛନ୍ତି



ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ ଅକ୍ଷି ମୁଠି ଧରି କମାଣ୍
(ଧାନବିଲ)କୁ ଯାଉଛନ୍ତି

▶ ଅକ୍ଷିତୃତୀୟା ପାଳନ ଅବସରରେ ନାଗମ୍ କମାଣ୍ (ଧାନବିଲ)ରେ ମୁଠି ଅନୁକୂଳ କରୁଛନ୍ତି ଏବଂ ଲୁହା ଶାବଳରେ ମାଟିକୁ ଖୋଳି ଧାନ ବୁଣୁଛନ୍ତି





► କମାଣ୍ (ଧାନବିଲ)ରେ ନାଗମ୍‌ଙ୍କ ପୂଜାର୍ଚ୍ଚନା

ଜୁଆଙ୍ଗ ଭାଇମାନେ, ପିଲାମାନେ, ବୁଢାମାନେ, ସ୍ତ୍ରୀଲୋକମାନେ ନାଗମ୍ ଅକ୍ଷିମୁଠି ଧରି କମାଣକୁ ବାହାରୁଛନ୍ତି । ଏଣୁ ରାସ୍ତା ଉପରୁ ସମସ୍ତେ ହଟିଯାଆନ୍ତୁ ।" ଏହାପରେ ନାଗମ୍ ନିଜର ଧାନ ବୁରୁଣି ଓ ଅନ୍ୟାନ୍ୟ ଭୋଗସାମଗ୍ରୀ ଧରି କମାଣ ଅଭିମୁଖେ ଏକମୁହାଁ ହୋଇ ବାହାରି ପଡନ୍ତି । ଏତିକିବେଳେ ନାଗମ୍ କୌଣସି ପ୍ରକାରେ ପଛକୁ ଫେରି ଚାହାଁନ୍ତି ନାହିଁ କିମ୍ବା କାହାରି ସାଥୀରେ କଥା ହୁଅନ୍ତିନାହିଁ । ନାଗମ୍ କମାଣରେ ପହଞ୍ଚିବା ପରେ ପ୍ରଥମେ ସେଠାରେ ମାଟି ଉପରେ ଗୋବର ପାଣି ସହାୟତାରେ ଲିପାପୋଛା କରି ମାଟିକୁ ଶୁଦ୍ଧ (ସଂସ୍କାର) କରନ୍ତି । ନାଗମ୍ ବୁରୁଣିରେ ନେଇଥିବା ଧୂପ, ଦୀପ ଜଳାଇ ଧରମ୍ ଦେବତା, ବସୁମତି ମାତା ଓ ପିତୃପୁରୁଷଙ୍କୁ ଆବାହନ କରନ୍ତି । ଏହାପରେ ଅରୁଆ



▶ କମାଣ୍ (ଧାନବିଲ)ରେ ନାଗମ୍ଙ୍କ ପୂଜାର୍ଚ୍ଚନା

ଚାଉଳକୁ ଭାଗଭାଗ କରି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବାପରେ ଲୁହା ଶାବଳରେ ମାଟିକୁ ଖୋଳି ସେଥିରେ ଧାନତକ ବୁଣି ଦିଅନ୍ତି । ମାଟିରେ ଧାନ ବୁଣିବାପରେ ଲୁହା ଶାବଳରେ କୋଡାଖୋସା କରି ପାଣି ଢାଳି ଦିଅନ୍ତି । ନାଗମ୍ ପୂଜା କାର୍ଯ୍ୟ ଶେଷ କରିବା ପରେ ଗ୍ରାମର ଅନ୍ୟ ଜୁଆଙ୍ଗମାନେ ନିଜନିଜର ବୁରୁଣି ଓ ପୂଜାସାମଗ୍ରୀ ଧରି ନିଜନିଜର କମାଣକୁ ମୁଠି ଅନୁକୂଳ କରିବାକୁ ଯାଆନ୍ତି । ସମସ୍ତ ଜୁଆଙ୍ଗମାନେ ଧାନକ୍ଷେତ (କମାଣ/ତଇଳା)ରୁ ଫେରିବା ପରେ ଗାଁର ମଣ୍ଡଘରେ ଏକତ୍ରିତ ହୁଅନ୍ତି । ସେଠାରେ ଜୁଆଙ୍ଗମାନେ ମିଳିତ ଭାବେ ହାଣ୍ଡିଆ କିମ୍ବା ମହୁଲି ମଦ ପାନ କରନ୍ତି । ଏହାକୁ 'ଜୁରିପକା' ବୋଲି କୁହାଯାଇଥାଏ । ଏହି ଅବସରରେ ଯୁବକମାନେ ଯଦି କୌଣସି ତ୍ରୁଟିବିଚ୍ୟୁତି କରିଥା'ନ୍ତି ସେମାନଙ୍କ ଉପରେ ବୟସ୍କମାନେ ଅର୍ଥଦଣ୍ଡ ଜୋରିମାନା କରିଥା'ନ୍ତି । ଏହି ଜୋରିମାନା ଅର୍ଥରେ ଅଧିକ ପରିମାଣରେ ମଦ କିଣାହୋଇ ଆସେ । ଗାଁର ସମସ୍ତ ଜୁଆଙ୍ଗମାନେ ମଦ ପିଇ ମାତାଲ୍ ହୋଇଉଠନ୍ତି । ସନ୍ଧ୍ୟାବେଳକୁ ଗ୍ରାମଶିରିଙ୍କ ନିକଟରେ ପ୍ରତିଷ୍ଠା କରାଯାଇଥିବା 'ବେଦୀ' (ଭାଡି)କୁ ନାଗମ୍ ଓ ପଧାନ ଭାଙ୍ଗିଦେଇ ନିକଟସ୍ଥ ଝରଣାରେ ବିସର୍ଜନ କରିଦିଅନ୍ତି ।

## ରଜ ପର୍ବ

*(festival of swing)*

ତଥ୍ୟ ସଂଗ୍ରହ ବିବରଣୀ

ଅଧ୍ୟୟନ କ୍ଷେତ୍ର

ଗ୍ରାମ: ଉପରପଣସନସା, ଗ୍ରାମପଞ୍ଚାୟତ: କୁଆଁର, ବ୍ଲକ୍: ବାଂଶପାଳ

ଅଧ୍ୟୟନ ଦିବସ: ୧୪,୧୫ ଓ ୧୬ ଜୁନ୍, ୨୦୧୨ (ତିନିଦିନ ବ୍ୟାପୀ)

ତଥ୍ୟ ପ୍ରଦାନକାରୀ: ଉପରପଣସନସା ଗ୍ରାମର ଦୁର୍ଲ୍ଲଭ ଜୁଆଙ୍ଗ, ଶୁକୁଟୁ ଜୁଆଙ୍ଗ, ରତ୍ନାକର ଜୁଆଙ୍ଗ, ଦୁର୍ଯ୍ୟୋଧନ ଜୁଆଙ୍ଗ, ଶୁକୁରା ଜୁଆଙ୍ଗ, ବୁଢିଆ ଜୁଆଙ୍ଗ ଏବଂ ଡ. ବିମ୍ବାଧର ବେହେରା (କେନ୍ଦୁଝର) ।



ରଜ ପର୍ବଟି ଜୁଆଙ୍ଗମାନେ ପାଳନ କରୁଥିବା ଅନ୍ୟ ଏକ ପ୍ରମୁଖ ପର୍ବ । ଏହି ପର୍ବ ପାଳନ ଅବସରରେ ସମସ୍ତ ଜୁଆଙ୍ଗ ପୁରପଲ୍ଲୀ ଉତ୍ସବମୁଖର ହୋଇଉଠେ । ସବୁଠି ଦୋଳି ଖେଳ ଓ ଦୋଳି ଗୀତର ପ୍ରତିଯୋଗିତା ଆୟୋଜନ କରାଯାଏ । ରଜ ଅବସରରେ ଦୋଳି ଓ ଗୀତର ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ । ଜୁଆଙ୍ଗ ଯୁବତୀମାନେ ଦୋଳି ଖେଳିବା ସାଙ୍ଗକୁ ରଜ ଗୀତ ଗାଇଥାନ୍ତି ।

ରଜ ପର୍ବଟି ଏକ ଗ୍ରାମ୍ୟ କୃଷିଭିତ୍ତିକ ପର୍ବ । ଏହା ଅନ୍ୟ ପର୍ବମାନଙ୍କଠାରୁ ଟିକେ ନିଆରା । କେନ୍ଦୁଝର ଜିଲ୍ଲାରେ ଏହି ପର୍ବଟି ଏକ ଗଣପର୍ବର ମାନ୍ୟତା ଲାଭ କରିପାରିଛି । ଜିଲ୍ଲାର ପୁରପଲ୍ଲୀରେ ଏହି ପର୍ବ ପାଳନ କରାଯାଉଥିବାବେଳେ ସୀତାବିଞ୍ଜି, ବୀଣାଝରି ଭଳି କିଛି ସ୍ଥାନରେ ସାମୁହିକ ଭାବେ ପାଳିତ ହୋଇଥାଏ । ଏଠାରେ ସପ୍ତାହେ ବ୍ୟାପୀ ରଜ ଉତ୍ସବ ଚାଲେ । ଏହା ସାଙ୍ଗକୁ ମୀନାବଜାର, ମେଳା, ଅପେରା, ପାଲା ଆଦିର ଆୟୋଜନ କରାଯାଇଥାଏ । ରଜ ପର୍ବ ବେଳକୁ





ବିଦେଶରେ ଚାକିରି କରିଥିବା ପ୍ରାୟ ସମସ୍ତ ଯୁବକ, ଯୁବତୀମାନେ ନିଜନିଜ ଗାଁକୁ ଫେରି ଆସନ୍ତି ଏବଂ ରଜ ପର୍ବରେ ସାମିଲ୍ ହୁଅନ୍ତି । କେନ୍ଦୁଝର ଜିଲ୍ଲାର ପୁରପଲ୍ଲୀରେ ରଜ ପର୍ବ ପାଳନ କରାଯାଉଥିବାବେଳେ ଜୁଆଙ୍ଗମାନେ ମଧ୍ୟ ଧୁମ୍‌ଧାମରେ ଏହି ପର୍ବଟିକୁ ପାଳନ କରିଥା'ନ୍ତି ।

ଗ୍ରୀଷ୍ମର ଅବସାନ ଏବଂ ବର୍ଷାର ଆଗମନ ମଧ୍ୟରେ ମିଥୁନ ସଂକ୍ରାନ୍ତିକୁ ହିଁ ରଜ ସଂକ୍ରାନ୍ତି ଭାବେ ପାଳନ କରାଯାଇଥାଏ । ସାଧାରଣତଃ ରଜ ପର୍ବ ତିନି ଦିନ ବ୍ୟାପି ଚାଲେ । ମାତ୍ର କେନ୍ଦୁଝର ଜିଲ୍ଲାର ଅଧିକାଂଶ ସ୍ଥାନରେ ଏହା ପାଞ୍ଚ ଦିନ ଏମିତିକି ସପ୍ତାହେ ଧରି ଚାଲେ । ଜ୍ୟେଷ୍ଠ ମାସର ଶେଷ ଦିନଟି ପହିଲି ରଜ । ପହିଲି ରଜର ପୂର୍ବଦିନକୁ 'ସଜବାଜ' ବା 'ପାଣିବୁହା' ବୋଲି କୁହାଯାଏ । ଆଷାଢ ମାସର ପ୍ରଥମ ଦିନଟି ମଝି ରଜ । ଏହାକୁ ରଜ ସଂକ୍ରାନ୍ତି କୁହାଯାଏ । ରଜ ପର୍ବର ମୁଖ୍ୟ ଆକର୍ଷଣ ହେଉଛି ଦୋଳି ଖେଳ ଓ ଦୋଳି ଗୀତ । ପ୍ରତ୍ୟେକ ଜୁଆଙ୍ଗ ଗାଁରେ ଦୋଳି ଲାଗିଥାଏ ଓ ଦୋଳି ଗୀତ ବୋଲି ଜୁଆଙ୍ଗ ତରୁଣୀମାନେ ଜୀବନକୁ ଉପଭୋଗ କରନ୍ତି । ଦୋଳି ତିଆରୀ ଶେଷ ହେଲେ ଦୋଳି ପୂଜା ହୁଏ । ଗାଁର କୁମାରୀମାନେ ରଜପିଠା ନେଇ ଦୋଳି ପାଖକୁ ଯାଆନ୍ତି । ତିନି ଦିନ ଧରି ରଜ ଉତ୍ସବରେ ଜୁଆଙ୍ଗ ଝିଅବୋହୂମାନେ ବିଭିନ୍ନ ଅଞ୍ଚଳ ବୁଲନ୍ତି ଏବଂ ଏହି ସମୟରେ ଝିଅମାନେ କାମଧନ୍ଦା କରନ୍ତି ନାହିଁ । ଏହି ସମୟରେ ମାଟି ମଧ୍ୟ ଖୋଳାଯାଏ ନାହିଁ । ପୃଥିବୀମାତାକୁ କଷ୍ଟ ଦେଲା ଭଳି କିଛି କାର୍ଯ୍ୟ କରାଯାଏନାହିଁ । ଶେଷ ଦିନ ହେଉଛି ରଜ ବିଦାୟର ପର୍ବ । ଗ୍ରାମର



ରଜ ବାହାଘର



ଝିଅଠାରୁ ବୃଦ୍ଧାମାନେ ରଜକୁ ବିଦାୟ ଦିଅନ୍ତି । ଗାଁ ଝିଅମାନେ ବରକନ୍ୟା ବସନ୍ତି । ତା' ପରେ ଶବର ଶବରୁଣୀ ନାଚ ଅନୁଷ୍ଠିତ ହୋଇଥାଏ । ଏହି ବିଦାୟ ଉତ୍ସବରେ ପୁରୁଷମାନେ ଅଂଶଗ୍ରହଣ କରନ୍ତି ନାହିଁ ।

ରଜ ତିନି ଦିନ କୃଷି କର୍ମ ନିଷିଦ୍ଧ କରାଯାଏ । କାରଣ ଏହି ସମୟରେ ପୃଥିବୀ ମାତା ରଜୋବତୀ ହୋଇଥାଏ । ରଜୋବତୀ ନାରୀ ପରି ଏହି ସମୟରେ ଧରଣୀ ଅସ୍ପୃଶ୍ୟା ହୋଇଥାଏ । ପୂର୍ବରୁ ଜମି ହଳ କରି ବୁଣାବୁଣି କାର୍ଯ୍ୟରେ କ୍ଳାନ୍ତ ହୋଇପଡିଥିବା ଚାଷୀମାନେ ରଜ ତିନିଦିନ ବିଶ୍ରାମ ନେବା ସାଙ୍ଗକୁ ମଜାମଉଜ କରନ୍ତି ଏବଂ ଭାବି ଫସଲର ବେଉସଣ ପାଇଁ ଶକ୍ତି ସଞ୍ଚୟ କରନ୍ତି । ଧରିତ୍ରୀ ରଜୋବତୀ ହେଉଥିବା କାରଣରୁ ଜୁଆଙ୍ଗମାନଙ୍କୁ ଖାଲିପାଦରେ ଭୂମି ଉପରେ ଚାଲିବା ମଧ୍ୟ ମନା ଥାଏ । ଗ୍ରାମର ଯୁବତୀମାନେ କଦଳୀ ପଟୁଆ, ଗୁଆ ଖୋଳପା ପ୍ରଭୃତି ପାଦରେ ବାନ୍ଧି ଭୂମି ଉପରେ ଚାଲନ୍ତି । ଶବର ଶବରୁଣୀ ନୃତ୍ୟ ମାଧ୍ୟମରେ ପ୍ରକୃତି ଓ ପୁରୁଷର ମିଳନରେ ଶସ୍ୟ ଶ୍ୟାମଳା

ଧରିତ୍ରୀ କାମନା କରନ୍ତି । ଏହି ଦିନ ସୀତା ଗର୍ଭବତୀ ହୋଇଥିଲେ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଥାଏ । ଜୁଆଙ୍ଗ ଯୁବତୀମାନେ ରାତିରେ ଖାଇବା ପରିତ୍ୟାଗ କରିଥା'ନ୍ତି । ଏଣୁ ରଜ ତିନିଦିନ ଜୁଆଙ୍ଗ ଯୁବତୀ ଓ ମହିଳାମାନେ ସନ୍ଧ୍ୟା ପୂର୍ବରୁ ରାତ୍ରି ଭୋଜନ ସାରି ଦେଇଥା'ନ୍ତି । ରଜ ଅବସରରେ ଜୁଆଙ୍ଗ ଯୁବତୀମାନଙ୍କୁ ବାଟଣ ବାଟିବା, ପରିବା କାଟିବା ମଧ୍ୟ ବାରଣ କରାଯାଇଥାଏ । ଶେଷ ଦିନ ବସୁମତୀ ଗାଧୁଆ କରାଯାଇଥାଏ । ଧରମ୍ ଦେବତାଙ୍କ ପରେପରେ ବସୁବତି ମାତା ହେଉଛନ୍ତି ଜୁଆଙ୍ଗମାନଙ୍କର ପ୍ରମୁଖ ଅରାଧ୍ୟ ଦେବୀ । ଏଣୁ ବସୁମତି ମାତାଙ୍କୁ ଅରାଧନା କରିବା ଉଦେଶ୍ୟରେ ଜୁଆଙ୍ଗମାନେ ରଜ ପର୍ବ ପାଳନ କରିଥା'ନ୍ତି । ରଜ ଅବସରରେ ଜୁଆଙ୍ଗ ଯୁବତୀମାନେ ଗାନ କରୁଥିବା ଦୋଳି ଗୀତ ସବୁଠୁ ଆକର୍ଷଣୀୟ ହୋଇଥାଏ ।

ରଜପର୍ବକୁ ଅନ୍ୟ ଅର୍ଥରେ ମିଳନର ପର୍ବ ବୋଲି କହିଥାନ୍ତି । ଜିଲ୍ଲା ତଥା ଜିଲ୍ଲା ବାହାରେ ଚାକିରୀ କରିଥିବା ସମସ୍ତ କେନ୍ଦୁଝରିଆମାନେ ନିଜନିଜ ଗାଁକୁ ଫେରି ଆସନ୍ତି । ପଲ୍ଲୀର ଯୁବତୀ



❧ ରଜ ପର୍ବ: ଜୁଆଙ୍ଗ ଯୁବତୀଙ୍କ ଗହଣରେ ଲେଖକ



▶ **ଜୁଆଙ୍ଗ ବୃଦ୍ଧାଙ୍କ ସହିତ ଲେଖକ**

ଏବଂ ନୂଆକରି ବିବାହ କରିଥିବା ନାରୀଟିଏ ପାଇଁ ରଜ ପର୍ବ ବିଶେଷ ମହତ୍ୱ ରଖିଥାଏ । ରଜଦୋଳି ଖେଳ ଓ ରଜଦୋଳି ଗୀତ ଗାନ କରିବା ସେମାନଙ୍କର ମୁଖ୍ୟ କାର୍ଯ୍ୟକ୍ରମ ହୋଇଥାଏ । କେବଳ ଯୁବତୀ କାହିଁକି ଛୋଟଛୋଟ ପିଲାମାନେ ମଧ୍ୟ ରଜ ଉତ୍ସବର ମଜା ନେଇଥା'ନ୍ତି । ରଜ ପର୍ବର ପ୍ରଥମ ଦିନ ସକାଳୁ ଜୁଆଙ୍ଗ ଗ୍ରାମର ଯୁବତୀ ଏବଂ ନବବିବାହିତାମାନେ ହଳଦି ଲଗାଇ ନିକଟସ୍ଥ ନଦୀ, ପୋଖରୀ କିମ୍ବା ଝରଣାକୂଳରେ ଗଣସ୍ନାନ କରିଥା'ନ୍ତି । ସେମାନଙ୍କ ସହ ଛୋଟଛୋଟ ପିଲାମାନେ ମଧ୍ୟ ଥାଆନ୍ତି । ପହିଲି ରଜରେ କେନ୍ଦୁଝରର ପଲ୍ଲୀ ଅଞ୍ଚଳରେ ମାଳମାଳ ହୋଇ ଗ୍ରାମ ପରିକ୍ରମା କରୁଥିବା ଝିଅବୋହୂଙ୍କ ଦୃଶ୍ୟ ବେଶ୍ ମନମୁଗ୍ଧକର ହୋଇଥାଏ । ରଜ ତିନି ଦିନ ଗାଁଗାଁରେ ମାଛ, ମାଂସ, ପିଠାପଣାରେ ଭାସେ । କେଉଁଠି ଗାଁ ଛକରେ ଖାସି କଟାଯାଏ ତ ପୋଖରୀରୁ ମାଛ ଧରାଯାଏ । ଭୋଜିଭାତ କରି ଲୋକେ ଏହି ତିନି ଦିନ ବେଶ୍ ଉତ୍ସବ ମନେଇଥାନ୍ତି । ରଜ ପୋଡପିଠା ଓ ମାଂସ ଝୋଳର ବାସ୍ନାରେ ଗାଁଭୂଇଁ ମହକି ଉଠେ । ଏହି ଅବସରରେ ଜୁଆଙ୍ଗମାନେ ନାନାପ୍ରକାର ପିଠାପଣାର ଆୟୋଜନ କରନ୍ତି ।ପହିଲି ରଜର ସକାଳୁ ସକାଳୁ ଯୁବତୀମାନେ କ୍ଷୀର,

କଦଳୀ, ପଣସ, ଆମ୍ବ, ଦହି, ଗୁଡରେ ପ୍ରସ୍ତୁତ ପଣା ପିଇ ରଜଦୋଳି ଖେଳିବାକୁ ଚାଲି ଯାଆନ୍ତି । ମଧ୍ୟାହ୍ନ ବେଳକୁ ପ୍ରତିଘରେ ମାଂସ, ଭାତର ଆୟୋଜନ ହୋଇଥାଏ । କେନ୍ଦୁଝର ଜିଲ୍ଲାର ସମସ୍ତ ଜୁଆଙ୍ଗବହୁଳ ଅଞ୍ଚଳରେ ରଜ ତିନିଦିନ ଧରି ମାଛ, ମାଂସର ଧୂମ୍ ଚାଲେ । ଏହା ସାଙ୍ଗକୁ ଯୁବକମାନଙ୍କ ମଧ୍ୟରେ ତାସ୍, କବାଡି, ପଶା ଆଦି ଖେଳର ଆୟୋଜନ ହୋଇଥାଏ । ଅନେକ ଗ୍ରାମରେ ଯୁବକମାନଙ୍କ ଦ୍ୱାରା ଯାତ୍ରା ନାଟକ ମଞ୍ଚସ୍ଥ ହୋଇଥାଏ । ରଜ ସରିବାର ଅନେକ ଦିନ ପର୍ଯ୍ୟନ୍ତ ଏପରିକି ରଥଯାତ୍ରା ପର୍ଯ୍ୟନ୍ତ ଦୋଳିଗୀତ ଗାଁଗହଳିରେ ଚାଲିଥାଏ । ଯଦିଓ ରଜଦୋଳିଗୁଡିକରେ ପଟା ଖୋଲି ଦିଆଯାଇଥାଏ, ମାତ୍ର ଦୋଳିକୁ ସଂପୂର୍ଣ୍ଣ ଉଚ୍ଛେଦ କରାଯାଇ ନଥାଏ । ରଥଯାତ୍ରାବେଳକୁ ଗାଁ ଗହଳିରେ ପୁନର୍ବାର ଦୋଳି ପ୍ରତିଷ୍ଠା କରାଯାଇ ଯୁବତୀମାନେ ଦୋଳିରେ ଝୁଲୁଥିବାର ଦେଖାଯାଇଥାଏ ।

ପୂର୍ବେ କେନ୍ଦୁଝର ଜିଲ୍ଲାରେ ଘଞ୍ଚ ଜଙ୍ଗଲ ଥିବାରୁ ନାନା ପ୍ରକାର କାଠରେ ନିର୍ମିତ ଦୋଳି ଦେଖିବାକୁ ମିଳୁଥିଲା । ମାତ୍ର, ଏବେ କାଠର ଅଭାବ କାରଣରୁ ବାଉଁଶରେ ଦୋଳି ପ୍ରସ୍ତୁତ ହେଉଛି । କେନ୍ଦୁଝର ଜିଲ୍ଲାର କାଠ ନିର୍ମିତ ଖାଇଦୋଳି, ବାକ୍ସ ଦୋଳି, ପଟା ଦୋଳିର ଏକ ବିଶେଷ ଖ୍ୟାତି ରହିଛି । ଯୁବତୀମାନେ ରଜଦୋଳିରେ ବସି ସେମାନଙ୍କର କୁମାରୀ ଜୀବନର ସୁନେଲୀ ସ୍ୱପ୍ନକୁ ରଜଗୀତ ଜରିଆରେ ପ୍ରକାଶ କରିଥାନ୍ତି । ନବବିବାହିତ ବୋହୂମାନେ ମଧ୍ୟ ବିବାହର ସୁନେଲୀ ସକାଳକୁ ରଜଦୋଳି ମାଧ୍ୟମରେ ରଙ୍ଗମୟ କରି ଉଠନ୍ତି । ଜୁଆଙ୍ଗମାନଙ୍କର ଦାରିଦ୍ର୍ୟର ଉଦାସ ଛବି, କୈଶୋର ପ୍ରେମ ଏବଂ ଜଞ୍ଜାଳଶୂନ୍ୟ ଜୀବନର କରୁଣ ଚିତ୍ର ଏହି ଗୀତମାଧ୍ୟରେ ପ୍ରକାଶିତ ହୋଇଥାଏ । ଏହି ରଜଦୋଳି ଗୀତ ବିଶେଷକରି ଜୁଆଙ୍ଗ ଯୁବତୀମାନଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥାଏ । ଏଠାକୁ ପୁରୁଷମାନଙ୍କୁ ଆସିବା ମନା ରହିଥାଏ ।

ରଜପର୍ବ ପାଳନ ଅବସରରେ ଜୁଆଙ୍ଗ ଯୁବକ, ଯୁବତୀମାନେ ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ କରିବା ସାଙ୍ଗକୁ ପ୍ରେମ ସଂପର୍କ ରକ୍ଷା କରିଥାନ୍ତି । ଏହି ଅବସରରେ ଆଦିବାସୀ ଯୁବକଟିଏ ନିଜର ଇପ୍‌ସିତ ଯୁବତୀକୁ ଦୋଳିରୁ ଝିଙ୍କି ନେଇ ତାକୁ ବିବାହ କରିଥାଏ । ଏହି ଅବସରରେ ଜୁଆଙ୍ଗମାନେ ମାଟିରେ ପୁଅ-ଝିଅ ମୂର୍ତ୍ତି ନିର୍ମାଣ କରି ସେମାନଙ୍କ ମଧ୍ୟରେ ବିବାହ ଅନୁଷ୍ଠିତ କରାଇଥାନ୍ତି । ଏହାକୁ 'ରଜ ବିବାହ' କୁହାଯାଏ । ଗ୍ରାମର ନାଗମ୍‌ଙ୍କ ଉପସ୍ଥିତିରେ ଏହି ରଜ ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇଥାଏ ।

# ବାଙ୍ଗୁର୍ ଅବ (ଅଷାଢ଼ି ପର୍ବ)

*(new eating ceremony of **Kusum** fruits)*

ତଥ୍ୟ ସଂଗ୍ରହ ବିବରଣୀ

ଅଧ୍ୟୟନ କ୍ଷେତ୍ର

ଗ୍ରାମ: ଉପରବୈତରଣୀ, ଗ୍ରାମ ପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ

ଅଧ୍ୟୟନ ଦିବସ: ୧୫ ଓ ୧୬ ଜୁନ୍ ୨୦୧୩ (ଦୁଇଦିନ ବ୍ୟାପୀ)

ତଥ୍ୟ ପ୍ରଦାନକାରୀ: ଉପରବୈତରଣୀ ଗ୍ରାମର ରଘୁ ଜୁଆଙ୍ଗ (ନାଗମ୍), ସୁନିଆ ଜୁଆଙ୍ଗ (ପଧାନ), ଲକ୍ଷ୍ମୀଧର ଜୁଆଙ୍ଗ, ଦେଶ ଜୁଆଙ୍ଗ, କିଶୋର ଜୁଆଙ୍ଗ (ଡାଙ୍ଗୁଆ) ଏବଂ ଗୋନାସିକାର ବୀରବର ନାୟକ ।



କୁସୁମ ନୂଆଖିଆ: ପୂଜା ପାଇଁ ଜୁଆଙ୍ଗମାନେ ବାଜା ବଜେଇ ରୋଷଣି କରି ନାଗମ୍‌ଙ୍କ ମଣ୍ଡଘର ନିକଟକୁ ପାଛୋଟି ଆଣୁଛନ୍ତି



▶ କୁସୁମ ନୂଆଖିଆ: ମଣ୍ଡଘରେ ପାଳିତ କିଛି ପୂଜାପଦ୍ଧତି

କୁସୁମ (ବାଙ୍କୁର୍) ଗଛଟି ଜୁଆଙ୍ଗ ଜନଜୀବନ ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ । କୁସୁମ ଗଛଟିକୁ ଜୁଆଙ୍ଗମାନଙ୍କର ବନ୍ଧୁ ବା ମିତ୍ର କହିଲେ ଠିକ୍ ହେବ । ଏହା ଏକ ଦେବବୃକ୍ଷ ଭାବେ ଜୁଆଙ୍ଗ ଅଞ୍ଚଳରେ ବେଶ୍ ପରିଚିତ । କୁସୁମ ବୃକ୍ଷ ଓ ଜୁଆଙ୍ଗ ଜନଜୀବନକୁ ନେଇ ଅନେକ ଲୋକକାହାଣୀ, ପହଳି, ଢଗଢମାଳି ଓ କିମ୍ବଦନ୍ତୀ ରହିଛି । କୁସୁମ ଫଳ, କୁସୁମ ତେଲ, କୁସୁମ ଗଛର ଛାଲି, ଚେର, ପତ୍ର ଜୁଆଙ୍ଗମାନଙ୍କ ପାଇଁ ବେଶ୍ ଉପଯୋଗୀ ସାବ୍ୟସ୍ତ ହୋଇଥାଏ । କୁସୁମ ତେଲ ଜୁଆଙ୍ଗମାନଙ୍କ ପାଇଁ ଏକ ଅବ୍ୟର୍ଥ ଔଷଧ ଭାବେ କାମ କରିଥାଏ । କୁସୁମ ଗଛର ଛାଲି, ଚେର, ଫଳ ଓ ପତ୍ରର ମଧ୍ୟ ଉଚ୍ଚ ମାନର ଔଷଧୀୟ ଗୁଣ ରହିଛି । ଖରାଦିନେ କୁସୁମ ଗଛର ଛାଇ ମଣିଷ ପାଇଁ ବେଶ୍ ଆରାମଦାୟକ ହୋଇଥାଏ । ଅନ୍ୟ ଗଛମାନଙ୍କ ଛାୟା ତୁଳନାରେ କୁସୁମ ଗଛର ଛାୟା ଅଧିକ ଶୀତଳ ଓ ପ୍ରଶାନ୍ତି ପ୍ରଦାୟୀ ହୋଇଥାଏ । ଖରାଦିନେ ପତ୍ରଝଡା ଦେବା ପରେ ନୂତନ ପତ୍ର କଅଁଳୁଥିବାବେଳେ ଲାଲ୍, ନାରଙ୍ଗୀ ରଙ୍ଗର କୁସୁମ ଗଛ ଖୁବ୍ ଆକର୍ଷଣୀୟ ହୋଇଥାଏ । ଖରାଦିନେ ଜଙ୍ଗଲ ମଧ୍ୟରେ କୁସୁମ ଗଛର ଏହି ରଙ୍ଗୀନ୍ ଦୃଶ୍ୟକୁ ଯଦି କେହି କେବେ ଦେଖିଥିବେ ତାହା

ସାରାଜୀବନ ପାଇଁ ସ୍ମରଣୀୟ ହୋଇ ରହିବ ନିଶ୍ଚୟ । ଖରାଦିନେ ପତ୍ରଝଡା ଦେଇଥିବା ଜଙ୍ଗଲ ଓ ଖେଣ୍ଡା ଗଛବୃକ୍ଷ ମଧ୍ୟରେ ରଙ୍ଗୀନ୍ କୁସୁମ ଗଛର ଦୃଶ୍ୟ କୌଣସି ଜଣେ ଚିତ୍ରଶିଳ୍ପୀର କାନ୍ଭାସ୍‌ର ଭ୍ରମ ସୃଷ୍ଟି କରିଥାଏ । 'କୁସୁମ' (ବାଙ୍ଗୁର୍) ଫଳଟି ଜୁଆଙ୍ଗମାନଙ୍କର ଏକ ଅତି ପ୍ରିୟ ଫଳ ଭାବେ ଜଣାଶୁଣା । ସାଧାରଣତଃ ବର୍ଷା ଦିନ ଆରମ୍ଭରେ ଏହି ଫଳ ପାଚେ । ଜଙ୍ଗଲରେ କୁସୁମ ଗଛରେ



▶ କୁସୁମ ନୂଆଖିଆ ପାଳନ ଅବସରରେ ନାଗମ୍. ପଧାନ ପୂଜା ସାମଗ୍ରୀ ଧରି ଗାଁ ଶାଳଘର ନିକଟକୁ ଯାଉଛନ୍ତି । ସାଥୀରେ ଅନ୍ୟ ଜୁଆଙ୍ଗମାନେ ଅନୁସରଣ କରୁଛନ୍ତି ।



▶ **କୁସୁମ ନୂଆଖିଆ: ଗ୍ରାମଶିରିଙ୍କ ନିକଟରେ ଘୁଷୁରିଟିକୁ ପୂଜା କରିବା ପରେ ପିଲାମାନେ କାନ୍ଧରେ ବୋହି ଶସ୍ୟକ୍ଷେତ ଅଭିମୁଖେ ଯାତ୍ରା କରୁଛନ୍ତି**

ନେଛିନେଛି ହୋଇ ଏହି ଫଳ ଝୁଲୁଥିବାର ଦୃଶ୍ୟ ପ୍ରକୃତରେ ମନଲୋଭା । ଜୁନ୍ ମାସ ବେଳକୁ ଏହି ଫଳ ପାଚିଯିବା ପରେ ଜୁଆଙ୍ଗ ଯୁବକ, ଯୁବତୀଙ୍କଠାରୁ ଆରମ୍ଭ କରି ବୃଦ୍ଧ, ବୃଦ୍ଧା, ଛୋଟଛୋଟ ପିଲା ପର୍ଯ୍ୟନ୍ତ ସମସ୍ତ ଜୁଆଙ୍ଗମାନେ ଏହି ଫଳ ଖାଇଥାନ୍ତି । ଜଙ୍ଗଲରେ ବହୁଳ ଭାବରେ କୁସୁମ (ବାଙ୍ଗୁର) ଗଛ ହୋଇଥାଏ ଏବଂ ଜୁଆଙ୍ଗମାନେ ପ୍ରଚୁର ମାତ୍ରାରେ ଏହି ଫଳ ସଂଗ୍ରହ କରିଥାନ୍ତି । ଏହି ଫଳ ବେଶ୍ ରସାଳ ଏବଂ ଅତ୍ୟଧିକ ମିଠା ହୋଇଥାଏ । ଏହି ଫଳ ସବୁଜ ରଙ୍ଗର ହୋଇଥାଏ ଏବଂ ପାଚିଯିବା ପରେ ଏହା ଭିତର ଲାଲ୍ ହୋଇଥାଏ । ଫଳ ଭିତରେ ଧୂସର ରଙ୍ଗର ମଞ୍ଜି ଥାଏ । ଫଳରୁ ରସ ଖାଇବା ପରେ ଏହା ଭିତରେ ଥିବା ମଞ୍ଜିକୁ ଜୁଆଙ୍ଗମାନେ ସଂଗ୍ରହ କରି ସେଥିରୁ 'କୁସୁମ ତେଲ' ପ୍ରସ୍ତୁତ କରିଥା'ନ୍ତି । ଆଣ୍ଠୁଗଣ୍ଠି ବାତଠାରୁ ଆରମ୍ଭ କରି ଥଣ୍ଡା, ସର୍ଦ୍ଦି, କାଶ ଆଦି ନାନା ପ୍ରକାର ରୋଗ ପାଇଁ କୁସୁମ ତେଲ ଏକ ଅବ୍ୟର୍ଥ ଔଷଧ ଭଳି କାମ କରିଥାଏ । ଏହାଛଡା ଜୁଆଙ୍ଗ ଯୁବତୀମାନେ ନିଜର ମୁଣ୍ଡ ଓ ଶରୀରେ କୁସୁମ ତେଲ ଲଗାଇଥା'ନ୍ତି । ଏଣୁ

କୁସୁମ ଫଳ ଓ କୁସୁମ ତେଲକୁ ଜୁଆଙ୍ଗମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଜଙ୍ଗଲଜାତ ଦ୍ରବ୍ୟ ଭାବେ ଗଣାଯାଇଥାଏ ।

ସାଧାରଣତଃ ଜୁଆଙ୍ଗମାନେ ପ୍ରତ୍ୟକ ଶସ୍ୟ, ପନିପରିବା, ଡାଲିଜାତୀୟ ଖାଦ୍ୟକୁ ପ୍ରଥମେ ଦେବଦେବୀ ଓ ନିଜର ପିତୃପୁରୁଷଙ୍କୁ ଅର୍ପଣ କରିବା ପରେ ନିଜେ ଖାଇଥା'ନ୍ତି । ଖାସ୍ ଏହି ଉଦ୍ଦେଶ୍ୟରେ ଜୁଆଙ୍ଗ ସମାଜରେ ଧାନ ନୂଆଖିଆ, ଆମ୍ବ ନୂଆଖିଆ, କୁସୁମ ନୂଆଖିଆ, ରୁମା ପର୍ବ (ବରୁଗୁଡି ନୂଆଖିଆ) ଭଳି ପର୍ବପର୍ବାଣି ପାଳିତ ହୋଇଥାଏ । ତେବେ ପଣସ ଜୁଆଙ୍ଗମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ ହୋଇଥିବାବେଳେ ପଣସ ନୂଆଖିଆ ସଂପର୍କିତ ପର୍ବ ପାଳନ ହୋଇ ନଥାଏ ।

କୁସୁମ ନୂଆଖିଆ (ବାଙ୍ଗୁର୍ ଅବ)କୁ ଅଷାଡି ପର୍ବ ମଧ୍ୟ କୁହାଯାଇଥାଏ । ଆଷାଢ ମାସରେ ଜୁଆଙ୍ଗମାନେ ଅଷାଡି ପର୍ବ ପାଳନ କରିଥାନ୍ତି । ଏହି ପର୍ବରେ ଜୁଆଙ୍ଗମାନେ କୁସୁମ, ଆମ୍ବଷଢ଼ା, ଆମ୍ବୁଲ ଆଦି ଖାଦ୍ୟଦ୍ରବ୍ୟ ଦେବଦେବୀ ଓ ପିତୃପୁରୁଷଙ୍କୁ ଅର୍ପଣ କଲାପରେ ନିଜେ ନୂଆ ଖାଇଥା'ନ୍ତି । କୁସୁମ ନୂଆଖିଆ ବା ଅଷାଡି ପର୍ବ ଏକ କୃଷିଭିତ୍ତିକ ପର୍ବ । ଭଲ ଫସଲ ଓ ବର୍ଷା ଉଦ୍ଦେଶ୍ୟରେ ଏହି



କୁସୁମ ନୂଆଖିଆ: ଛେଦ ପଡିବାକୁ ଥିବା ଘୁଷୁରିଟିକୁ କାଠରେ ବୋହି ପିଲାମାନେ ଶସ୍ୟକ୍ଷେତ ପରିକ୍ରମା କରୁଛନ୍ତି



► କୁସୁମ ନୂଆଖିଆ ପାଳନ ଅବସରରେ ଗାଁ ଶାଳଘର ନିକଟରେ ପୂଜା କାର୍ଯ୍ୟରେ ବ୍ୟସ୍ତ ନାଗମ୍ ଓ ପଧାନ

ପର୍ବ ପାଳନ କରାଯାଇଥାଏ । ଏହି ପର୍ବ ପାଳନ ଅବସରରେ ଜୁଆଙ୍ଗମାନେ ନିଜର ଇଷ୍ଟଦେବତା ଓ ପିତୃପୁରୁଷଙ୍କୁ ସ୍ମରଣ କରିଥାନ୍ତି । ଏହି ପର୍ବ ପାଳନ ପରେପରେ ଚାଷକାମ ଆରମ୍ଭ ହୋଇଥାଏ । ବିଶେଷକରି ପାହାଡିଆ ଉଚ୍ଚ ଭୂମିମାନଙ୍କରେ ଧାନ, ରାଶି, ସୋରିଷ, ମାଣ୍ଡିଆ, କାଙ୍ଗୁ, ଗଙ୍ଗେଇ ଆଦି ଫସଲ ବୁଣାଯାଏ । ଅଷାଡି ପର୍ବ ପାଳନ ପାଇଁ ନିର୍ଦ୍ଦିଷ୍ଟ କିଛି ଦିନ ଧାର୍ଯ୍ୟ ହୋଇ ନଥିଲେ ମଧ୍ୟ ଆଷାଢ ମାସର ଯେକୌଣସି ଦିନରେ ଏହା ପାଳିତ ହୋଇଥାଏ । ଏହି ଅବସରରେ ଗାଁର ଶାଳ (ଗ୍ରାମଦେବୀ), ଗ୍ରାମଶିରିଙ୍କ ନିକଟରେ ଘୁଷୁରି ଓ କୁକୁଡା ବଳି ପଡିଥାଏ । ଏହି ପର୍ବ ପାଳନ ପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ କୁସୁମ କୋଳି, ଆମ୍ବୁଲ, ଆମ୍ବଷଢା ପ୍ରଭୃତି ଭୋଜନ କରନ୍ତି । ଅଷାଢ଼ି ପର୍ବ ପରେ ଧାନ ବେହୁଡା ହୁଏ ।

ଅଷାଢ଼ି ପର୍ବ ଦୁଇ ଦିନ ଧରି ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ବାର ରୁଆ ଏବଂ ଦ୍ୱିତୀୟ ଦିନ ଛେଦ ପକା କାର୍ଯ୍ୟକ୍ରମ ହୋଇଥାଏ ।

**ପ୍ରଥମ ଦିନ (ବାରରୁଆ):** ଅଷାଢ଼ି (କୁସୁମ ନୂଆଖିଆ) ପର୍ବର ପ୍ରଥମ ଦିନ ଗାଁର ପୂଜକ, ମୁଖିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ସକାଳୁ ସ୍ନାନ ଓ ନିତ୍ୟକର୍ମ ସାରି ନିଷ୍ଠାର ସହ ଉପବାସ ରହିଥାନ୍ତି । ଏହାକୁ **'ବାର ରୁଆ'** ବୋଲି କୁହାଯାଏ । ଗାଁ ମୁଖିଆ 'ପଧାନ', ପୂଜକ 'ନାଗମ୍' ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଗାଁର ମଙ୍ଗଳ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଉପବାସ ରହନ୍ତି । ତେବେ ନାଗମ୍ ଓ ପଧାନଙ୍କ ବ୍ୟତୀତ ଅନ୍ୟମାନଙ୍କ ପାଇଁ ଉପବାସ ବାଧ୍ୟତାମୂଳକ ହୋଇ ନଥାଏ । ଗାଁର ପୂଜକ (ନାଗମ୍), ପଧାନ ନୂତନ ବସ୍ତ୍ର ପରିଧାନ କରିଥାନ୍ତି । ନାଗମ୍ ସକାଳୁ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୋଇଯାଏ । ଏହି ଅବସରରେ ଯୁବତୀମାନେ ମଣ୍ଡଘର ଲିପାପୋଛା କରିବା ପରେ ମଣ୍ଡଘର ସାମ୍ନାରେ ଥିବା 'ଗ୍ରାମଶିରି' ଆସ୍ଥାନକୁ ଗୋବର ପାଣିରେ ସଫା କରିବା ସହ ଗ୍ରାମଶିରିଙ୍କ ମୂର୍ତ୍ତି କୁହାଯାଉଥିବା ପଥରଖଣ୍ଡମାନଙ୍କୁ ପାଣିରେ ଧୋଇ ଶୁଦ୍ଧ କରନ୍ତି । ତେଣେ ସ୍ନାନ ସାରିବା ପରେ ନାଗମ୍, ପଧାନ ଓ କାର୍ଜି ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଗ୍ରାମର ଜୁଆଙ୍ଗମାନେ ବାଜା ବଜେଇ ଘୋଷଣି କରି ନାଗମ୍ ଏବଂ ପଧାନଙ୍କୁ



▶ **କୁସୁମ ନୂଆଖିଆ: ଗାଁ ଶାଳଘରେ ପିତୃପୁରୁଷଙ୍କୁ ସମର୍ପଣ ଉଦ୍ଦେଶ୍ୟରେ ଖିରି ପ୍ରସ୍ତୁତ ହେଉଛି**



**କୁସୁମ ନୂଆଖିଆ: ଗାଁ ଶାଳଘରେ ପିତୃପୁରୁଷଙ୍କୁ ସମର୍ପଣ ଉଦ୍ଦେଶ୍ୟରେ ଖି ପ୍ରସ୍ତୁତ ହେଉଛି**

ନିଜନିଜ ଘରୁ ମଣ୍ଡଘର ନିକଟକୁ ପାଛୋଟି ଆଣନ୍ତି । ନାଗମ୍ ଏବଂ ପଧାନ ମଣ୍ଡ ଘରେ ନି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କରନ୍ତି । ଏହାପରେ ନାଗମ୍ ଓ ପଧାନଙ୍କୁ ଗ୍ରାମର ଜୁଆଙ୍ଗମା ବାଜା ବଜେଇ ଗାଁ ମୁଣ୍ଡକୁ ନିଅନ୍ତି । ନାଗମ୍ ସାଥୀରେ ଏକ ବାଉଁଶ ଡାଲାରେ ଡାଳ ଲାଗିଥି କୁସୁମ ଫଳ, ଆମ୍ବଷଢା, ଆମ୍ବଟାକୁଆ ଗୁଣ୍ଡ, ଗୁଆ, ଦୁବଘାସ, ସିନ୍ଦୁର, ହଳଦି, ଅରୁଆ ଚାଉଳ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରିଥା'ନ୍ତି । ଗାଁ ମୁଣ୍ଡରେ ଜୁଆଙ୍ଗମାନେ ଉପସ୍ଥିତ ହୋଇ କୁସୁମ ନୂଆଖି ପର୍ବ ପାଳନ ଅବସରରେ ଦେବଦେବୀଙ୍କୁ ଗୁଆ ପ୍ରଦାନ ପୂର୍ବକ ବରଣ କରିଥା'ନ୍ତି । ନାଗ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଗୁଆ ପ୍ରଦାନ କରି ପରଦିନ ହେବାକୁ ଥିବା ବାଙ୍ଗୁର୍ ପର୍ବ ପ ନିମନ୍ତ୍ରଣ ଜଣାଇବା ସହ ଗ୍ରାମବାସୀଙ୍କୁ ଆଶିର୍ବାଦ ପ୍ରଦାନ ପାଇଁ ପ୍ରାର୍ଥନା କରନ୍ତି । ନାଗମ୍ ଗୁଣୁଗୁ ଉଚ୍ଚାରଣ କରେ- *" ହେ, ଧରମ୍ ଦେବତା, ବସୁମତି ମାତା, ବୈତରଣୀ ପାଟ, ନାଗପ ପିତୃପୁରୁଷଗଣ, ଆସନ୍ତା କାଲି ଆମେ କୁସୁମ ନୂଆ ଖାଉଛୁ, ଆମ୍ବଷଢା, ଆମ୍ବୁଲ ଆଦି ନୂଆ ଖାଇ ତୁମମାନଙ୍କୁ ଆସନ୍ତା କାଲି ପର୍ବ ପାଇଁ ନିମନ୍ତ୍ରଣ ରହିଲା ।"* ଏହାକୁ **'ଗୁଆଲାଗି'** କହନ୍ତି । ଗୁଆଲ

ପରେ ଜୁଆଙ୍ଗମାନେ ପୁନର୍ବାର ମଣ୍ଡଘରକୁ ଫେରନ୍ତି ଏବଂ ଆସନ୍ତାକାଲି ହେବାକୁ ଥିବା ପର୍ବ ପାଳନ ନେଇ ପ୍ରସ୍ତୁତିରେ ଲାଗିପଡନ୍ତି ।

**ଦ୍ୱିତୀୟ ଦିନ:** ନାଗମ୍ ଓ ପଧାନ ସକାଳୁ ସ୍ନାନ ସାରି ନିଜନିଜ ଘରେ ଅପେକ୍ଷା କରିଥାନ୍ତି । ଜୁଆଙ୍ଗ ଯୁବକମାନେ ବାଜାବଜେଇ ଘୋଷଣି କରି ଏମାନଙ୍କୁ ମଣ୍ଡଘର ଓ ଗ୍ରାମଶିରି ନିକଟକୁ ଆଣନ୍ତି । ନାଗମ୍ ଏକ ବାଉଁଶ ଡାଲାରେ କିଛି କୁସୁମ ଫଳ, ଆମ୍ବଷଢା, ଆମ୍ବୁଲ, ଶାଳପତ୍ର, ଶିଆଳିପତ୍ର, ଧୂପ, ଦୀପ, ଅରୁଆ ଚାଉଳ, କ୍ଷୀର, ହଳଦି, ସିନ୍ଦୁର ଆଦି ପୂଜା ସାମଗ୍ରୀ ପ୍ରସ୍ତୁତ କରି ମଣ୍ଡଘରେ ହାଜର ହୁଅନ୍ତି । ପଧାନ ନିଜ ଘରୁ ପାଟଖଣ୍ଡା ଧରି ଗାଁ ଶାଳକୁ ଯିବାକୁ ପ୍ରସ୍ତୁତ ହୁଅନ୍ତି । ସୂଚନାଯୋଗ୍ୟ, ଏହି ପାଟଖଣ୍ଡା ସହାୟତାରେ ଗାଁ ଶାଳ ନିକଟରେ ଘୁଷୁରି ଛେଦ ପଡିଥାଏ । ମଣ୍ଡଘରେ ନାଗମ୍ ଓ ପଧାନ ପହଞ୍ଚି ଯଥାବିଧି ପୂଜା କାର୍ଯ୍ୟ ସମାପନ କରନ୍ତି । ନାଗମ୍ ଅରୁଆ ଚାଉଳ ଗୁଣ୍ଡ ଓ ହଳଦି ଗୁଣ୍ଡରେ ମୁରୁଜ ବୁଣି କୋଠି କାଟନ୍ତି । ଏହାପରେ ଅରୁଆଚାଉଳ, କ୍ଷୀର, ଗୁଡ ଚକଟି ଏହାର ମିଶ୍ରଣ ସମେତ ନୂଆ କୁସୁମ ଫଳ, ଆମ୍ବଷଢା, ଆମ୍ବୁଲ ଆଦିକୁ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସମର୍ପଣ



▶ କୁସୁମ ନୂଆଖିଆ ପାଳନ ଅବସରରେ ନାଗମ୍, ପଧାନ ଗାଁ ଶାଳରେ ଜୁହି ପକାଉଛନ୍ତି ଅର୍ଥାତ୍ ଦେବଦେବୀଙ୍କ ଉଦ୍ଦେଶ୍ୟରେ ମଦ ଅର୍ପଣ କରୁଛନ୍ତି



➤ କୁସୁମ ନୂଆଖିଆ: ଛେଦ ପଡିବା ପୂର୍ବରୁ ଘୁଷୁରିଟିକୁ ନୈବେଦ୍ୟ ଅରୁଆ ଚାଉଳ ଖୁଆଯାଉଛି

କରନ୍ତି । ଏଠାରେ ଏକ ଛୋଟ କୁକୁଡା ଛୁଆ ଛେଦ ପଡିଥାଏ । ମଣ୍ଡଘରେ ପୂଜାକାମ ଶେଷହେଲା ପରେ ନାଗମ୍, ପଧାନ ଓ ବାରଭାଇମାନେ ଗ୍ରାମ ନିକଟସ୍ଥ **'ଶାଳଘର' (ଉପରବୈତରଣୀ ଗ୍ରାମର ଶାଳଘରର ନାମ ବୈତରଣୀଶାଳ)**କୁ ଯାଆନ୍ତି । ଗ୍ରାମଶିରିଙ୍କ ନିକଟରୁ ଶାଳ ପର୍ଯ୍ୟନ୍ତ ଜୁଆଙ୍ଗମାନେ ପଧାନ, ନାଗମ୍‌ଙ୍କୁ ବାଜା ବଜେଇ ରୋଷଣି କରି ନେଇଥାନ୍ତି । ଶାଳ ନିକଟରେ ପହଞ୍ଚିବାପରେ ସେଠାରେ ରୀତିନୀତି ମୁତାବକ ପୂଜାକାର୍ଯ୍ୟ କରାଯାଇଥାଏ । ନାଗମ୍, ପଧାନ ଓ ବାରଭାଇ ପୂଜା ସାମଗ୍ରୀ ଧରି ମଣ୍ଡଘରୁ ଗାଁ ଶାଳ ନିକଟକୁ ବାହାରିବା ବେଳେ ଗ୍ରାମର କିଛି ଯୁବକ ଏକ କାଠଦଣ୍ଡ ସହାୟତାରେ ଗୋଟିଏ ଘୁଷୁରିର ଚାରି ଗୋଡକୁ ବାନ୍ଧି ବୋହି ବୋହି ନିଜର ଚାଷ ଜମି (ଏକାନ୍, କମାଣ୍ କିମ୍ବା ତଇଳା) ଆଡକୁ ନିଅନ୍ତି । ଯୁବକମାନେ ଏହି ଘୁଷୁରିକୁ କାନ୍ଧରେ ବୋହିବୋହି ନିଜର ଚାଷଜମି ଚତୁର୍ପାର୍ଶ୍ୱ ପରିକ୍ରମା କରନ୍ତି । ଏହି ପରିକ୍ରମା ଦୀର୍ଘ ସମୟ ନେଇଥାଏ । ପ୍ରତ୍ୟେକ ଜୁଆଙ୍ଗ ପରିବାରର ଚାଷଜମି ଉପରେ ଏହି ଘୁଷୁରିକୁ ବୁଲାଇବା ବାଧ୍ୟତାମୂଳକ ହୋଇଥାଏ । ଏହାକଲେ

ଭଲ ଫସଲ ହେବ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଏହି ପର୍ବରେ ଅତିକମ୍‌ରେ ଗୋଟିଏ ଘୁଷୁରି ଛେଦ ପଡିଥାଏ । ସ୍ଥଳ ବିଶେଷରେ ଗୋଟିଏ କିମ୍ବା ଦୁଇଟି ଏମିତିକି ତିନୋଟି ଘୁଷୁରି ମଧ୍ୟ ଛେଦ ପଡିଥାଏ । ଅର୍ଥ ଅଭାବରୁ ଉପରବୈତରଣୀ ଗ୍ରାମରେ ଗୋଟିଏ ଘୁଷୁରି ଛେଦ ପାଇଁ ପ୍ରସ୍ତୁତି କରାଯାଇଥିଲା । କିନ୍ତୁ ଅନ୍ୟ ଗ୍ରାମମାନଙ୍କରେ ଯେଉଁମାନଙ୍କର 'ଗ୍ରାମ ପାଣ୍ଠି' ଅଧିକ ସମୃଦ୍ଧ ସେହି ଗ୍ରାମମାନଙ୍କରେ ଅଷାଢ଼ି ପର୍ବ (ବାଙ୍ଗୁର୍ ଅବ) ପାଳନ ବେଳେ ଦୁଇଟି କିମ୍ବା ତିନୋଟି ଘୁଷୁରି ଛେଦ ପଡିଥାଏ ।

ଅଷାଡି ପର୍ବ ପାଳନ ଅବସରରେ ଉପରବୈତରଣୀ ଗ୍ରାମରେ ଦୁଇ ଜଣ ବାଳକ ଗୋଟିଏ ଛୋଟ ଘୁଷୁରିକୁ କାନ୍ଧରେ ବୋହି ସମଗ୍ର ଚାଷ ଜମି (ପୋଡ଼ାଡିଆ ଉଚ୍ଚ ଭୂମି/ ଡଇଳା)ରେ ବୁଲିବାର ଦୃଶ୍ୟ ଥିଲା ଭିନ୍ନ ଅନୁଭୂତି । ଏହି ଦୁଇ ଜଣ ବାଳକ ଘୁଷୁରିକୁ ସମସ୍ତ ଚାଷଜମି ଉପରେ ବୁଲାଇ ଆଣି ଶେଷରେ ବୈତରଣୀ ଶାଳ ନିକଟରେ ପହଞ୍ଚିଥିଲେ । ଘୁଷୁରିକୁ କାନ୍ଧରେ ବୋହି ଚାଷଜମି ଚତୁର୍ପାର୍ଶ୍ୱରେ ବୁଲିଲାବେଳେ ଯୁବକମାନେ ନିଜନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ସ୍ମରଣ କରନ୍ତି ।



▶ ଘୁଷୁରିର ଜିଭ କାଟି ଦେବତାଙ୍କୁ ଅର୍ପଣ ପରେ ନାଗମ୍ ଘୁଷୁରିଟିକୁ ସମର୍ପଣ କରୁଛନ୍ତି



▶ କୁସୁମ ନୂଆଖିଆ: ଦେବଦେବୀଙ୍କୁ ଅର୍ପଣ ଉଦ୍ଦେଶ୍ୟରେ ନାଗମ୍ ଓ ପଧାନ ଘୁଷୁରିଟିର ଜିଭକୁ ଏକ ଟାଙ୍ଗିଆ ସହାୟତାରେ କାଟୁଛନ୍ତି

ଚଳିତ ବର୍ଷ ଜମିରେ ଭଲ ଫସଲ ହେଉ, ଭଲ ବର୍ଷା ହେଉ, ରୋଗପୋକ ନ ଲାଗନ୍ତୁ ଏବଂ ଗ୍ରାମର ଶିଶୁମାନେ ରୋଗବଇରାଗରୁ ମୁକ୍ତ ରହନ୍ତୁ ବୋଲି ଜୁଆଙ୍ଗମାନେ ପ୍ରାର୍ଥନା କରନ୍ତି । ଏପଟେ ନାଗମ୍, ପଧାନ ଓ ଜୁଆଙ୍ଗ ବାରଭାଇ ପୂଜାସାମଗ୍ରୀ ଓ ଭୋଗରାଗ ଧରି ଗାଁ ଶାଳ ନିକଟରେ ପହଞ୍ଚିଲାବେଳକୁ ସେପଟେ ବାଳକମାନେ ଘୁଷୁରିକୁ ବିଲବାଡି ଓ ଚାଷଜମିରେ ବୁଲାଇ ଆଣି ଗ୍ରାମଶାଳ ନିକଟରେ ହାଜର ହୁଅନ୍ତି ।

ନାଗମ୍ ଓ ପଧାନ ଗ୍ରାମ ଶାଳ ନିକଟରେ ପହଞ୍ଚିବା ପରେ ପୂଜା କାର୍ଯ୍ୟର ପ୍ରସ୍ତୁତି କରନ୍ତି । ଶାଳଘର ପରିସରରେ ପୂର୍ବରୁ ଏକ ଚୂଲି ଥାଏ । ନାଗମ୍, ପଧାନ ଛୋଟଛୋଟ ଶୁଖିଲା ଶାଳକାଠ ସଂଗ୍ରହ କରନ୍ତି । ବୈତରଣୀଶାଳରେ ଥିବା କରଞ୍ଜ ଗଛ କୋରଡରେ ପୂର୍ବରୁ ଏକ ଛୋଟ ମାଟିହାଣ୍ଡି (ବଢା) ଥାଏ । ସୂଚନାଯୋଗ୍ୟ, ପୂର୍ବରୁ ଏହି ବଢାଟିକୁ 'ମାଘପୋଡି' ପର୍ବ ପାଳନ ସମୟରେ ଗଛର କୋରଡରେ ଶିଆଳିପତ୍ରରେ ଗୁଡେଇ ରଖାଯାଇଥାଏ ।

ପଧାନ ଗଛ କୋରଡରୁ ମାଟିହାଣ୍ଡି (ବଢା)କୁ ବାହାର କରି ସେଥିରେ ନିଜ ସାଥୀରେ ନେଇଥିବା

ଗାଈ ଦୁଧକୁ ଭର୍ତ୍ତି କରି ଶାଳରେ ଥିବା ଚୁଲିରେ ବସାନ୍ତି । ଏହି ମାଟି ହାଣ୍ଡିରେ ପାଣି ଓ ଅରୁଆ ଚାଉଳ ପକେଇ ପଧାନ, ନାଗମ୍ ସାତ ଫୁଟଣା କରନ୍ତି । ଏହି ସାତ ଫୁଟଣା ସମୟରେ ଯେଭଳି ପେଜ ଉତୁରି ତଳେ ନ ପଡେ, ସେଥିପ୍ରତି ଧ୍ୟାନ ଦେବାକୁ ପଡିଥାଏ । ପେଜ ଉତୁରି ଭୂମି ଉପରେ ପଡିଗଲେ ଗାଁ ପ୍ରତି ଅମଙ୍ଗଳ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ସାତଥର ଫୁଟିବା ପରେ ମାଟି ହାଣ୍ଡିକୁ ତଳକୁ ଓହ୍ଲାଇ ରୋଷେଇ ହୋଇଥିବା **'ଭାତ'**କୁ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଆତ୍ମା ଉଦ୍ଦେଶ୍ୟରେ ବାଢନ୍ତି । ଏଠାରେ ପିତୃପୁରୁଷଙ୍କୁ ଭାତ ପିଣ୍ଡଦାନ କରାଯାଏ । ଶାଳଘରେ ଭାତଖିଆ ପୂଜା ସମୟରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରାଯାଇଥାଏ । ଏହି ସମୟରେ ଗ୍ରାମର ବାଳକମାନେ କାନ୍ଧରେ ବୋହି ବୋହି ନେଇଥିବା ଘୁଷୁରିକୁ ପୂଜା ସ୍ଥଳରେ ହାଜର କରାଯାଏ । ପ୍ରଥମେ ଘୁଷୁରି ମୁଣ୍ଡରେ ସିନ୍ଦୁର ଲଗାଇ ତାକୁ ପୂଜାସ୍ଥଳରେ ଥିବା ଅରୁଆ ଚାଉଳ (ଆକତା) ଖାଇବାକୁ ଦିଆଯାଏ । ଘୁଷୁରିଟି ଅରୁଆ ଚାଉଳ ଆପେଆପେ ଖାଇଦେଲେ ସବୁ ମଙ୍ଗଳ ବୋଲି ନାଗମ୍ ଘୋଷଣା କରିଥାଏ । ଯଦି ଘୁଷୁରି ଅରୁଆ



▶ କୁସୁମ ନୂଆଖିଆ: ଗାଁ ଶାଳରେ ପୂଜା କାର୍ଯ୍ୟକ୍ରମ ଚାଲିଥିବାବେଳେ ଜୁଆଙ୍ଗମାନଙ୍କ ଗହଣରେ ଲେଖକ



▶ **ଜୁସୁମ ନୂଆଖିଆ ପାଳନ ଅବସରରେ ନାଗମ୍, ପଧାନ ଗାଁ ଶାଳରେ ଜୁରି ପକାଉଛନ୍ତି ଅର୍ଥାତ୍ ଦେବଦେବୀଙ୍କ ଉଦ୍ଦେଶ୍ୟରେ ମଦ ଅର୍ପଣ କରୁଛନ୍ତି**

ଚାଉଳ ନଖାଏ ତେବେ ଗ୍ରାମପ୍ରତି ବିପଦ ବୋଲି ନାଗମ୍ ପ୍ରକାଶ କରେ । ତେବେ ଯେପର୍ଯ୍ୟନ୍ତ ଘୁଷୁରିଟି ଅରୁଆ ଚାଉଳ ନଖାଏ ସେ ପର୍ଯ୍ୟନ୍ତ ସମସ୍ତ ଜୁଆଙ୍ଗ ସେହି ଘୁଷୁରିଟିକୁ ଅନୁନୟ ବିନୟ ହୋଇ ବିକଳ ଭାବେ ଚାଉଳ ଖାଇବାକୁ ପ୍ରାର୍ଥନା କରନ୍ତି । ଦେବଦେବୀଙ୍କୁ ସ୍ମରଣ କରନ୍ତି । ନିଜନିଜର ଦୋଷତ୍ରୁଟି ଯୋଗୁଁ ଦେବଦେବୀଙ୍କୁ କ୍ଷମାପ୍ରାର୍ଥନା କରନ୍ତି । ଘୁଷୁରି ଅରୁଆ ଚାଉଳ ଖାଇବା ପରେ ତାକୁ ଛେଦ ପକାଇବା ପାଇଁ ପ୍ରସ୍ତୁତ କରାଯାଏ । ପ୍ରଥମେ ପଧାନ ଓ ନାଗମ୍ ଘୁଷୁରିଟିକୁ ମାଡି ଧରି ତା' ପାଟିକୁ ମେଲା କରି ତାର ଜିଭକୁ କାଟି ଦେବତାଙ୍କୁ ଅର୍ପଣ କରନ୍ତି । ଏହାପରେ ପଧାନ ଘୁଷୁରିକୁ ପାଟଖଣ୍ଡାରେ କାଟି ମୁଣ୍ଡଗଣ୍ଡିକୁ ଅଲଗା କରିଦିଅନ୍ତି । ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମଦ ଅର୍ପଣ କରିବା ପରେ ନାଗମ୍, ପଧାନଙ୍କ ସମେତ ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ଭୋଗ ଲାଗି ହୋଇଥିବା ମଦକୁ ପାନ କରିଥାନ୍ତି । ଏହାକୁ 'ଜୁରି ପକା' ବୋଲି କୁହାଯାଏ । ଏହାପରେ ସମସ୍ତେ ମଣ୍ଡଘରକୁ ଫେରି ମଣ୍ଡଘରେ ଗଛିତ ଥିବା ମଦ ପିଇ

ତାଙ୍କୁ ନୃତ୍ୟଗୀତରେ ମଜ୍ଜି ଯାଆନ୍ତି । ଏହି ଚାଙ୍ଗୁ ନାଚ, ଗୀତ ଦୀର୍ଘ ସମୟ ଧରି ଚାଲେ ।

ମଣ୍ଡଘରକୁ ଫେରିବା ପରେ ଜୁଆଙ୍ଗ ଯୁବକମାନେ ବୟସ୍କମାନଙ୍କୁ କୁସୁମ କୋଳି, ଆମ୍ବୁଲ, ଆମ୍ବଷଢା ପ୍ରଦାନ କରନ୍ତି । ଯଦି ଯୁବକମାନେ ଆମ୍ବୁଲ କିମ୍ବା ଆମ୍ବଷଢା ପ୍ରସ୍ତୁତ କରି ନଥିବେ ତେବେ ତାଙ୍କର ଏଭଳି ତ୍ରୁଟି ପାଇଁ ସେମାନଙ୍କଠାରୁ ଅଧିକ ପରିମାଣରେ ଜୋରିମାନା ଆଦାୟ କରାଯାଏ । ଏହି ଜୋରିମାନା ଅର୍ଥରେ ବୟସ୍କ ଜୁଆଙ୍ଗମାନେ ମହୁଲି କିଣି ମଣ୍ଡଘରେ ସମୂହ ପାନ କରନ୍ତି । ଏହାକୁ ସମୂହ ଜୁରିପକା ବୋଲି କୁହାଯାଏ । ଏହାପରେ କଟାଯାଇଥିବା ଘୁଷୁରିରୁ ଟୁକୁରା ମାଂସ ପ୍ରସ୍ତୁତ କରାଯାଏ । ଏହି କଟା ମାଂସକୁ ଶାଳ ପତ୍ରରେ ଭାଗଭାଗ କରି ପ୍ରତ୍ୟେକ ଜୁଆଙ୍ଗ ପରିବାରରେ ବଣ୍ଟନ କରାଯାଏ । ମାଂସର ପରିମାଣ କମ୍ ହୋଇଥିଲେ ଜୁଆଙ୍ଗମାନେ ଏହାକୁ ପୋଡି ଖାଇ ଦେଇଥାନ୍ତି । ଯଦି ଦୁଇଟି କିମ୍ବା ତିନୋଟି ଘୁଷୁରି କଟାଯାଇଥାଏ, ସେଭଳି ସ୍ଥଳେ ମାଂସର ଭାଗ



▶ କୁସୁମ ନୂଆଖିଆ: ପିଲାମାନେ ଘୁଷୁରିକୁ କାନ୍ଧରେ ବୋହି ନିଜନିଜର ଏକାନ୍, କମାଣ୍ (ଚାଷ କ୍ଷେତ) ପରିକ୍ରମା କରି ଗାଁ ଶାଳରେ ହାଜର ହେଉଛନ୍ତି

ଡୁଆଙ୍ଗ ପୂଜକ (ନାଗମ୍) ସାଥୀରେ ଲେଖକ



କୁସୁମ ନୂଆଖିଆ ପାଳନ ଅବସରରେ ଗାଁ ଶାଳଘର ନିକଟରେ ପୂଜା କାର୍ଯ୍ୟରେ ବ୍ୟସ୍ତ ନାଗମ୍

ଅଧିକ ହୋଇଥାଏ । ଏହି ମାଂସକୁ ନେଇ ଜୁଆଙ୍ଗମାନେ ନିଜନିଜ ଘରେ ରୋଷେଇ ପ୍ରସ୍ତୁତ କରନ୍ତି । ବାଙ୍ଗୁର୍ ପର୍ବ ପାଳନ ହୋଇଯିବା ପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ କୁସୁମ, ଆମ୍ବୁଲ, ଆମ୍ବଷଢା ଖାଇବା ଆରଂଭ କରନ୍ତି । ଅଷାଢ଼ି ପର୍ବରେ ଜୁଆଙ୍ଗମାନେ ଚାଙ୍ଗୁ ବଜାଇ ନଥା'ନ୍ତି । ବିଲବାଡିରେ ଚାଷ କାମ ଆରଂଭ ହୋଇଯାଇଥିବାରୁ ଜୁଆଙ୍ଗମାନଙ୍କୁ ଚାଙ୍ଗୁ ମାଡ କରିବା ମନା ହୋଇଥାଏ ।

## ପିଢ ପୂଜା

*(worship of pirh deities for protection of toila)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ବାର୍ହାଗଡ଼, ଗ୍ରାମ ପଞ୍ଚାୟତ: ବାର୍ହାଗଡ, ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ:**

**ତଥ୍ୟ ପ୍ରଦାନକାରୀ: ବାର୍ହାଗଡ଼ ଗ୍ରାମର ଶ୍ରୀଧର ଜୁଆଙ୍ଗ, କୈଳାସ ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ, ସନାତନ ଜୁଆଙ୍ଗ, ଶଇଳ ଜୁଆଙ୍ଗ, ବାରିକ ଜୁଆଙ୍ଗ, ସାଗର ଜୁଆଙ୍ଗ, ରାଜ ଜୁଆଙ୍ଗ, ହୃଷି ଜୁଆଙ୍ଗ ଓ ବୀରବର ନାୟକ (ଗୋନାସିକା) ।**

ପ୍ରାୟ ଜୁଲାଇ-ଅଗଷ୍ଟ ମାସ ବେଳକୁ ଏହି ପର୍ବ ପାଳନ କରାଯାଇଥାଏ । ଫସଲ ଭଲ ଅମଳ ହେବା ଏବଂ ତଇଳାଭୂମିରେ ଫସଲର ସୁରକ୍ଷା ନିମନ୍ତେ ଜୁଆଙ୍ଗମାନେ ପିଢ ପୂଜା କରିଥା'ନ୍ତି । **ଏକାନ୍** (ଚାଷଜମି)ରେ ଫସଲ ପାଚିଗଲା ପରେ ଏହାର ସୁରକ୍ଷା ନିମନ୍ତେ ଜୁଆଙ୍ଗମାନେ ଅଧିକ ଚିନ୍ତିତ ହୋଇପଡନ୍ତି । ଜୁଆଙ୍ଗମାନଙ୍କର ଚାଷଜମି ନିଜ ବାସଗୃହ ଏବଂ ଗ୍ରାମଠାରୁ ଖୁବ୍ ଦୂରରେ ହୋଇଥିବାରୁ ବାର୍ହା, ଭାଲୁ, ହାତୀ ଭଳି ବନ୍ୟ ପଶୁ ଏବଂ ନାନା ପ୍ରକାର ପାପ ଆତ୍ମାମାନଙ୍କ କବଳରୁ ଫସଲକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ପିଢ ପୂଜା କରିଥା'ନ୍ତି । ବିଶେଷକରି, ମୂଷା ଓ ହାତୀମାନେ କିଭଳି ଫସଲ ନ ଖାଇବେ ସେଥିନେଇ ଜୁଆଙ୍ଗମାନେ ଏହି ପୂଜା କରିଥା'ନ୍ତି । ଏହି ପୂଜାଟି ଏକାନ୍ (ଚାଷଜମି)ରେ ହୋଇଥାଏ ।

ପିଢପୂଜା ଗୋଟିଏ ଦିନ ପାଳିତ ହୋଇଥାଏ । ପିଢପୂଜା ସାଧାରଣତଃ ରାଉଳିଆମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ । ତେବେ ଯେଉଁ ଗାଁର ନାଗମ୍ (ପୂଜକ) ରାଉଳିଆ (ମନ୍ତ୍ରତନ୍ତ୍ର) କାମ

ଜାଣିଥା'ନ୍ତି, ସେମାନେ ଏହି ପୂଜା କରିଥା'ନ୍ତି । ଯେଉଁ ନାଗମ୍‌ମାନେ ରାଉଳିଆ କାମ ଜାଣି ନଥା'ନ୍ତି ସେମାନେ ଏହି ପୂଜାକାର୍ଯ୍ୟ କରିନ'ଥାନ୍ତି । ଏ କ୍ଷେତ୍ରରେ ଅନ୍ୟଗ୍ରାମରୁ ସ୍ୱତନ୍ତ୍ର ଭାବେ ରାଉଳିଆଙ୍କୁ ନିମନ୍ତ୍ରଣ କରି ଅଣାଯାଇଥାଏ । ଅନ୍ୟ ପର୍ବମାନଙ୍କ ଭଳି ଏହି ପର୍ବ ପାଳନ ଦିନ ରାଉଳିଆ କିମ୍ବା ନାଗମ୍‌ଙ୍କୁ ବାଜା ବଜେଇ ଘୋଷଣି କରି ଏକାନ୍‌ ପର୍ଯ୍ୟନ୍ତ ନିଆଯାଏ । ରାଉଳିଆ ଏକ ଡାଲାରେ ଧୂପ, ଦୀପ, ଅରୁଆ ଚାଉଳ, ସିନ୍ଦୁର, ହଳଦି, ଶିଆଳିପତ୍ର, ଗୁଡ, କ୍ଷୀର, କଦଳୀ ଏବଂ ଅନ୍ୟାନ୍ୟ ପୂଜା ସାମଗ୍ରୀ ସାଥୀରେ ଧରି ନେଇଥା'ନ୍ତି ।

ରାଉଳିଆ ଏକାନ୍‌ରେ ପହଞ୍ଚି ନିଜର ମନ୍ତ୍ରତନ୍ତ୍ର ବିଦ୍ୟାର ପ୍ରୟୋଗ କରନ୍ତି । ସାଥୀରେ ଗାଁରୁ ଡାଲାରେ ଧରିନେଇଥିବା ଧାନକୁ ରାଉଳିଆ ମନ୍ତ୍ରପାଠ କରି ଦୁଇ ଜଣ ଜୁଆଙ୍ଗଙ୍କ ହାତରେ ଦୁଇମୁଠା ମନ୍ତୁରା ଧାନ ପ୍ରଦାନ କରନ୍ତି । ଏହି ଦୁଇଜଣ ଜୁଆଙ୍ଗ ନିଜ ହାତମୁଠାରେ ମନ୍ତୁରା ଧାନ ଧରି ଏକାନ୍‌ର କଡେକଡେ ବୁଣିବୁଣି ଚାଲନ୍ତି । ମନ୍ତୁରା ଧାନକୁ ଏକାନ୍‌ର ଚତୁର୍ପାର୍ଶ୍ୱରେ ବୁଣିବୁଣି ଏ ଦୁହେଁ ଶେଷରେ ଯେଉଁ ସ୍ଥାନରେ ପୂଜା କାର୍ଯ୍ୟ ହେଉଥାଏ ସେଠାରେ ମିଳିତ ହୁଅନ୍ତି । ସେହିଠାରେ ହିଁ ଅନ୍ୟ ସମସ୍ତ ପୂଜାକାର୍ଯ୍ୟ ସଂପନ୍ନ ହୋଇଥାଏ । ବାର୍ହାଗଡର ଶ୍ରୀଧର ଜୁଆଙ୍ଗଙ୍କ କହିବା ଅନୁଯାୟୀ ରାଉଳିଆ ଏମିତି ମନ୍ତ୍ରତନ୍ତ୍ର ସାଧନା କରିଦିଅନ୍ତି ଯେ, ହାତୀ ଫସଲ କିଆରିକୁ ଆସିଲେ ମଧ୍ୟ ଧାନ ନଖାଇ ଫେରି ଯାଆନ୍ତି । ସେମାନଙ୍କୁ ଧାନ ପିତା ଲାଗେ ଏବଂ ଖାଇବାକୁ ଆଦୌ ଇଚ୍ଛା ହୁଏନାହିଁ । ସେହିଭଳି ବାର୍ହା କିମ୍ବା ମୂଷାମାନେ ମଧ୍ୟ ପିତା ଲାଗିବା କାରଣରୁ ଧାନ ଖାଆନ୍ତି ନାହିଁ । ଏହା ସହିତ ଏକାନ୍‌ର ଚାରିକଡେ ବୁଣାଯାଇଥିବା ଏହି ମନ୍ତୁରା ଧାନକୁ ଡେଇଁ ହାତୀ, ବାର୍ହା କିମ୍ବା ମୂଷାମାନେ ଧାନ କ୍ଷେତ ମଧ୍ୟକୁ ପ୍ରବେଶ କରି ପାରନ୍ତି ନାହିଁ । ଏବେ ଏହି ପୂଜାରେ ଅନିୟମିତତା ହେଉଥିବା କାରଣରୁ ହାତୀମାନେ ଗାଁକୁ ପଶି ଫସଲ ନଷ୍ଟ କରୁଛନ୍ତି ବୋଲି ଶ୍ରୀଧର ଜୁଆଙ୍ଗ ଆମକୁ ସୂଚନା ପ୍ରଦାନ କରିଥିଲେ ।

ପୂଜା କାର୍ଯ୍ୟରେ ରାଉଳିଆଙ୍କୁ ପଧାନ ଓ ଡାଙ୍ଗୁଆ ସହାୟତା କରିଥା'ନ୍ତି । ଫସଲକୁ ପାପ ଆତ୍ମା ଏବଂ ଅନ୍ୟ ବନ୍ୟପଶୁପକ୍ଷୀଙ୍କ କବଳରୁ ଉଦ୍ଧାର କରିବାକୁ ରାଉଳିଆ ମନ୍ତ୍ର ସାଧନା କରନ୍ତି । ଗାଁର ନାଗମ୍ ଓ ପଧାନ ଧରମ୍ ଦେବତା, ବସୁମତି ମାତା, ଗ୍ରାମଶିରି ଏବଂ ପିତୃପୁରୁଷଙ୍କୁ ଆବାହନ କରନ୍ତି । ଏହି ଅବସରରେ ଏକାନ୍‌ରେ ବହୁ ସଂଖ୍ୟାରେ କୁକୁଡା ଛେଦ ପଡିଥାଏ । ରାଉଳିଆ ବଳି ପଡିବାକୁ ଥିବା କୁକୁଡାଙ୍କୁ ପ୍ରଥମେ ଅକତା (ଅରୁଆ ଚାଉଳ) ଖୁଆନ୍ତି । ସମସ୍ତ କୁକୁଡା ଅରୁଆ ଚାଉଳ ଖାଇବା ପରେ ସେମାନଙ୍କୁ ଛେଦ ପକାଯାଇଥାଏ । ଛେଦ ପଡିଥିବା କୁକୁଡାଙ୍କ ରକ୍ତକୁ ବସୁମତି ମାତା (ମାଟି ମା')ଙ୍କୁ ଅର୍ପଣ କରାଯାଏ । ଏହା କରାଗଲେ ଆସନ୍ତା ବର୍ଷ ମାଟି ମା' ଭଲ ଫସଲ ଫଳେଇବେ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ପୂଜା କାର୍ଯ୍ୟ ଶେଷ ହୋଇଗଲେ ଛେଦ ପଡିଥିବା ସମସ୍ତ କୁକୁଡାକୁ କଟାଯାଇ ମାଂସ ପ୍ରସ୍ତୁତ କରାଯାଏ । ଏହାପରେ ସେହି ଏକାନ୍ (ଚାଷ ଜମି)ରେ ରୋଷେଇ ହୁଏ । ସମସ୍ତ ଜୁଆଙ୍ଗ ସେଠାରେ ଏକତ୍ର ଭୋଜନ କରି ହାଣ୍ଡିଆ, ମହୁଲି ପିଇ ମାତାଲ୍ ହୋଇ ପଡନ୍ତି । ନାଚଗୀତ କରିବା ପରେ ସନ୍ଧ୍ୟାବେଳକୁ ଜୁଆଙ୍ଗମାନେ ଗାଁକୁ ଫେରନ୍ତି ।

ଅତୀତରେ ପିଢପୂଜା ସମୟରେ ରାଉଳିଆ କିମ୍ବା ନାଗମ୍ ଦେବଦେବୀଙ୍କ ଉଦ୍ଦେଶ୍ୟରେ ନିଜର ଅଙ୍ଗ ଦାନ କରୁଥିଲେ । ସେମାନେ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ନିଜର ହାତ, ଗୋଡ, ଜିଭ, ନାକ, କାନ କିମ୍ବା ଚକ୍ଷୁ ଭଳି ଯେକୌଣସି ଅଙ୍ଗ ଦାନ କରୁଥିଲେ । ମାତ୍ର, ବର୍ତ୍ତମାନ ଏହି ବ୍ୟବସ୍ଥା ଆଉ ନାହିଁ । ଏଭଳି ଏକ ଜଘନ୍ୟ ଓ ମର୍ମନ୍ତୁଦ ପୂଜାବିଧିରେ ଏବେ ବହୁ ପରିବର୍ତ୍ତନ ସମ୍ଭବ ହୋଇଛି । ତଥାପି କେବେକେବେ ପୂଜା ସମୟରେ ଜୁଆଙ୍ଗମାନେ ଦେବଦେବୀଙ୍କୁ ଅଙ୍ଗଦାନ କରୁଛନ୍ତି ।

## ଗହ୍ମା ପୂର୍ଣ୍ଣିମା

*(worship of cattle)*



ଗହ୍ମାପୂର୍ଣ୍ଣିମା ଅବସରରେ ଜୁଆଙ୍ଗମାନେ ମଣ୍ଡଘରେ କୁକୁଡା ଭୋଜି କରୁଛନ୍ତି



▶ ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗ ବୃଦ୍ଧଟିଏ ସଳଙ୍ଗ ହାର ପ୍ରସ୍ତୁତ କରୁଛନ୍ତି



▶ ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗଟିଏ ନିଜ ଗୁହାଳରେ ଗୋରୁଙ୍କୁ ପୂଜା କରୁଛି

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

ଗ୍ରାମ: ଉପରରଡୁଆଁ

ଗ୍ରାମ ପଞ୍ଚାୟତ: ତଳଚଂପେଇ

ବ୍ଳକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।

ଅଧ୍ୟୟନ ଦିବସ: ୨୦, ଅଗଷ୍ଟ ୨୦୧୩

ତଥ୍ୟ ପ୍ରଦାନକାରୀ: ଉପରରଡୁଆଁ ଗ୍ରାମର ପରବାସିଆ ଜୁଆଙ୍ଗ (ପଧାନ), ମଣିଆ ଜୁଆଙ୍ଗ (ନାଗମ୍), ନାରଦ ଜୁଆଙ୍ଗ (କାର୍ଜି), ଗୋବିନ୍ଦ ଜୁଆଙ୍ଗ, ବଙ୍ଗାଳି ଜୁଆଙ୍ଗ, ବେନୁ ଜୁଆଙ୍ଗ ଏବଂ ପ୍ରାଣବଲ୍ଲଭ ଘଣା ।

ଶ୍ରାବଣ ପୂର୍ଣ୍ଣିମାକୁ ଗହ୍ମା ପୂର୍ଣ୍ଣିମା ବୋଲି କୁହାଯାଇଥାଏ । ଏହା ହିନ୍ଦୁମାନଙ୍କର ଏକ ପ୍ରମୁଖ ପର୍ବ ହୋଇଥିବାବେଳେ ଜୁଆଙ୍ଗମାନେ ମଧ୍ୟ ଏହାକୁ ଧୁମ୍‌ଧାମ୍‌ରେ ପାଳନ କରିଥା'ନ୍ତି । ଏହି ଦିନ ହିନ୍ଦୁମାନଙ୍କର ଦେବତା ବଳଦେବଜୀଉ ଜନ୍ମଗ୍ରହଣ କରିଥିଲେ । ଏହି ପର୍ବରେ ବିଶେଷକରି ଜୁଆଙ୍ଗମାନେ ଗୋରୁମାନଙ୍କୁ ପୂଜା କରିଥା'ନ୍ତି । ଏହି ଦିନ ଗୋରୁମାନଙ୍କୁ ଜଙ୍ଗଲକୁ ଛଡାଯାଇ ନଥାଏ । ସକାଳୁ ପ୍ରତ୍ୟକ ଘରେ ଚାଉଳ ଚୁନାରେ ପିଠାପଣା ପ୍ରସ୍ତୁତ ହୋଇଥାଏ । ଦିନବେଳା ଜୁଆଙ୍ଗ ପୂଜକ ନାଗମ୍, ଗାଁ ମୁଖିଆ ପଧାନ ଏବଂ ବାଗଭାଇ ମଣ୍ଡଘରେ ଉପସ୍ଥିତ ହୁଅନ୍ତି । ସେଠାରେ ଗାଁର ସବୁ ଛୋଟ ପିଲାମାନଙ୍କ ସମେତ ଗୋରୁଗାଇଙ୍କୁ ଏକଜୁଟ୍ କରାଯାଏ । ନାଗମ୍ ଗ୍ରାମଶିରିଙ୍କ ନିକଟରେ ପୂଜାର୍ଚ୍ଚନା କରିବା ପରେ ଛୋଟଛୋଟ ପିଲାମାନଙ୍କୁ ଏବଂ ଗୋରୁମାନଙ୍କୁ ବନ୍ଦାପନା କରନ୍ତି । ପୂଜାର୍ଚ୍ଚନା କରିବା ପରେ ନାଗମ୍ ଏକ ନିର୍ଦ୍ଦିଷ୍ଟ ଗଛର ବାଡି **'କାଣ୍ଡାଏ ବାଡି'** ସହାୟତାରେ ଗାଈମାନଙ୍କୁ ପିଟନ୍ତି । ଏହାପରେ ନାଗମ୍, ପଧାନ ଓ ବାଗଭାଇ ଗ୍ରାମଶିରି ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରିବା ପରେ ମଣ୍ଡଘରେ ସମୂହ ଜୁରି ପକାଯାଏ ।



▶ ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗଟିଏ ନିଜ ଗୁହାଳରେ ଗୋରୁଙ୍କୁ ପୂଜା କରୁଛି

ସବୁ ଜୁଆଙ୍ଗମାନେ ଏକତ୍ରିତ ମହୁଲି ପାନ କରନ୍ତି । ଏହି ଅବସରରେ ଜୁଆଙ୍ଗ ଯୁବକମାନେ ମଣ୍ଡଘରେ କୁକୁଡା ମାଂସ ରୋଷେଇ କରି ମହୁଲି ପିଇଥା'ନ୍ତି । ସାଧାରଣତଃ କୌଣସି ତ୍ରୁଟି କାରଣରୁ ଯୁବକମାନେ ବୟସ୍କ ବୃଦ୍ଧମାନଙ୍କୁ ଡୋରିମୋନା ବାବଦକୁ କୁକୁଡା ଓ ମଦ ପ୍ରଦାନ କରିଥା'ନ୍ତି ।



► ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗଟିଏ କାଣ୍ଡାଏ ବାଡିରେ ଗୋରୁଙ୍କୁ ପିଟୁଛି

ଏହାପରେ ଜୁଆଙ୍ଗମାନେ ନିଜନିଜର ଗାଈଗୋରୁଙ୍କୁ ଗୁହାଳକୁ ନେଇ ଯାଆନ୍ତି । ଗୁହାଳ ଘରେ ଗାଈଗୋରୁଙ୍କୁ ବାନ୍ଧିବା ପରେ ସେମାନଙ୍କର ପୂଜାର୍ଚ୍ଚନା କରାଯାଇଥାଏ । ପ୍ରତ୍ୟେକ ଜୁଆଙ୍ଗ ପରିବାର ପକ୍ଷରୁ ପୃଥକ ଭାବେ ନିଜନିଜର ଗୁହାଳ ଘରେ ଗୋରୁଙ୍କୁ ପୂଜା କରାଯାଇଥାଏ । ପ୍ରତି ଜୁଆଙ୍ଗ ପରିବାରର ମୁଖିଆମାନେ ନୂଆ ସୂତାରେ ୭ଟି ସଳଙ୍ଗ ପତ୍ରକୁ ଗୁଡେଇ ଦୁଇ ତିନୋଟି ହାର ପ୍ରସ୍ତୁତ କରନ୍ତି । ପରିବାରର ମୁଖିଆ ଏକ ବାଉଁଶ ନିର୍ମିତ ଡାଲାରେ ଏହି ସଳଙ୍ଗ ହାର ସହିତ ରାକ୍ଷୀ, କାଣ୍ଡାଏ ବାଡି, ସିନ୍ଦୁର, ଅରୁଆ ଚାଉଳ, କ୍ଷୀର, ଧୂପ, ଦୀପ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି



▶ ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗଟିଏ ଜାଣ୍ଡାଏ ବାଡିରେ ଗୋରୁଙ୍କୁ ପିଟୁଛି

ନିଜ ଗୁହାଳକୁ ଯାଆନ୍ତି । ତାଙ୍କ ସହିତ ତାଙ୍କ ଧର୍ମପତ୍ନୀ ମଧ୍ୟ ଗୁହାଳ ମଧ୍ୟକୁ ଯାଇଥା'ନ୍ତି । ସେଠାରେ ପୂଜାର୍ଚ୍ଚନା କରାଯିବାପରେ 'ସଳଙ୍ଗ ହାର'କୁ ଗାଈ ବେକରେ ବାନ୍ଧି ଦିଆଯାଏ । ଏହା ସହିତ ଗାଈ, ଗୋରୁମାନଙ୍କ ସିଙ୍ଗରେ ରାକ୍ଷୀ ବନ୍ଧାଯାଏ ।

ଏହି ପର୍ବକୁ ରକ୍ଷା ବନ୍ଧନ ଉତ୍ସବ ବୋଲି କୁହାଯାଇଥାଏ । ଏହି ଦିନ ଜୁଆଙ୍ଗ ଯୁବତୀମାନେ ନିଜନିଜର ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିଥା'ନ୍ତି । ଭଉଣୀର ସୁରକ୍ଷା ନେଇ ଭାଇ ଏହି ଅବସରରେ ଶପଥ ନେଇଥାଏ । ଭଉଣୀ ଧୂପ, ଦୀପ, ଚନ୍ଦନ ଲଗାଇ ଭାଇକୁ ବନ୍ଦାପନା କରି ତା' ହାତରେ ରାକ୍ଷୀ ବାନ୍ଧିଥାଏ । ଏହାକୁ 'ଗୋ-ପୂର୍ଣ୍ଣିମା' ମଧ୍ୟ କୁହାଯାଇଥାଏ । ଏହି ପର୍ବ ପାଳନ ଅବସରରେ ଜୁଆଙ୍ଗମାନେ ନିଜନିଜ ଘରେ ଏବଂ ମଣ୍ଡଘର ସାମ୍ନାରେ ଗୋରୁ, କୃଷି ଉପକରଣ (ଲଙ୍ଗଳ, ଯୁଆଳି, କୋଡି, ଶାବଳ) ଆଦିକୁ ପୂଜା କରିଥା'ନ୍ତି । ଗହ୍ମା ପୁନେଇଁ ପୂର୍ବରୁ ଜୁଆଙ୍ଗମାନଙ୍କର ଲଙ୍ଗଳ, ଯୁଆଳି, କୋଡି, ଶାବଳ ଆଦିର କାର୍ଯ୍ୟ ଶେଷ ହୋଇଯାଇଥାଏ । ଏଣୁ ଗହ୍ମା ପୁନେଇଁ ଦିନ



ଗହ୍ମା ପୂର୍ଣ୍ଣିମା ଅବସରରେ ଜୁଆଙ୍ଗଟିଏ ନିଜ ଗୁହାଳରେ ଗୋରୁଙ୍କୁ ପୂଜା କରୁଛି

ଜୁଆଙ୍ଗମାନେ ଏହି କୃଷି ଉପକରଣକୁ ନିକଟସ୍ଥ ନଦୀ କିମ୍ବା ଝରଣାରେ ଭଲ ଭାବେ ଧୋଇ ସଫା କରି ନିଜନିଜ ଘରେ ପୂଜା କରନ୍ତି । ଗହ୍ମା ପୂନେଇଁ ଦିନ ଭଗବାନ ବଳରାମ ଜନ୍ମ ଗ୍ରହଣ କରିଥିଲେ ବୋଲି ହିନ୍ଦୁ ପୁରାଣରେ କଥିତ ଅଛି । ଏଣୁ ହିନ୍ଦୁମାନେ ଏହି ଦିନ ଭଗବାନ ବଳରାମଙ୍କୁ ପୂଜା କରୁଥିବାବେଳେ ଜୁଆଙ୍ଗମାନେ ଏହି ଦିନ ଗୋରୁ ପୂଜା କରିଥା'ନ୍ତି । ଏହା ସାଙ୍ଗକୁ ଛୋଟଛୋଟ ପିଲାମାନଙ୍କୁ ବନ୍ଦାପନା କରାଯାଇଥାଏ । ଏହି ଅବସରରେ ପ୍ରତ୍ୟକ ଜୁଆଙ୍ଗ ପରିବାରରେ ପିଠାପଣା ଖିଆଯାଇଥାଏ ।

## ଧାନ ନୂଆଖିଆ (ଗୁଡା ବୁଆ ପର୍ବ)

*(new paddy eating festival)*

ତଥ୍ୟ ସଂଗ୍ରହ ବିବରଣୀ

ଅଧ୍ୟୟନ କ୍ଷେତ୍ର

ଗ୍ରାମ: ଟେଙ୍କେଇନାଳୀ, ଗ୍ରାମପଞ୍ଚାୟତ: ପୋଡାଙ୍ଗ୍, ବ୍ଲକ୍: ତେଲକୋଇ

ଅଧ୍ୟୟନ ଦିବସ: ୮, ୯ ଓ ୧୦ ସେପ୍ଟେମ୍ବର, ୨୦୧୦ (ତିନି ଦିନ ବ୍ୟାପୀ)

ତଥ୍ୟ ପ୍ରଦାନକାରୀ: ଲଛମନ ଜୁଆଙ୍ଗ (ନାଗମ୍, ଘରମାସାହି),
ଧୀର ଜୁଆଙ୍ଗ (ଡାଙ୍ଗୁଆ ଘରମାସାହି), ଦାଶରଥୀ ଜୁଆଙ୍ଗ (ପୁରୁଣାସାହି),
ପଠାଣି ଜୁଆଙ୍ଗ (ଘରମାସାହି), ଶୁକୁରା ଜୁଆଙ୍ଗ (ଘରମାସାହି),
ଦୀନବନ୍ଧୁ ଜୁଆଙ୍ଗ (ଘରମାସାହି), ଶ୍ରୀଧର ଜୁଆଙ୍ଗ (ପାକୁଟୁସାହି),
ଜଲିଆ ଜୁଆଙ୍ଗ (କଣ୍ଡାସାହି), ଦେଶ ଜୁଆଙ୍ଗ (ପୁରୁଣାସାହି)



ଧାନ ନୂଆ: ଗ୍ରାମଶରିଙ୍କ ନିକଟରେ ପୂଜା କରୁଛନ୍ତି ନାଗମ୍



ଧାନ ନୂଆଖିଆ ପର୍ବ ପାଳନ ଅବସରରେ ନାଗମ୍, ପଧାନଙ୍କ ସମେତ ଜୁଆଙ୍ଗମାନେ ପୂଜା ସାମଗ୍ରୀ ଧରି ଗ୍ରାମ ଶାଳଘରକୁ ଯାଉଛନ୍ତି



► ଧାନ ନୂଆଖିଆ ପର୍ବ ପାଳନ ଅବସରରେ ନାଗମ୍, ପଧାନଙ୍କ ସମେତ ଜୁଆଙ୍ଗମାନେ ପୂଜା ସାମଗ୍ରୀ ଧରି ଗ୍ରାମ ଶାଳଘରକୁ ଯାଉଛନ୍ତି



➢ ଧାନ ନୂଆ: ଛେଦ ପଡିବା ନିମନ୍ତେ ଗାଁ ଶାଳ ନିକଟକୁ ପଶୁମାନଙ୍କୁ ନିଆଯାଉଛି ।

ଜୁଆଙ୍ଗମାନଙ୍କର ଏହି ପ୍ରମୁଖ ଉତ୍ସବ ସଂପର୍କରେ ସମସ୍ତ ତଥ୍ୟ ତେଲକୋଇ ବ୍ଲକ୍ ଅନ୍ତର୍ଗତ ଟେଣ୍ଡେଇନାଳୀ ଗ୍ରାମରୁ ସଂଗ୍ରହ କରାଯାଇଛି । ଟେଣ୍ଡେଇନାଳୀ ଗ୍ରାମଟି ତେଲକୋଇ ବ୍ଲକ୍‌ର ଏକ ଦୁର୍ଗମ ଜୁଆଙ୍ଗବହୁଳ ଗ୍ରାମ ଭାବେ ପରିଚିତ । ଏହି ଗ୍ରାମରେ ଶତପ୍ରତିଶତ ଲୋକ କେବଳ ଜୁଆଙ୍ଗ ସଂପ୍ରଦାୟର । ଏକଦା ଏହି ଗାଁଟିକୁ ରାସ୍ତା ନଥିଲା । ମାତ୍ର ଏବେଏବେ ଗାଁକୁ ରାସ୍ତା ସଂଭବ ହୋଇପାରିଛି । ଏହି ଗାଁଟି ୭ଟି ଜୁଆଙ୍ଗ ସାହିକୁ ନେଇ ଗଠିତ । ସେହି ଜୁଆଙ୍ଗ ସାହି (ବସ୍ତି) ଗୁଡିକ ହେଲା- ପାକୁଟୁସାହି, କଣ୍ଡାସାହି, ପୁରୁଣାସାହି, ଟୁଙ୍ଗୁରୁସାହି, ଘଟମୋସାହି, ଡାମ୍ବୁସାହି ଏବଂ କାଞ୍ଜିଆସାହି। ତେବେ ବର୍ତ୍ତମାନ କାଞ୍ଜିଆସାହିଟି ନାହିଁ । ମୋଟ ୬ଟି ସାହିକୁ ନେଇ ଏହି ବିକ୍ଷିପ୍ତ ଟେଣ୍ଡେଇନାଳୀ

ଗାଁଟି ଅବସ୍ଥିତ । କାଞ୍ଜିଆସାହିଟି ଟେଣ୍ଟେଇନାଳୀ ଜଳପ୍ରପାତର ସାମ୍ନାରେ ଥିବାରୁ ଏହି ସାହି ପ୍ରତି ସବୁବେଳେ ବିପଦ ପଡୁଥିଲା । ଏହି ସାହିରେ ପ୍ରତିବର୍ଷ ବହୁ ସଂଖ୍ୟାରେ ଲୋକମାନଙ୍କର ମୃତ୍ୟୁ ହେବା କାରଣରୁ ଠାକୁରାଣୀ (ଟେଣ୍ଟେଇନାଳୀରେ ଥିବା ଝରଣା ଠାକୁରାଣୀ) କୋପ କରିଛନ୍ତି ଭାବି ଏହି ସାହିଟିକୁ ଉଠାଇ ପାକୁଟୁସାହିରେ ମିଶାଇ ଦିଆଯାଇଛି । ଟେଣ୍ଟେଇନାଳୀ ଜୁଆଙ୍ଗ ଗ୍ରାମର ଜନସଂଖ୍ୟା ପାଖାପାଖି ୫୦୦ରୁ ଉର୍ଦ୍ଧ୍ୱ ହେବ । ଏହି ଗାଁରେ ଏକ ମନୋରମ ଜଳପ୍ରପାତ ରହିଛି ଏବଂ ଏହାର ନାମ ଟେଣ୍ଟେଇନାଳୀ ଜଳପ୍ରପାତ ।

ବୁଆ ନୂଆଖିଆଟି ଏକ କୃଷିଭିତ୍ତିକ ପର୍ବ । ଏହି ପର୍ବ ଭାଦ୍ରବ-ଆଶ୍ୱିନ ମାସ (ଅଗଷ୍ଟ-ସେପ୍‌ଟେମ୍ବର)ରେ ଅନୁଷ୍ଠିତ ହୋଇଥାଏ । ଦେବତା, ଦେବୀଙ୍କୁ ନୂଆକରି ଅମଳ ହୋଇଥିବା ଧାନ ସମର୍ପଣ କଲେ ଜୀବନ ସୁଖମୟ ହୋଇଥାଏ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଏଣୁ ବର୍ଷର ପ୍ରଥମ ଶସ୍ୟ (ଧାନ)କୁ ଦେବତାଙ୍କୁ ସମର୍ପଣ କରିବା ପରେ ଜୁଆଙ୍ଗମାନେ ତାହାକୁ ବ୍ୟବହାର କରିଥାନ୍ତି । ଦେବଦେବୀଙ୍କୁ ନୂଆ ଧାନ ଅର୍ପଣ କରିବା ପରେ ଜୁଆଙ୍ଗମାନେ ନବାନ୍ନ ଭକ୍ଷଣ କରିଥାନ୍ତି ।



➤ ଧାନ ନୂଆ: ଗାଁ ଶାଳଘରେ ଛେଦ ପଡିବା ପରେ ମୃତ ପଶୁକୁ ବୋହିବୋହି ଗାଁ ମଣ୍ଡଘରକୁ ଅଣାଯାଉଛି ।



▶ **ଧାନ ନୂଆ: ଗ୍ରାମ ଶାଳଘରେ ଛେଦ ପଡିବା ପରେ ମୃତ ପଶୁର ଜଟାମୁଣ୍ଡ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଇଛି ।**

ଧାନନୂଆଖିଆ ପର୍ବ ପାଳନର କିଛି ଦିନ ପୂର୍ବରୁ ଗାଁରେ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଥାଏ । ଗ୍ରାମର ମୁଖିଆ 'ପଧାନ', ପୂଜକ (ନାଗମ୍) ଓ ବାରଭାଇ (ଅନ୍ୟାନ୍ୟ ବୟସ୍କ ଲୋକମାନେ) ମଣ୍ଡଘରେ ଏକତ୍ର ବସି ଏହି ପର୍ବ ପାଳନ ନେଇ ଚୂଡାନ୍ତ ରୂପରେଖ ପ୍ରସ୍ତୁତ କରିଥାନ୍ତି । (ଦୁଃଖର ବିଷୟ, ଟେଣ୍ଟେଇନାଳୀ ଗ୍ରାମରେ ସ୍ଥାୟୀ 'ପଧାନ' ନଥିବାରୁ ତାଙ୍କ କାମ ନାଗମ୍ ଲଛମନ ଜୁଆଙ୍ଗ ଚଳାଇଥିଲେ) । ଧାନନୂଆଖିଆ ପର୍ବ ପାଳନ ନେଇ ଦିନ ଧାର୍ଯ୍ୟ କରାଯାଏ । 'ପଧାନ', 'ନାଗମ୍' ବସି ଦିନ ଧାର୍ଯ୍ୟ କଲାପରେ 'ଡାଙ୍ଗୁଆ' ଗାଁରେ ସମସ୍ତ ପରିବାରରେ ଏହି ସୂଚନା ପ୍ରଦାନ କରିଥାଏ । ଏଥିପାଇଁ ପ୍ରତି ପରିବାରରୁ ଟଙ୍କା, ଚାଉଳ ଆଦାୟ ହୋଇ ମଣ୍ଡଘର ପାଣ୍ଠିରେ ଜମା ହୁଏ । ପର୍ବ ପାଳନ ବେଳେ ଏହି ପାଣ୍ଠିର ଅର୍ଥ ଖର୍ଚ୍ଚ ହୋଇଥାଏ । ପୂଜା ପାଇଁ ଛେଳି, ମେଣ୍ଢା, ମଦ ଓ ଅନ୍ୟାନ୍ୟ ସାମଗ୍ରୀ ଏହି ପାଣ୍ଠିର ଅର୍ଥରୁ କିଣାଯାଏ । ଜୁଆଙ୍ଗ ମହିଳାମାନେ ମଣ୍ଡଘର ଲିପାପୋଛା କରି କାଛରେ ଝୋଟି ଚିତା ପକାନ୍ତି । ଗ୍ରାମଶିରିଙ୍କ ପୀଠକୁ ଶୋଧନ କରାଯାଏ । ଗାଁ ଶାଳକୁ ଲିପାପୋଛା କରାଯାଏ ।

କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ, ଭୂୟାଁ, ମୁଣ୍ଡା, ବାଥୁଡି ଗୋଷ୍ଠୀର ଆଦିବାସୀମାନେ ଭାଦ୍ରବ ମାସ ବେଳକୁ ଧାନ ନୂଆଖିଆ ପର୍ବ ପାଳନ କରିଥାନ୍ତି । ଅଷାଡି ପରି ଏହି ଉତ୍ସବରେ ଗ୍ରାମ ଶାଳରେ ବଳି (ଛେଦ) ପଡିଥାଏ । ଧାନ ନୂଆଖିଆ ପର୍ବରେ ଜୁଆଙ୍ଗମାନେ ନିଜ ଗାଁର ଗ୍ରାମଶିରି ଶାଳରେ ଛେଳି, ମେଣ୍ଢା, କୁକୁଡା ଆଦି ବଳି ଦେବା ପରେ ଏହାକୁ ନିଜନିଜ ମଧ୍ୟରେ ବାଣ୍ଟି ନେଇଥାନ୍ତି । ପୂର୍ବେ ଜୁଆଙ୍ଗମାନେ ବଳି ପଡୁଥିବା ଛେଳି, ମେଣ୍ଢା, କୁକୁଡାକୁ ଗାଁରେ ଗ୍ରାମଶିରି ନିକଟରେ ରୋଷେଇ କରି ଏକତ୍ର ପଙ୍‌କ୍ତି ଭୋଜନ କରୁଥିଲେ । ମାତ୍ର, ବର୍ତ୍ତମାନ ଏହି କଟା ମାଂସକୁ ନିଜନିଜ ମଧ୍ୟରେ ବାଣ୍ଟି ନେଇ ଘରେ ରୋଷେଇ କରୁଛନ୍ତି ।

ଧାନ ନୂଆଖିଆ ପର୍ବ ପାଳନ ଅବସରରେ ପ୍ରତି ପରିବାରରୁ ନିଜନିଜ ବିଲରୁ ଆସିଥିବା ନୂତନ ଧାନ ସଂଗ୍ରହ କରାଯାଇ ମଣ୍ଡଘରେ ଏକତ୍ର କରାଯାଏ । ସଂଗୃହୀତ ହୋଇଥିବା ନୂଆ ଧାନକୁ ପୁଟୁଳି କରି ମଜାଙ୍ଗରେ ରଖାଯାଏ । ଏହାପରେ ମଜାଙ୍ଗରେ ଥିବା ପୁରୁଣା ଧାନ ସହିତ ଏହି ନୂଆ ଧାନକୁ ମିଶାଇ ଚାଉଳ ପ୍ରସ୍ତୁତ କରାଯାଏ । ଏହି ଅବସରରେ ବରୁଗୁଡି ମଞ୍ଜିକୁ ମଧ୍ୟ ପାକ କରାଯାଇ ଭାତ ସହିତ ପିତୃଗଣଙ୍କୁ ଅର୍ପଣ କରାଯିବା ପରେ ଜୁଆଙ୍ଗମାନେ ନୂଆ ଧାନ ଖାଇବା ଆରଂଭ କରିଥାନ୍ତି ।

ଧାନ ନୂଆଖିଆ ପର୍ବଟି ତିନି ଦିନ ଧରି ପାଳନ କରାଯାଏ ।

**ପ୍ରଥମ ଦିନ:** ଗାଁ ମୁଖିଆ 'ପଧାନ', ପୂଜକ 'ନାଗମ୍' ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଗାଁର ମଙ୍ଗଳ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଉପବାସ ରହିବା ସାଙ୍ଗକୁ ନିଷ୍ଠାର ସହ ବ୍ରତ ଧାରଣ କରନ୍ତି । ଏହାକୁ **'ବାର ରୁଆ'** କହନ୍ତି । ଅର୍ଥାତ୍ ପ୍ରଥମ ଦିନ ପୂଜକ ସମେତ ଗ୍ରାମର ମୁଖିଆ ବ୍ୟକ୍ତିମାନେ ବାର ରହିଥାନ୍ତି । ଏହି ଦିନ ଗାଁର ପୂଜକ (ନାଗମ୍), ପଧାନ ନୂତନ ବସ୍ତ୍ର ପରିଧାନ କରିଥାନ୍ତି । ବୁଇତା ସକାଳୁ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୋଇଯାଏ । ଏହିଦିନ ଜୁଆଙ୍ଗ ସ୍ତ୍ରୀଲୋକମାନେ ସ୍ନାନତର୍ପଣ କରି ଘରଦ୍ୱାର ଲିପାପୋଛା କରିଥାନ୍ତି । ମଣ୍ଡଘରକୁ ଲିପାପୋଛା କରି କାଛରେ ଝୋଟି ଚିତା ପକେଇଥାନ୍ତି ।

**ଦ୍ୱିତୀୟ ଦିନ:** ଏହି ଦିନ ଗାଁର କିଛି ଯୁବକ ନିକଟସ୍ଥ **'ତଇଲା'** (ଜମାଣ/ଏଜାନ୍)କୁ ଯାଇ ସେଠାରୁ କିଛି ନୂଆ ଧାନ କେଣ୍ଡା ସଂଗ୍ରହ କରି ଆଣନ୍ତି । ତଇଲାରୁ ଆଣିଥିବା ଏହି ଧାନକେଣ୍ଡାସବୁକୁ ଯୁବକମାନେ ଗାଁର ପୂଜକଙ୍କ ମାର୍ଫତରେ ମଣ୍ଡଘରେ ଜମା କରନ୍ତି । ଏହି ନୂଆ ଧାନର ପରିମାଣ କମ୍ ଥିବାରୁ ନାଗମ୍ ପୂର୍ବରୁ ମଣ୍ଡଘରେ ଗଚ୍ଛିତ ଥିବା ପୁରୁଣା ଧାନ ସହିତ ଏହି ନୂଆ ଧାନକୁ ଏକତ୍ର ମିଶେଇ ଦିଅନ୍ତି । ଏହାପରେ ଏହି ଧାନ ମଣ୍ଡଘର ସମ୍ମୁଖରେ ଥିବା ଗ୍ରାମଶିରିଙ୍କ ନିକଟରେ ପୂଜା ହୁଏ । ନୂଆ ଧାନ ପୂଜା ହୋଇ ସାରିବା ପରେ ପୂଜକ ସବୁତକ ଧାନକୁ ଗୋଟିଏ ଗୋଟିଏ ଦନାରେ ଭାଗଭାଗ କରି ପ୍ରତି ପରିବାରକୁ ବଣ୍ଟନ କରିଥାନ୍ତି । ପୂଜକ ଦେଇଥିବା ନୂଆ ଧାନ ଓ ଘରେ ଥିବା



▶ ଡେଲକୋଇ ବ୍ଲକ୍ ଅନ୍ତର୍ଗତ ଟେଣ୍ଟେଇନାଳି ଜୁଆଙ୍ଗ ଗ୍ରାମରେ ଥିବା ପ୍ରସିଦ୍ଧ ଟେଣ୍ଟେଇନାଳି ଜଳ ପ୍ରପାତ ସ୍ଥଳରେ ଲେଖକ

କିଛି ପୁରୁଣା ଧାନକୁ ମିଶେଇ ଜୁଆଙ୍ଗମାନେ ନିଜନିଜ ଘରେ କୁଟି ସେଥିରୁ ଚାଉଳ ପ୍ରସ୍ତୁତ କରନ୍ତି । ଏହି ଚାଉଳ ସହ ଗୁଡ଼, କ୍ଷୀର, ଘିଅ ମିଶେଇ ଜୁଆଙ୍ଗମାନେ ଖିରି ପ୍ରସ୍ତୁତ କରନ୍ତି । ଏହି ଖିରିକୁ ପୁନର୍ବାର ଗ୍ରାମଶିରିଙ୍କ ନିକଟରେ ପୂଜା କରାଯିବା ସହିତ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଏ । ପିତୃପୁରୁଷଙ୍କୁ ନବାନ୍ନ ଅର୍ପଣ କରାଯିବା ପରେ ପରିବାରର ସଦସ୍ୟମାନେ ଏହାକୁ ଭୋଜନ କରନ୍ତି । ପ୍ରତ୍ୟେକ ଘରେ ନିଜନିଜର ପିତୃପୁରୁଷଙ୍କୁ ପୂଜା କରିବା ପରେ ଜୁଆଙ୍ଗମାନେ ନବାନ୍ନ ଭକ୍ଷଣ କରନ୍ତି ।

**ତୃତୀୟ ଦିନ:** ଜୁଆଙ୍ଗମାନେ ବାଜା ବଜେଇ ରୋଷଣି କରି ଗାଁର ନାଗମ୍ ଓ ପଧାନଙ୍କୁ ପ୍ରଥମେ ମଣ୍ଡଘର ନିକଟକୁ ପାଛୋଟି ନିଅନ୍ତି । ମଣ୍ଡଘରେ ଏବଂ ଗ୍ରାମଶିରିଙ୍କ ନିକଟରେ ପୂଜାର୍ଚ୍ଚନା କରିବା ପରେ ସେମାନେ ଗାଁ ମୁଣ୍ଡରେ ଥିବା ଶାଳ ନିକଟକୁ ଯାଆନ୍ତି । ତୃତୀୟ ଦିନ ହିଁ ଗ୍ରାମର ଶେଷ



► ଦୁଇ ଜୁଆଙ୍ଗ ଯୁବତୀଙ୍କ ସହ ଲେଖକ



▶ ଜୁଆଙ୍ଗମାନଙ୍କ ଗହଣରେ ମଣ୍ଡଘରେ ଲେଖକ

ମୁଣ୍ଡରେ ଥିବା ଶାଳ ନିକଟରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁବଳି ପଡିଥାଏ । ଏହାକୁ 'ଛେଦ' କୁହାଯାଏ । (ଟେଣ୍ଟେଇନାଳୀ ଗ୍ରାମର ଶେଷମୁଣ୍ଡରେ ଥିବା **ମା' ପାଟ ଠାକୁରାଣୀଙ୍କ** ଶାଳରେ ଦୁଇଟି ମେଣ୍ଢା ଛେଦ ପଡିଥିଲେ ।) ବିଶେଷକରି ଏହି ଦିନ ବୋଦା, ମେଣ୍ଢା ଆଦି ବଳି ପଡିଥାଏ । ଜୁଆଙ୍ଗମାନେ ଏହି ଅବସରରେ କ୍ଷେତରେ ହୋଇଥିବା ନୂଆ ଧାନକୁ ନିଜର ଇଷ୍ଟଦେବୀଙ୍କ ନିକଟରେ ପୂଜା ଲାଗି କରିଥାନ୍ତି । ଗ୍ରାମ ଶାଳ ନିକଟରେ ଧରମ୍ ଦେବତା ଓ ବସୁମତିମାତାଙ୍କ ଉଦ୍ଦେଶ୍ୟରେ ପୂଜା ଲାଗି କରାଯାଇଥାଏ । ପ୍ରଥମେ ଏହି ଶାଳକୁ ଗୋରୁ ମୁତ୍ର ଓ ଗୋବର ଦ୍ୱାରା ଲିପାପୋଛା କରି ଶୋଧନ କରାଯାଏ । ଏହାପରେ ହଳଦି, ମୁରୁଜ ଦ୍ୱାରା ମଣ୍ଡଳ କଟାଯାଇ ସିନ୍ଦୁର ଦ୍ୱାରା ରଞ୍ଜିତ କରାଯାଏ । ଶାଳରେ ଥିବା ଗ୍ରାମଦେବୀଙ୍କ ମୁଣ୍ଡରେ ସିନ୍ଦୁର ଓ ଉପରେ ଫୁଲମାଳ ଦିଆଯାଏ । ଧୂପ, ଦୀପ ଲାଗି ହୁଏ । ନାଗମ୍ ମନ୍ତ୍ରପାଠ କରି ପୂଜା ଆରଂଭ କରନ୍ତି । ଅରୁଆ ଚାଉଳକୁ ଧୋଇ ସେଥିରେ ଦୁଧ, ଗୁଡ ଗୋଳାଯାଇ ନୈବେଦ୍ୟ ପ୍ରସ୍ତୁତ ହୁଏ । ଏହାକୁ ଗୁଳାଗୁଳା କରି ଭୋଗ ଲାଗି କରାଯାଏ । ଏହି ଅବସରରେ ଶାଳ ନିକଟରେ ଗୋଟିଏ ଛେଳି, ମେଣ୍ଢା କିମ୍ବା ଘୁଷୁରି ବଳି

ଦିଆଯାଇଥାଏ । ପ୍ରଥମେ ବଳି ଦିଆଯିବାକୁ ଥିବା ପଶୁଟି (ଛେଳି/ଘୁଷୁରି/ମେଣ୍ଢା) ଉପରେ ନାଗମ୍ କିଛି ଜଳ ସିଞ୍ଚନ କରି ତାକୁ ଶୋଧନ କରେ । ଏହି ପଶୁଟିକୁ ନୈବେଦ୍ୟ ଚାଉଳ **(ଅଜଡା)**ରୁ କିଛି ଖୁଆଇ ଦିଆଯାଏ । ଏହାପରେ ପଶୁ/ପକ୍ଷୀର କେଶ କିମ୍ବା ପରରୁ କିଛି ଅଂଶ ଉପାଡି ଧୂପରେ ପକାଯାଏ । ପରେ ପଶୁଟିକୁ ଛେଦନ କରାଯାଏ । ପଶୁଟିର ଛେଦନ ହେଲାପରେ ମୁଣ୍ଡଟିକୁ ଚାଉଳ ଉପରେ ରଖି ଗାଁଲୋକେ ନାଗମ୍ (ପୂଜକ)ଙ୍କୁ ଅର୍ପଣ କରିଥାନ୍ତି । ନାଗମ୍ ଏହି କଟା ମୁଣ୍ଡଟିକୁ ଗ୍ରାମଶିରିଙ୍କ ନିକଟରେ ପୂଜା କରିଥାନ୍ତି । ଏହାପରେ ଶାଳରେ ଦେବଦେବୀଙ୍କୁ ମଦ (ମହୁଲି) ସମର୍ପଣ କରାଯାଏ । ଏହାକୁ 'ଜୁରିପକା' କୁହାଯାଏ । ପୂଜା ଶେଷରେ ଜୁଆଙ୍ଗମାନେ ଭୂମିରେ ମୁଣ୍ଡକୁ ମାଡି ଧରମ୍ ଦେବତା, ବସୁମତିମାତା ଓ ଗ୍ରାମଶିରିଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଥାନ୍ତି । ଗ୍ରାମ ଶାଳରେ ଛେଦ ପଡିବା ପରେ ଏହି ମୃତ ପଶୁମାନଙ୍କୁ ଜୁଆଙ୍ଗ ଯୁବକମାନେ ଗାଁ ମଣ୍ଡଘର ନିକଟକୁ କାନ୍ଧରେ ବୋହିକରି ଆଣନ୍ତି । ଏଠାରେ ଏହାକୁ କାଟି ଶାଳପତ୍ରରେ ଭାଗଭାଗ କରି ଜୁଆଙ୍ଗମାନେ ନିଜନିଜ ମଧ୍ୟରେ ବାଣ୍ଟି ନେଇଥାନ୍ତି । ନାଗମ୍ ପ୍ରତି ପରିବାରର ମୁଖ୍ୟ ସଦସ୍ୟମାନଙ୍କୁ ଏହି ମାଂସ ବଣ୍ଟନ କରିଥାନ୍ତି । ପ୍ରତ୍ୟକ ଘରେ ଛେଦ ପଡିଥିବା ଏହି ମାଂସ ସହିତ ଘରେ କଟାଯାଇଥିବା କୁକୁଡା ମାଂସକୁ ମିଶାଇ ରୋଷେଇ କରାଯାଇଥାଏ । ଜୁଆଙ୍ଗମାନେ ମାଂସ ସହିତ ନବାନ୍ନ ଭୋଜନ କରିଥା'ନ୍ତି ।

ଗ୍ରାମ ଶାଳରେ ଚାଲିଥିବା ପୂଜାକାର୍ଯ୍ୟବେଳେ ମହିଳାମାନଙ୍କ ପ୍ରବେଶ ନିଷେଧ ଥାଏ । ବିଶେଷକରି ଗ୍ରାମ ଶାଳରେ ଚାଲିଥିବା 'ଛେଦ' ବେଳେ ମହିଳାମାନଙ୍କୁ ସେଠାକୁ ଯିବାକୁ ବାରଣ ରହିଥାଏ । ସବୁଠୁ ବଡ଼କଥା ହେଉଛି ଧାନ ନୂଆଖିଆ ବେଳେ ଚାଙ୍ଗୁବାଦ୍ୟକୁ ନିଷିଦ୍ଧ କରାଯାଇଥାଏ । କେବଳ ହାଡି ଢୋଲ ପିଟିଥାଏ ଏବଂ ଆଉ ଜଣେ ମହୁରୀ ବଜେଇଥାଏ । ଏକାନ୍‌ରୁ ଧାନ ଅମଳ ନ ହେବା ପର୍ଯ୍ୟନ୍ତ ଜୁଆଙ୍ଗମାନଙ୍କୁ ଚାଙ୍ଗୁ ବଜାଇବା ପୂରାପୂରି ମନାଥାଏ ।

ଫସଲ ଅମଳ ପୂର୍ବରୁ ଜୁଆଙ୍ଗମାନେ ଚାଙ୍ଗୁ ମାଡ କରିପାରିବେ ନାହିଁ ବୋଲି କଡ଼ାକଡ଼ି ନିୟମ ରହିଛି । ଯେତେବେଳେ ତଇଳାରେ ଫସଲ ଥାଏ ସେତେବେଳେ ଚାଙ୍ଗୁ ନାଚ ଓ ଗୀତ ହୋଇ ନଥାଏ । ଫସଲ ଅମଳ ହେବା ପରେ ଚାଙ୍ଗୁ ନାଚ ଓ ଗୀତର ଆସର ଜମିଥାଏ । ବିଶେଷକରି ଜୁନ୍ ମାସରୁ ଜାନୁୟାରୀ ମାସ ପର୍ଯ୍ୟନ୍ତ ଧାନ, ମାଣ୍ଡିଆ, ବାଜରା, ସୁଆଁ, ମକା, ସୋରିଷ ବୁଣାଯିବା ପରଠାରୁ ଅମଳ ହେବା ପର୍ଯ୍ୟନ୍ତ ଏହି ସମୟରେ ଗାଁରେ ଚାଙ୍ଗୁ ନାଚ ଓ ଗୀତ ହୋଇ ନଥାଏ । କ୍ଷେତରୁ ଶସ୍ୟ ସଂପୂର୍ଣ୍ଣ ଅମଳ ହୋଇଯିବା ପରେ ଗାଁର ଯୁବକ, ଯୁବତୀମାନେ ଚାଙ୍ଗୁ ନାଚ ଓ ଗୀତର ଆୟୋଜନ କରିଥାନ୍ତି । ଫସଲ ଅମଳ ହେବା ପୂର୍ବରୁ ଯଦି କେହି ଚାଙ୍ଗୁ ମାଡ କରିଥାନ୍ତି, ତେବେ ତାକୁ ମଣ୍ଡଘରକୁ ଡକାଯାଇ ତାକୁ ଅର୍ଥ ଦଣ୍ଡରେ ଦଣ୍ଡିତ କରାଯାଇଥାଏ ।

# କାଳାର୍ ଅବ (ରୁମା ପର୍ବ)

*(new ruma eating festival)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

ଗ୍ରାମ: ଉପରରତୁଆଁ

ଗ୍ରାମ ପଞ୍ଚାୟତ: ତଳଚଂପେଇ

ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।

ଅଧ୍ୟୟନ ଦିବସ: ୧୪ ଓ ୧୫ ଅକ୍ଟୋବର ୨୦୧୩ (ଦୁଇ ଦିନ)

ତଥ୍ୟ ପ୍ରଦାନକାରୀ: ଉପରରତୁଆଁ ଗ୍ରାମର ପରବାସିଆ ଜୁଆଙ୍ଗ (ପଧାନ), ମଣିଆ ଜୁଆଙ୍ଗ (ନାଗମ୍), ନାରଦ ଜୁଆଙ୍ଗ(କାର୍ଜି), ଚେମନ୍ ଜୁଆଙ୍ଗ (ଡ଼ାଙ୍ଗୁଆ), ଗୋବିନ୍ଦ ଜୁଆଙ୍ଗ, ବଙ୍ଗାଳି ଜୁଆଙ୍ଗ, ବେନୁ ଜୁଆଙ୍ଗ ଏବଂ ପ୍ରାଣବଲ୍ଲଭ ଘଣା ।



▶ ରୁମା ପର୍ବ: ଘାଣ୍ଟ ତରକାରୀ ପାଇଁ ଜୁଆଙ୍ଗ ମହିଳାଟି ରୁମା (ବରୁଗୁଡି ଛୁଇଁ) ସହିତ ସାରୁ, ପିଡାଳୁ, କଖାରୁ, ପାଣିକଖାରୁ, ଟମାଟର, ବଇଁଗା ଆଳୁ, ଲାଉ ଆଦି କାଟୁଛନ୍ତି ।



▶ **ରୁମା ପର୍ବ ପାଳନ ଅବସରରେ ଜୁଆଙ୍ଗମାନେ ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ମଣ୍ଡଘରକୁ ପାଛୋଟି ଆଣୁଛନ୍ତି ।**

୨୦୧୩ ମସିଆ ଅକ୍ଟୋବର ୧୪ ତାରିଖ ପବିତ୍ର ଶାରଦୀୟ ଦୁର୍ଗାପୂଜାର 'ଦଶହରା' ଦିବସ ଥିଲା । ଦଶହରା ଏବଂ ପରଦିନ ଦୁଇ ଦିନ ଧରି ଉପରରଡୁଆଁ ଗାଁରେ ରୁମା ପର୍ବ ପାଳିତ ହୋଇଥିଲା । ସୂଚନାଯୋଗ୍ୟ, ୨୦୧୩ ମସିହା ଅକ୍ଟୋବର ୧୧ ତାରିଖରୁ ୧୩ ତାରିଖ ଯାଏ ବହୁ ଚର୍ଚ୍ଚିତ ସାମୁଦ୍ରିକ ଝଡ **'ଫାଇଲିନ୍'** ଓଡ଼ିଶାରେ ତାଣ୍ଡବ ରଚନା କରିଥିଲା । ଏହାର ପ୍ରଭାବରେ ସମଗ୍ର ଓଡ଼ିଶାରେ ପ୍ରବଳରୁ ପ୍ରବଳ ବର୍ଷା ସହିତ ପବନ ବହି ବହୁ ଧନଜୀବନ କ୍ଷତି କରିଥିଲା । ଏହି ପ୍ରସିଦ୍ଧ ଝଡ଼ବାତ୍ୟା ସତ୍ତ୍ୱେ ୧୪ ଓ ୧୫ ତାରିଖ ଦଶହରା ଓ ପରଦିନ ପାଗ ଖୁବ୍ ସ୍ୱାଭାବିକ ହୋଇଯାଇଥିଲା ଏବଂ ଉପରରଡୁଆଁ ଗାଁର ଜୁଆଙ୍ଗମାନେ ଆନନ୍ଦ ଉଲ୍ଲାସର ସହ ସେମାନଙ୍କର ପାରଂପରିକ 'ରୁମା ପର୍ବ' ପାଳନ କରିଥିଲେ ।

ରୁମା ପର୍ବଟି ଜୁଆଙ୍ଗମାନଙ୍କର ଅନ୍ୟ ଏକ ପ୍ରମୁଖ କୃଷିଭିତ୍ତିକ ପର୍ବ । ଏହି ପର୍ବ ପାଳନ ଅବସରରେ ଜୁଆଙ୍ଗମାନେ ପ୍ରଥମ କରି ରୁମା ଛୁଇଁକୁ ଖାଦ୍ୟ ଭାବେ ଗ୍ରହଣ କରିଥା'ନ୍ତି । ରୁମା ଛୁଇଁ ବ୍ୟତୀତ ଜୁଆଙ୍ଗମାନେ ସାରୁ, ପିତାଳୁ, ବଇଙ୍ଗା ଆଳୁ, ଦେଶୀ ଆଳୁ, କଖାରୁ, ପାଣିକଖାରୁ, ଟମାଟର




► ରୁମା ପର୍ବ: ମଣ୍ଡଘର ମଧ୍ୟରେ ପୂଜାର୍ଚ୍ଚନା



ରୁମା ପର୍ବ: ଶାଳ ଗଛରେ ପୂର୍ବରୁ ବନ୍ଧାଯାଇଥିବା ବଢା (ଛୋଟ ମାଟି ହାଣ୍ଡି)କୁ ନାଗମ୍ ଗଛରୁ ତଳକୁ ଓହ୍ଲାଉଛନ୍ତି ।

ଆଦି ଖାଦ୍ୟକୁ ନୂଆକରି ଖାଇଥା'ନ୍ତି । ଏହା ସହିତ ଏହି ପର୍ବ ପାଳନ ପରେପରେ ଜୁଆଙ୍ଗମାନେ ତଇଲାରୁ ଦେବ ଧାନ କୁହାଯାଉଥିବା **'ଜିମ୍ବା ଧାନ'** କାଟିବା ଆରମ୍ଭ କରିଥା'ନ୍ତି । ପୂର୍ବରୁ କୁହାଯାଇଛି, ଜୁଆଙ୍ଗମାନେ ପ୍ରତ୍ୟେକ ଶସ୍ୟ, ପନିପରିବା, ଡାଲି ଜାତୀୟ ଖାଦ୍ୟକୁ ନିଜନିଜର ପିତୃପୁରୁଷ ଏବଂ ଦେବଦେବୀଙ୍କୁ ସମର୍ପଣ କରିବା ପରେ ନିଜେ ଭକ୍ଷଣ କରିଥା'ନ୍ତି । ଏହି ଅବସରରେ ଜୁଆଙ୍ଗମାନେ 'ନୂଆଖିଆ' ପର୍ବ ପାଳନ କରିଥା'ନ୍ତି ।

ରୁମା ପର୍ବ ପାଳନ ଅବସରରେ ଜୁଆଙ୍ଗମାନେ ତଇଲାରୁ ବିଧିବଦ୍ଧ ଭାବେ **'ଜିମ୍ବା ଧାନ'** କାଟିବା ଆରମ୍ଭ କରିଥା'ନ୍ତି । ରୁମା ପର୍ବ ପାଳନ ପୂର୍ବରୁ ଜୁଆଙ୍ଗମାନେ କୌଣସି ପ୍ରକାରେ **'ଜିମ୍ବା ଧାନ'** କାଟି ନଥା'ନ୍ତି । 'ଜିମ୍ବା ଧାନ' ହେଉଛି ଜୁଆଙ୍ଗମାନଙ୍କର ଏକ ପାରମ୍ପରିକ **'ଦେବ ଧାନ'** । ଏହା ଏକ ବିଳମ୍ବ କିସମର ଧାନ । ଏହି ଧାନ ପାଚିବାକୁ ପ୍ରାୟ ଚାରି-ପାଞ୍ଚ ମାସ ସମୟ ନେଇଥାଏ । ତେବେ ଆଜିର ଦିନରେ ଜୁଆଙ୍ଗମାନେ ଏହି ପାରମ୍ପରିକ ଧାନ ଚାଷ କରିବା ଏକପ୍ରକାର ଛାଡି ଦେଲେଣି ।



**ରୁମା ପର୍ବ ପାଳନ ଅବସରରେ ଗ୍ରାମଶିରିଙ୍ଗ ନିକଟରେ ପୂଜାର୍ଚ୍ଚନା**



➤ ରୁମା ପର୍ବ ପାଳନ ଅବସରରେ ଗ୍ରାମଶାଳରେ ପାରଂପରିକ ପୂଜାର୍ଚ୍ଚନା

କେବଳ ପରଂପରାକୁ ଧରି କିଛି ଜୁଆଙ୍ଗ ଏହି ଧରଣର ଧାନ ଚାଷ କରୁଛନ୍ତି । **'ଧାନ ନୂଆଖିଆ'** ପର୍ବ ପାଳନ ବେଳକୁ ଜୁଆଙ୍ଗମାନେ **'ଗୁଡା ଧାନ'** ବା **'ବିଲ ଧାନ'** ନୂଆ ଖାଇଥା'ନ୍ତି । ଏହା ପରେପରେ ବିଲରୁ ଗୁଡା ଧାନ କାଟିବା ଆରଂଭ କରିଥା'ନ୍ତି । ମାତ୍ର, ରୁମା ପର୍ବ ବେଳକୁ ଜୁଆଙ୍ଗମାନେ ତଇଳାରୁ 'କିମ୍ବା ଧାନ' କାଟିବା ଆରଂଭ କରି ନିଜର ଧାନ ଖଳାକୁ ଆଣନ୍ତି । ଧାନ ଖଳାରେ କିଛି ଦିନ ରହିବା ପରେ ପରେପରେ ଜୁଆଙ୍ଗମାନେ ଗୁଣ୍ଡାଦିଆ ପର୍ବ ପାଳନ କରିଥା'ନ୍ତି । ଗୁଣ୍ଡାଦିଆ ପର୍ବ ପାଳନ ପରେପରେ ଜୁଆଙ୍ଗମାନେ ଖଳାରୁ ଧାନ ଅମଳ କରି ନିଜ ଘରକୁ ଅଥବା ଅମାରକୁ ନେଇଥା'ନ୍ତି ।

ରୁମା ପର୍ବଟି ଆଶ୍ୱିନ ମାସର ଶେଷ ଭାଗ ପ୍ରାୟ ସେପ୍‌ଟେମ୍ବରରୁ ଅକ୍ଟୋବର ମାସ ମଧ୍ୟରେ ଅନୁଷ୍ଠିତ ହୋଇଥାଏ । ବରୁଗୁଡିକୁ କେନ୍ଦୁଝର ଅଞ୍ଚଳରେ **'ରୁମାଛୁଇଁ'** କୁହାଯାଉଥିବାବେଳେ ଜୁଆଙ୍ଗମାନେ ଏହାକୁ **'କାଳାର୍'** ବୋଲି କହିଥା'ନ୍ତି । ଏଣୁ ଏହାକୁ 'ରୁମା ପର୍ବ' ବା 'କାଳାର୍ ଅବ' ବୋଲି କୁହାଯାଇଥାଏ । ଏହି ପର୍ବ ପାଳନ ଅବସରରେ ନୂଆକରି ଅମଳ ହୋଇଥିବା ବରୁଗୁଡିକୁ

ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବା ପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ ଏହାକୁ ଭକ୍ଷଣ କରିଥାନ୍ତି । ଏହି ଅବସରରେ ଜୁଆଙ୍ଗମାନେ ବରୁଗୁଡି ସମେତ ନିଜ ବାଡିବଗିଚାରେ କରିଥିବା ବୋଇତାଳୁ (କଖାରୁ), ଶାଗ, ସାରୁ, ଦେଶିଆଳୁ, ବଇଙ୍ଗା ଆଳୁ, ପିତାଳୁ, ଟମାଟର ଓ ଅନ୍ୟାନ୍ୟ ପନିପରିବା ମଧ୍ୟ ନୁଆକରି ଖାଇଥାନ୍ତି । ଏହି ପର୍ବଟି ଦୁଇ ଦିନ ଧରି ଅନୁଷ୍ଠିତ ହୋଇଥାଏ ।



▶ ଜୁଆଙ୍ଗ ବୃଦ୍ଧାଙ୍କ ସହିତ ଲେଖକ



**ଜୁଆଙ୍ଗ ବୃଦ୍ଧ ଓ ବୃଦ୍ଧା ଙ୍କ ସହିତ ଲେଖକ**

**ପ୍ରଥମ ଦିନ:** ଅନ୍ୟ ପର୍ବପର୍ବାଣିମାନଙ୍କ ଭଳି ପ୍ରଥମ ଦିନ ଗାଁର ପୂଜକ, ମୁଖିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଉପବାସ ରହିଥା'ନ୍ତି । ଗାଁ ମୁଖିଆ 'ପଧାନ', ପୂଜକ 'ନାଗମ୍' ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଗାଁର ମଙ୍ଗଳ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଉପବାସ ରହିବା ସାଙ୍ଗକୁ ନିଷ୍ଠାର ସହ ବ୍ରତ ଧାରଣ କରନ୍ତି । ଏହାକୁ 'ବାର ଗୁଆ' କହନ୍ତି । ନାଗମ୍, ପଧାନ ନୂତନ ବସ୍ତ୍ର ପରିଧାନ କରିଥାନ୍ତି । ନାଗମ୍, ପଧାନ ସକାଳୁ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୋଇଥା'ନ୍ତି । ଏହିଦିନ ଜୁଆଙ୍ଗ ସ୍ତ୍ରୀଲୋକମାନେ ସ୍ନାନତର୍ପଣ କରି ମଣ୍ଡଘର ସମେତ ନିଜନିଜର ଘରଦ୍ୱାର ଲିପାପୋଛା କରିଥାନ୍ତି । ସକାଳୁ ସକାଳୁ ଯୁବତୀମାନେ ମଣ୍ଡଘର କାଛରେ ଝୋଟି ଚିତା ପକେଇଥାନ୍ତି । ସ୍ନାନ ସାରି ନାଗମ୍ ଓ ପଧାନ ନିଜନିଜ ଘରେ ଅପେକ୍ଷା କରିଥା'ନ୍ତି । ଗାଁର ଜୁଆଙ୍ଗମାନେ ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ପ୍ରଥମେ ମଣ୍ଡଘରକୁ ପାଛୋଟି ଆଣନ୍ତି । ନାଗମ୍ ନିଜ ସାଥୀରେ ପୂଜା ସାମଗ୍ରୀ ଧରି ମଣ୍ଡଘରେ ଉପସ୍ଥିତ ହେବାପରେ ସେଠାରେ ପାରଂପରିକ ପୂଜାପଦ୍ଧତି ଅନୁଷ୍ଠିତ

ହୋଇଥାଏ । ଏହାପରେ ମଣ୍ଡଘର ସାମ୍ନାରେ ଥିବା 'ଗ୍ରାମଶିରି'ଙ୍କ ନିକଟରେ ପୂଜା କରାଯାଏ । ଏଠାରେ ପୂଜା ସରିବା ପରେ ଜୁଆଙ୍ଗମାନେ ଗାଁ ମୁଣ୍ଡରେ ଥିବା 'ଗ୍ରାମଶାଳ'କୁ ଯାଆନ୍ତି । ସେଠାରେ ପାରଂପରିକ ପଦ୍ଧତିରେ ପୂଜାର୍ଚ୍ଚନା କରାଯିବା ପରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମଦ ଅର୍ପଣ କରାଯାଏ । ଏହାକୁ 'ଜୁରିପକା' ବୋଲି କୁହାଯାଇଥାଏ । ଏହାପରେ ଜୁଆଙ୍ଗମାନେ 'ଗ୍ରାମଶାଳ'ରୁ ନିଜ ଗାଁ ମଣ୍ଡଘରକୁ ଫେରନ୍ତି । ସନ୍ଧ୍ୟାବେଳକୁ ନାଗମ୍ ତଇଳାକୁ ଯାଇ 'କିମ୍ବା ଧାନ' କେଣ୍ଡା ସଂଗ୍ରହ କରି ଆଣନ୍ତି । ଏହି ଧାନ କେଣ୍ଡାକୁ କଟାଯାଇ ନଥାଏ କିମ୍ବା ଉପୁଡାଯାଇ ନଥାଏ । ଏହା ସହିତ ନାଗମ୍ କିଛି ଯୁବକଙ୍କ ସାଥୀରେ ଜଙ୍ଗଲରୁ ପିତାଳୁ, ଦେଶିଆଳୁ, ବଇଁଗା ଆଳୁ ଆଦି ସଂଗ୍ରହ କରି ମଣ୍ଡଘରେ ମହଜୁଦ୍ କରି ରଖନ୍ତି । ପରଦିନ ସକାଳୁ ସକାଳୁ ନାଗମ୍ ତଇଳାରୁ 'ରୁମା ଛୁଇଁ' ତୋଳିକରି ଆଣନ୍ତି । ଏହା ପରେ ଦ୍ୱିତୀୟ ଦିନର ପୂଜା କାର୍ଯ୍ୟ ଆରଂଭ ହୋଇଥାଏ ।

**ଦ୍ୱିତୀୟ ଦିନ:** ଦ୍ୱତୀୟ ଦିନ ବଡ଼ି ସକାଳୁ ଉଠି ନାଗମ୍ ତଇଳାକୁ ଯାଇ ନୂଆକରି ଫଳିଥିବା ରୁମା ଛୁଇଁ (ବରୁଗୁଡି) ତୋଳି ଆଣନ୍ତି । ନାଗମ୍, ପଧାନ ସକାଳୁ ସ୍ନାନ ସାରି ଗ୍ରାମଶିରିଙ୍କ ନିକଟକୁ ଆସିବାକୁ ନିଜ ଘରେ ଅପେକ୍ଷା କରି ବସିଥା'ନ୍ତି । ଗ୍ରାମର ଜୁଆଙ୍ଗମାନେ ବାଜା ବଜେଇ ଗୋଷଣି କରି ନାଗମ୍ ଓ ପଧାନଙ୍କୁ ମଣ୍ଡଘର ଓ ଗ୍ରାମଶିରି ସ୍ଥଳକୁ ପାଛୋଟି ଆଣନ୍ତି । ନାଗମ୍ ଏକ ଡାଲାରେ କିଛି ରୁମା ଛୁଇଁ, ବଣ ଆଳୁ, ସାରୁ, ପିତାଳୁ, ଟମାଟର, ବୋଇତାଳୁ, ପାଣିକଖାରୁ, ଲାଉ, ଫୁଲ, ଅରୁଆଚାଉଳ, ହଳଦିଗୁଣ୍ଡ, ସିନ୍ଦୁର, ଧୂପ, ଦୀପ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି ମଣ୍ଡଘରକୁ ଆସିଥା'ନ୍ତି । ମଣ୍ଡଘର ନିକଟରେ ପହଞ୍ଚିବା ପରେ ନାଗମ୍ ବିଧି ଅନୁସାରେ ଗ୍ରାମଶିରିଙ୍କ ନିକଟରେ ଏହି ରୁମାଛୁଇଁ ସମେତ ଅନ୍ୟାନ୍ୟ ପନିପରିବାକୁ ପୂଜା ଲାଗି କରନ୍ତି । ଏହାପରେ ନାଗମ୍ ଓ ପଧାନ ଗ୍ରାମଶିରିଙ୍କ ନିକଟରେ ଦୁଧ ଢାଳି ଦେବଦେବୀଙ୍କ ଉଦ୍ଦେଶ୍ୟରେ ରୁମା, ସାରୁ, ପିତାଳୁ, ବଇଁଗା ଆଳୁ, ଶାଗ ଆଦି ଅର୍ପଣ କରିଥା'ନ୍ତି । ରୁମା ଛୁଇଁ ଗ୍ରାମଶିରିଙ୍କ ନିକଟରେ ପୂଜା ହେବାପରେ ନାଗମ୍, ପଧାନ ଓ ବାରଭାଇମାନେ ଗାଁ ମୁଣ୍ଡରେ ଥିବା 'ଗ୍ରାମଶାଳ'କୁ ପୂଜା ଉଦ୍ଦେଶ୍ୟରେ ବାହାରନ୍ତି ।

ଗ୍ରାମଶାଳରେ ପହଞ୍ଚିବା ପରେ ନାଗମ୍ ସେଠାରେ ଶାଳ ଗଛ କୋରଡରେ ପୂର୍ବରୁ ରଖାଯାଇଥିବା ବଢା (ଛୋଟ ମାଟି ହାଣ୍ଡି)କୁ ବାହାର କରି ତାହାକୁ ଧୋଇ ପରିଷ୍କାର କରନ୍ତି । ସେହି ହାଣ୍ଡିରେ ଅରୁଆ ଚାଉଳକୁ ଗାଇ ଦୁଧରେ ଫୁଟାଇ କ୍ଷୀରି ପ୍ରସ୍ତୁତ କରାଯାଏ । ଏହାକୁ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଏ । ଏହା ସହିତ ଅନ୍ୟ ଏକ ବାଉଁଶ ଡାଲାରେ ନିଆଯାଇଥିବା ରୁମା ଛୁଇଁ, ସାରୁ, ଟମାଟର, ପିତାଳୁ, ବଇଁଗା ଆଳୁ, ଶାଗ, ବୋଇତାଳୁ, ପାଣିକଖାରୁ ଆଦି ପନିପରିବା ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଇଥାଏ । ଗାଁ ଶାଳରେ ପୂଜା ହୋଇଥିବା ଏହି ରୁମା ଛୁଇଁ, ସାରୁ, ଟମାଟର, ପିତାଳୁ, କଖାରୁ, ବଇଁଗା ଆଳୁ ଆଦିକୁ ପ୍ରତି ପରିବାରର

ସଦସ୍ୟମାନେ ନିଜ ଘରକୁ ଭାଗକରି ନିଅନ୍ତି । ଗ୍ରାମଶାଳରୁ ପୂଜା ହୋଇଯାଇଥିବା ରୁମା ଛୁଇଁ, ବଣଆଳୁ, ସାରୁ, ଟମାଟର, ବୋଇତାଳୁ ଆଦି ପନିପରିବା ସହିତ ନିଜନିଜ ଘରେ ଥିବା ପନିପରିବାକୁ ମିଶାଇ ପ୍ରତ୍ୟେକ ପରିବାରରେ ଘାଣ୍ଟ ତରକାରୀ ପ୍ରସ୍ତୁତ କରାଯାଏ । ରୁମା ପର୍ବ ପାଳନ ଅବସରରେ ପ୍ରତ୍ୟେକ ଜୁଆଙ୍ଗ ପରିବାରରେ ଘାଣ୍ଟ ତରକାରୀ ପ୍ରସ୍ତୁତ ହେବା ବାଧ୍ୟତାମୂଳକ ହୋଇଥାଏ । ପ୍ରତି ପରିବାରର ମହିଳାମାନେ ରୁମା ଛୁଇଁ ସମେତ ବାଇଗଣ, ଦେଶିଆଳୁ, ବଣସାରୁ, ବୋଇତାଳୁ, ଲାଉ, ଟମାଟର ଆଦି ପନିପରିବା କାଟିବରେ ବ୍ୟସ୍ତ ରହିଥା'ନ୍ତି । ସମସ୍ତଙ୍କ ଘରେ ଏହି ଘାଣ୍ଟ ତରକାରୀ ରନ୍ଧାଯାଇଥାଏ । ଏହି ଅବସରରେ ଜୁଆଙ୍ଗମାନେ ନିଜ ଘରେ ଘାଣ୍ଟ ତରକାରୀ ସହିତ କୁକୁଡା, ଛେଳି ମାଂସ ମଧ୍ୟ ଭକ୍ଷଣ କରିଥା'ନ୍ତି ।

ଏହି ପର୍ବ ସମୟରେ ଚାଙ୍ଗୁ ବାଦ୍ୟ ପରିବେଷଣ କରାଯାଇ ନଥାଏ । କାରଣ ଏତେବେଳକୁ ତଇଳାରେ ପ୍ରାୟ ସମସ୍ତ ଶସ୍ୟ ଅମଳ ହେବା ଅପେକ୍ଷାରେ ଥାଏ । ଶସ୍ୟ ଅମଳ ହେବା ପୂର୍ବରୁ ଜୁଆଙ୍ଗମାନେ ଚାଙ୍ଗୁ ବାଦନ କରିବାର ପରଂପରା ନାହିଁ ।

## ତଇଳା ପୂଜା ବା ବିଲ ପୂଜା

*(worship the paddy field)*





▶ ବୃଦ୍ଧ ଜୁଆଙ୍ଗଟି 'କିମ୍ବା ଧାନ' କାଟିବା ପୂର୍ବରୁ ନିଜ ଡଇଳାରେ ପୂଜାରେ ମଗ୍ନ

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

ଗ୍ରାମ: ଉପରରତୁଆଁ

ଗ୍ରାମ ପଞ୍ଚାୟତ: ତଳଚଂପେଇ

ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର ।

ଅଧ୍ୟୟନ ଦିବସ: ୧୭ ଅକ୍ଟୋବର ୨୦୧୩

ତଥ୍ୟ ପ୍ରଦାନକାରୀ: ଉପରରତୁଆଁ ଗ୍ରାମର ବେନୁ ଜୁଆଙ୍ଗ

ଧାନ ନୂଆଖିଆ ଓ ରୁମା ପର୍ବ ପାଳନ ପରେପରେ 'ତଇଳା ପୂଜା' ବା 'ବିଲ ପୂଜା' ପାଳିତ ହୋଇଥାଏ । ଏହା ସାମୂହିକ ବା ଗୋଷ୍ଠୀଗତ ଭାବେ ପାଳିତ ହୋଇ ନଥାଏ । ତଇଳା (ଏକାନ୍)ରୁ 'କିମ୍ବା ଧାନ' କାଟିବା ପୂର୍ବରୁ ପ୍ରତ୍ୟେକ ଜୁଆଙ୍ଗ ପରିବାର ପକ୍ଷରୁ 'ମାଟି ଦେବତା' ବା 'ବିଲ ଦେବତା'ଙ୍କ ଉଦ୍ଦେଶ୍ୟରେ ପୂଜା ଅର୍ପଣ କରାଯାଇଥାଏ । ପ୍ରତ୍ୟେକ ଜୁଆଙ୍ଗ ପରିବାରର ମୁଖ୍ୟ ସଦସ୍ୟ ବିଲ ଦେବତାଙ୍କୁ ପୂଜା କରିବା ଉଦ୍ଦେଶ୍ୟରେ ଏକ ବାଉଁଶ ଡାଲାରେ ଦୁଧ, ଗୁଡ, ଧୂପ, ଦୀପ, ଶାଳପତ୍ର, ଖଇ ଓ ଗୋଟିଏ କିମ୍ବା ଦୁଇଟି କୁକୁଡା ଧରି ନିଜ ବିଲକୁ ଯାଇଥା'ନ୍ତି । ବିଲରେ ପହଞ୍ଚିବା ପରେ ଜୁଆଙ୍ଗଟି ଧରମ୍ ଦେବତା, ବସୁମତି ମାତା ଓ ଅନ୍ୟାନ୍ୟ ଗ୍ରାମଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା ଅର୍ପଣ କରିଥା'ନ୍ତି । ରୁମା ପର୍ବ ପାଳନ ହେବାର କିଛି ଦିନପରେ ଉପର ରଡୁଆଁ ଜୁଆଙ୍ଗ ଗାଁରେ ପହଞ୍ଚିଲାବେଳକୁ ଏହି ଗାଁର ବେନୁ ଜୁଆଙ୍ଗ 'ତଇଳା ପୂଜା' କରିବାକୁ ନିଜ ବିଲ



▶ ବୃଦ୍ଧ ଜୁଆଙ୍ଗଟି 'ଜିମ୍ବା ଧାନ' କାଟିବା ପୂର୍ବରୁ ନିଜ ତଇଳାରେ ପୂଜାରେ ମଗ୍ନ



▶ **ଡଇଳା ପୂଜା (ବିଲ ପୂଜା): ଦେବଦେବୀ, ପିତୃପୁରୁଷଙ୍କୁ ସନ୍ତୁଷ୍ଟ କରିବା ସହିତ ଭଲ ଫସଲ ଅମଳ ଉଦ୍ଦେଶ୍ୟରେ ଢୁଆଙ୍କଟି ଏକ କୁକୁଡାକୁ କାଟି ତା' ରକ୍ତକୁ ନିଜ ଚାଷ ଜମିରେ ସିଞ୍ଚନ କରୁଛି ।**

ଅଭିମୁଖେ ଯାତ୍ରା କରୁଥିଲେ । ସାଥୀରେ ଏକ ବାଉଁଶ ଡାଲାରେ ପୂଜା ସାମଗ୍ରୀ ସହିତ ଦୁଇଟି କୁକୁଡା ଧରି ବେନୁ ନିଜ ବିଲରେ ପହଞ୍ଚିଲା ପରେ ନିଜର ପୂଜା କାର୍ଯ୍ୟ ଆରଂଭ କରିଦେଇଥିଲେ । ଏହି ପୂଜାରେ ଗାଁ ପୂଜକ 'ନାଗମ୍'ଙ୍କର କୌଣସି ଆବଶ୍ୟକତା ପଡି ନଥାଏ । ପ୍ରତ୍ୟେକ ଢୁଆଙ୍କ ପରିବାରର ବରିଷ୍ଠ ସଦସ୍ୟ ଏହି ପୂଜା ନିଜନିଜର ବିଲରେ ପାଳନ କରିଥା'ନ୍ତି । ଭଲ ଫସଲ ଅମଳ ହେବା, ଦେବଦେବୀ, ପିତୃପୁରୁଷ ଏବଂ ସର୍ବୋପରି ବିଲ ଦେବତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଏହି ପୂଜା ପାଳନ କରାଯାଇଥାଏ । ସେଦିନ ବିଲରେ ପୂଜାକାର୍ଯ୍ୟ ଯଥାରୀତି ପାଳନ କରିବାପରେ ବେନୁ ଢୁଆଙ୍କ ସାଙ୍ଗରେ ନେଇଥିବା ଦୁଇଟି କୁକୁଡାକୁ ସେଠାରେ ଛେଦ ପକାଇଥିଲେ । କୁକୁଡା ଦୁଇଟିର ବେକକୁ କାଟି ଏହାର ରକ୍ତକୁ ବିଲରେ ଏବଂ ଧାନ ଗଛ ଉପରେ ସିଞ୍ଚନ କରିଥିଲେ । ଏପରି କଲେ ଦେବଦେବୀ ଓ ପିତୃପୁରୁଷ ସନ୍ତୁଷ୍ଟ ରହିବା ସହିତ ଆସନ୍ତା ବର୍ଷ ଭଲ ଫସଲ ହେବ ବୋଲି ସେଦିନ ବେନୁ ଢୁଆଙ୍କ ଆମକୁ ସୂଚନା ଦେଇଥିଲେ ।

# ଗୁରୁବାର ଓଷା

*(worshiping the goddess of wealth i.e. Laxmi)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର: ଗ୍ରାମ: ଗୁପ୍ତଗଙ୍ଗା, ଗ୍ରାମ ପଞ୍ଚାୟତ: ଗୋନାସିକା,**

**ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୬ ଡିସେମ୍ବର ୨୦୧୨ (ଗୁରୁବାର)**

**ତଥ୍ୟ ପ୍ରଦାନକାରୀ: ଗୁପ୍ତଗଙ୍ଗା ଗ୍ରାମର ଶୁକଦେବ ଜୁଆଙ୍ଗ (ପଧାନ), କୁସୁମାଇ ଜୁଆଙ୍ଗ (ବୁଇତା), ଶାନ୍ତିଲତା ଜୁଆଙ୍ଗ, କୁନ୍ତଳା ଜୁଆଙ୍ଗ ।**

ମାର୍ଗଶୀର ମାସ ପ୍ରଥମ ଗୁରୁବାରରୁ ଶେଷ ଗୁରୁବାର ପର୍ଯ୍ୟନ୍ତ ପ୍ରତ୍ୟକ ଗୁରୁବାର ମାଣବସା ଗୁରୁବାର ଓଷା ପାଳିତ ହୋଇଥାଏ । ଜୁଆଙ୍ଗ ମହିଳାମାନେ ମଧ୍ୟ ମା' ଲକ୍ଷ୍ମୀଙ୍କ ଗୁରୁବାର ଓଷା ପାଳନ କରିଥା'ନ୍ତି । ମାର୍ଗଶୀର ମାସଟି ଅତି ପବିତ୍ର ମାସ । ଏହି ମାସରେ ମା' ଲକ୍ଷ୍ମୀଙ୍କୁ ଆରାଧନା କରାଯାଇଥାଏ । ମା' ଲକ୍ଷ୍ମୀ ହେଉଛନ୍ତି ଧନର ଦେବୀ । ଜୁଆଙ୍ଗ ମହିଳାମାନେ ମଧ୍ୟ ଏହି ସଂପଦର ଦେବୀ ମା' ଲକ୍ଷ୍ମୀଙ୍କର ପୂଜା କରିଥା'ନ୍ତି ।

ମାର୍ଗଶୀର ମାସରେ ଜୁଆଙ୍ଗମାନେ ଧାନ ଫସଲ ଅମଳ କରିବା ଆରଂଭ କରନ୍ତି । ଧାନ ଫସଲ ଅମଳ ହେବା ପରେ ମା' ଲକ୍ଷ୍ମୀଙ୍କର ପୂଜା ବା ମାଣବସା ଗୁରୁବାର ଓଷା କରାଯାଇଥାଏ । କାର୍ତ୍ତୀକ ମାସ ଶେଷ ବେଳକୁ ମା' ଲକ୍ଷ୍ମୀଙ୍କର ପୂଜା କରିବା ପାଇଁ ଜୁଆଙ୍ଗ ମହିଳାମାନେ ପ୍ରସ୍ତୁତ ହୋଇଥାନ୍ତି । ଜୁଆଙ୍ଗ ମହିଳାମାନେ କାଠର ଖଟୁଲି କିମ୍ବା ମାଟିର ବେଦୀ ନିର୍ମାଣ କରି ସେଥିରେ ମା' ଲକ୍ଷ୍ମୀଙ୍କୁ ପୂଜା କରନ୍ତି । ମାର୍ଗଶୀର ମାସରେ ୪ଟି ଗୁରୁବାର ପଡିଥାଏ । ପ୍ରତ୍ୟକ ଗୁରୁବାର ଦିନ ଜୁଆଙ୍ଗ ମହିଳାମାନେ ମା' ଲକ୍ଷ୍ମୀଙ୍କର ପୂଜା କରିଥାନ୍ତି ।

ଲକ୍ଷ୍ମୀ ହେଉଛନ୍ତି ହିନ୍ଦୁମାନଙ୍କର ସଂପଦର ଦେବୀ । ମାତ୍ର ଜୁଆଙ୍ଗମାନେ ମଧ୍ୟ ହିନ୍ଦୁମାନଙ୍କର ଦେବୀ ଲକ୍ଷ୍ମୀଙ୍କୁ ପୂଜା କରିଥା'ନ୍ତି । ଜୁଆଙ୍ଗମାନଙ୍କର ଲକ୍ଷ୍ମୀ ଆରାଧନା ମଧ୍ୟ ନୂତନ ନୁହେଁ । ବହୁ ପ୍ରାଚୀନ କାଳରୁ ଜୁଆଙ୍ଗମାନେ ଲକ୍ଷ୍ମୀଙ୍କୁ ପୂଜା କରିଆସୁଛନ୍ତି । ମାର୍ଗଶୀର ମାସ ପ୍ରଥମ ଗୁରୁବାର ଦିନ ଜୁଆଙ୍ଗ ମହିଳାଟିଏ ମାଣରେ ଧାନ ବେଣୀ, ଚାଉଳ, ବିରି, କାଙ୍ଗୁ, ଗଙ୍ଗେଇ ଆଦି ଶସ୍ୟ ରଖି ପୂଜା କରିଥାଏ ।

ସକାଳୁ ସକାଳୁ ଜୁଆଙ୍ଗ ଯୁବତୀମାନେ ଘର କାଛରେ ଝୋଟି ଚିତା ପକେଇ ଅଗଣାକୁ ଗୋବର ପାଣିରେ ବିଶୁଦ୍ଧ କରନ୍ତି । ଏହାପରେ ଘରର ମୁଖ୍ୟ ମହିଳା ସ୍ନାନ ସାରି ମାଣବସା କାର୍ଯ୍ୟ ସମାପନ

କରନ୍ତି । ଘରେ ପିଠାପଣା ହୁଏ । କେବଳ ନାରୀମାନେ ଏହି ପୂଜାଟିକୁ କରିଥା'ନ୍ତି । ଉପଯୁକ୍ତ ବିଧିବିଧାନ ଅନୁସାରେ ଏହି ପୂଜାଟିକୁ ପାଳନ କରାଯାଉଥିବାରୁ ଏହା ତିନିଦିନ ଲାଗିଥାଏ । ବୁଧବାର ଦିନ ଘର ଲିପାପୋଛା, ଅଗଣା ପରିଷ୍କାର, ଝୋଟିଚିତା ପକାଯାଏ । ଗୁରୁବାର ଦିନ ଭୋର୍ ସମୟରୁ ଜୁଆଙ୍ଗ ସ୍ତ୍ରୀଲୋକମାନେ ଉଠି ଦାଣ୍ଡରେ ଦୀପ ଜାଳନ୍ତି । କଦଳୀ, ଫଳ, ଦୁବପତ୍ର, ଶିଆଳପତ୍ର, ଅଁଳା ଡାଳରେ ମା'ଙ୍କ ପୂଜା କାର୍ଯ୍ୟ ହୋଇଥାଏ । ଏହିଦିନ ପିଠାପଣା, ଖିରି, ଖେଚୁଡି ଆଦି ହୋଇଥାଏ । ମହିଳାମାନେ ମା'ଙ୍କ ନିକଟରେ ଲକ୍ଷ୍ମୀପୁରାଣ ପୁସ୍ତିକା ପାଠ କରନ୍ତି । ଅପରାହ୍ନରେ ମା'ଙ୍କୁ ଉଠାଯାଏ । ଏହା ପରଦିନ ଅର୍ଥାତ୍ ଶୁକ୍ରବାର ବାସନକୁସନ ଧୂଆ କାମ ହୋଇଥାଏ ।

ଏହିଦିନ କୌଣସି ଜୁଆଙ୍ଗ ପୁରୁଷମାନେ ଡଇଳା/ଏକାନ୍‌କୁ ଯାଇ ନଥା'ନ୍ତି । ଏହି ପୂଜା ଚାଲିଥିବାବେଳେ ଜୁଆଙ୍ଗମାନେ ଟଙ୍କାପଇସା ଦେବାନେବା କରିନଥା'ନ୍ତି । ଘରକୁ ଆମିଷ ଦ୍ରବ୍ୟ ପ୍ରବେଶ କରି ନଥାଏ । ଅତି ଶୁଦ୍ଧପୂତ ଭାବେ ଏହି ପୂଜା ପାଳନ କରାଯାଇଥାଏ । ଲକ୍ଷ୍ମୀ ପୂଜା କଲେ ଅପାର ଶାନ୍ତି ମିଳେ, ଧନଧାନ୍ୟରେ ଘର ପୂରିଉଠେ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରିଥା'ନ୍ତି ।

## ଗୁଣ୍ଡାଦିଆ ପର୍ବ/କିମିୟାଂ ଅବ

*(offering of toila paddy)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ବାର୍ହାଗଡ଼, ଗ୍ରାମ ପଞ୍ଚାୟତ: ବାର୍ହାଗଡ, ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୧୧, ଜାନୁୟାରୀ ୨୦୧୨**

**ତଥ୍ୟ ପ୍ରଦାନକାରୀ: ବାର୍ହାଗଡ଼ ଗ୍ରାମର ଶ୍ରୀଧର ଜୁଆଙ୍ଗ, କୈଳାସ ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ, ସନାତନ ଜୁଆଙ୍ଗ, ଶଇଳ ଜୁଆଙ୍ଗ, ବାରିଜ ଜୁଆଙ୍ଗ, ସାଗର ଜୁଆଙ୍ଗ, ରାଜ ଜୁଆଙ୍ଗ, ହୃଷି ଜୁଆଙ୍ଗ ଓ ବୀରବର ନାୟକ (ଗୋନାସିକା) ।**

ଜୁଆଙ୍ଗମାନଙ୍କର ଗୁଣ୍ଡାଦିଆ ପର୍ବଟି ଧାନକଟାକଟି ପରେପରେ ପ୍ରାୟ ଡିସେମ୍ବର-ଜାନୁୟାରୀ ମାସ ବେଳକୁ ପାଳିତ ହୋଇଥାଏ । ଏହା ଏକ କୃଷିଭିତ୍ତିକ ପର୍ବ । ଗୁଣ୍ଡାଦିଆ ପର୍ବ ପାଳନ ପୂର୍ବରୁ କୌଣସି ଜୁଆଙ୍ଗ ଧାନ ଅମଳ କରି ନିଜ ଘରକୁ ନେଇ ନଥା'ନ୍ତି । ପୂର୍ବପୁରୁଷ ଅମଳରୁ ଆଜି ପର୍ଯ୍ୟନ୍ତ ଜୁଆଙ୍ଗମାନେ ଏକ ବିଶେଷ ଧରଣର ବିଳମ୍ବ କିସମର ଧାନ ଚାଷ କରିଆସୁଛନ୍ତି । ଏହାକୁ ଦେବତାଙ୍କ ଧାନ ବୋଲି ଜୁଆଙ୍ଗମାନେ ବିବେଚନା କରନ୍ତି । ଏହି ବିଳମ୍ବ କିସମର ଧାନକୁ **'କିମ୍ବା ଧାନ'** ବା

**'କିମିୟାଂ ବୁଆ'** କୁହାଯାଏ । ଏକାନ୍‌ରୁ ଏହି କିମା ଧାନ କାଟି ଆଣିବା ପରେ ଜୁଆଙ୍ଗମାନେ ତାକୁ ଧାନ ଖଳାରେ ଗଦେଇ ଦିଅନ୍ତି । ଏହି ଅବସରରେ ଜୁଆଙ୍ଗମାନେ ଧାନଖଳାରେ ପ୍ରଥମେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଏହି ନୂଆଧାନକୁ ଅର୍ପଣ କରିବା ପରେ ବିଧିବଦ୍ଧ ଭାବେ ଧାନ ଅମଳରେ ଲାଗି ପଡନ୍ତି । ଏହାକୁ **ଗୁଣ୍ଡାଦିଆ ପର୍ବ** କୁହାଯାଏ । ଗୁଣ୍ଡାଦିଆ ପର୍ବ ପାଳନ କରାଯିବା ପରେ ଗାଁର ସମସ୍ତ ଜୁଆଙ୍ଗ ନିଜନିଜର ଖଳାରେ ଧାନ ଅମଳରେ ଲାଗିପଡନ୍ତି । ଗୁଣ୍ଡାଦିଆ ପର୍ବ ପାଳନ ପୂର୍ବରୁ ଧାନ ଅମଳ ହୋଇ ନଥାଏ । **କିମ୍ବା ଧାନକୁ କିମିୟାଂ ବୁଆ** କୁହାଯାଉଥିବାରୁ ଏହାକୁ **କିମିୟାଂ ଅବ** ମଧ୍ୟ କୁହାଯାଇଥାଏ ।

ଗୁଣ୍ଡାଦିଆ ପର୍ବଟି ଗୋଟିଏ ଦିନ ପାଳିତ ହୋଇଥାଏ । ବିଶେଷକରି ମାର୍ଗଶିର-ପୌଷ ମାସ ବେଳକୁ ଜୁଆଙ୍ଗମାନଙ୍କ ଏକାନ୍‌ରେ କିମା ଧାନ (ଶାରଦ ଧାନ) ପାଚି ଆସିଥାଏ । ଏହାପରେ ଅମଳର ଋତୁ ଆସିଯାଏ । ମାତ୍ର ଗୁଣ୍ଡାଦିଆ ପର୍ବଟି ପାଳନ ନ ହେବା ପର୍ଯ୍ୟନ୍ତ ଧାନଖଳାରୁ ଧାନ ଅମଳ ହୋଇପାରେନା । ଏଣୁ ଜୁଆଙ୍ଗମାନେ ମଣ୍ଡଘରେ ବସି ଗୁଣ୍ଡାଦିଆ ପର୍ବ ପାଳନ ପାଇଁ ଏକ ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ କରନ୍ତି ।

ଏକ ନିର୍ଦ୍ଦିଷ୍ଟ ଦିନରେ ଗ୍ରାମର ପ୍ରତି ଜୁଆଙ୍ଗ ପରିବାର ପକ୍ଷରୁ ଏହି ପର୍ବ ପାଳନ କରାଯାଇଥାଏ । ପ୍ରତ୍ୟକ ପରିବାରର ମୁଖ୍ୟ ସଦସ୍ୟ ଏକ ବଡ଼ ଡାଲାରେ ଅରୁଆ ଚାଉଳ, ସିନ୍ଦୁର, ହଳଦୀ, ଚନ୍ଦନ, ଧୂପ, କଦଳୀ, ଗୁଡ, ଶିଆଳିପତ୍ର, ଶାଳପତ୍ର ଓ ଅନ୍ୟାନ୍ୟ ଭୋଗ ସାମଗ୍ରୀ ଧରି ନିଜନିଜର ଧାନ ଖଳାକୁ ଯାଆନ୍ତି । ଏକାନ୍‌ରୁ ସଦ୍ୟ କଟା ହୋଇ ଆସିଥିବା ଏକ ଧାନ ବିଡ଼ାକୁ ନିଜ ଧାନ ଖଳାରେ ଜୁଆଙ୍ଗମାନେ ଗୋଡରେ ମଳି ସେଥିରୁ ଧାନ ସଂଗ୍ରହ କରନ୍ତି । ଏହି ଧାନକୁ କୁଲାରେ ପାଛୁଡାପାଛୁଡି କରି ସଫା କରିବା ପରେ ଏହାକୁ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି । ଏହି ଅବସରରେ ପ୍ରତି ଘରେ ପୂର୍ବରୁ ଅରୁଆଚାଉଳ, ମାଣ୍ଡିଆ, ଗଙ୍ଗେଇ, କାଙ୍ଗୁକୁ ଗୁଣ୍ଡ କରି ସେଥିରୁ ଏକ ବିଶେଷ ଧରଣର ଚୂନା ପ୍ରସ୍ତୁତ ହୋଇଥାଏ । ଏହି ଚୂନାରେ ଗୁଡ ଓ ଗରମପାଣି ମିଶେଇ ଏକ ଅର୍ଦ୍ଧତରଳ ମଣ୍ଡ ପ୍ରସ୍ତୁତ ହୁଏ । ଏଥିରେ ନୂଆ ଅମଳ ହୋଇଥିବା ଧାନରୁ ସଦ୍ୟ ପ୍ରସ୍ତୁତ ହୋଇଥିବା ଚୂନା ନାମକୁ ମାତ୍ର ମିଶଯାଏ । ଏହା ପରେ ଏହି ଅର୍ଦ୍ଧକଠିନ ମଣ୍ଡକୁ ଗୁଳାଗୁଳା କରି ପିଠା ପ୍ରସ୍ତୁତ କରାଯାଏ । ଏହାକୁ **'ଗୁଣ୍ଡା'** କୁହାଯାଏ । ଏହି 'ଗୁଣ୍ଡା'କୁ ଦେବଦେବୀଙ୍କୁ ଅର୍ପଣ କରାଯାଉଥିବାରୁ ଏହି ପର୍ବକୁ ଗୁଣ୍ଡାଦିଆ ପର୍ବ ବୋଲି କୁହାଯାଇଥାଏ ।

ଜୁଆଙ୍ଗଟିଏ ଏହି ଧାନକୁ ଧରମ୍ ଦେବତା, ବସୁମତି ମାତା, ପିତୃପୁରୁଷ ଏବଂ ଗ୍ରାମ ଶାଳରେ ପୂଜା ପାଉଥିବା ଦେବଦେବୀଙ୍କୁ ଅର୍ପଣ କରି ସେମାନଙ୍କର ଆଶିର୍ବାଦ ଭିକ୍ଷା କରନ୍ତି । ଚଳିତ ବର୍ଷ ଭଲ ଧାନ ଅମଳ ହେଉ ଏବଂ ଆଗାମୀ ଫସଲ ପାଇଁ ଭଲ ବର୍ଷା ହେଉ ବୋଲି ଜୁଆଙ୍ଗଟିଏ ଦେବଦେବୀଙ୍କୁ ପ୍ରାର୍ଥନା କରେ । ଏଥିରେ କୌଣସି ପଶୁପକ୍ଷୀ ବଳି ପଡି ନଥା'ନ୍ତି । ପ୍ରତ୍ୟକ ଜୁଆଙ୍ଗ

ପରିବାରର ମୁଖ୍ୟ ସଦସ୍ୟ ନିଜନିଜ ଧାନଖଳାରେ ପୃଥକ ପୃଥକ ଭାବେ ଗୁଣ୍ଡା ଦେଇଥାନ୍ତି । ଏହାପରେ ଜୁଆଙ୍ଗମାନେ ମହୁଲି କିମ୍ବା ହାଣ୍ଡିଆ ପିଇ ନିଶାସକ୍ତ ହୋଇ ପଡନ୍ତି । ଏହି ଗୁଣ୍ଡାଦିଆ ପର୍ବଟି ସବୁ ଜୁଆଙ୍ଗ ପିଢରେ ପାଳିତ ହୋଇ ନଥାଏ । ବିଶେଷକରି ଝାଡଖଣ୍ଡିଆ ପୀଢ ଅନ୍ତର୍ଗତ ବାର୍ହାଗଡ଼, ସାରିଆ, ହାତୀଶିଳା, ବୁଢିଘର, କପୋତତିହା, ପଣସନସା, ଉପରବାଲି ଅଞ୍ଚଳରେ ଗୁଣ୍ଡାଦିଆ ପର୍ବ ପାଳିତ ହେଉଥିବାର ଜଣାଯାଏ । ମାତ୍ର, ସାତଖଣ୍ଡିଆ ପିଢ ଅନ୍ତର୍ଗତ ଗୋନାସିକା, ଗୁପ୍ତଗଙ୍ଗା, ରାଇଡିଆ, କଦଳୀବାଡି, ବୈତରଣୀ ଆଦି ଗ୍ରାମଗୁଡିକରେ ଗୁଣ୍ଡାଦିଆ ପର୍ବ ପାଳିତ ହୁଏନାହିଁ ।

ଗୁଣ୍ଡାଦିଆ ପର୍ବ ଶେଷ ହୋଇଯିବା ପରେ ଜୁଆଙ୍ଗମାନେ ନିଜନିଜ ଧାନ ଖଳାରେ ଧାନ ଅମଳ କରି ନିଜ ଘରକୁ ନିଅନ୍ତି । ଜୁଆଙ୍ଗମାନେ ଖଳାରୁ ଧାନ ଅମଳ କରି ନିଜନିଜର ଘରକୁ ଆଣିବା ପରେ ଗାଁରେ **'ପାଇଚଲା'** ପର୍ବ ପାଳିତ ହୋଇଥାଏ ।

## ପାଇଚଲା

*(collection of paddy for village common fund)*

**ତଥ୍ୟ ସଂଗ୍ରହ ବିବରଣୀ**

**ଅଧ୍ୟୟନ କ୍ଷେତ୍ର**

**ଗ୍ରାମ: ବାର୍ହାଗଡ଼, ଗ୍ରାମ ପଞ୍ଚାୟତ: ବାର୍ହାଗଡ, ବ୍ଲକ୍: ବାଂଶପାଳ**

**ଅଧ୍ୟୟନ ଦିବସ: ୨୨ ଜାନୁୟାରୀ ୨୦୧୨**

**ତଥ୍ୟ ପ୍ରଦାନକାରୀ: ବାର୍ହାଗଡ଼ ଗ୍ରାମର ଶ୍ରୀଧର ଜୁଆଙ୍ଗ, କୈଳାସ ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ, ସନାତନ ଜୁଆଙ୍ଗ, ଶଇଳ ଜୁଆଙ୍ଗ, ବାରିକ ଜୁଆଙ୍ଗ, ସାଗର ଜୁଆଙ୍ଗ, ରାଜ ଜୁଆଙ୍ଗ, କୃଷି ଜୁଆଙ୍ଗ ଓ ବୀରବର ନାୟକ (ଗୋନାସିକା) ।**

ଧାନ ଅମଳ ହୋଇଯିବା ପରେ ଏହି ପର୍ବଟି ପାଳିତ ହୋଇଥାଏ । ମାଘପୋଡି (ପୁଷ୍ ପୁନେଇଁ) ଦିନ କେଇଟା ପୂର୍ବରୁ ଏହି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ଡିସେମ୍ବରରୁ ଜାନୁୟାରୀ ମାସ ମଧ୍ୟରେ ଏହା ଅନୁଷ୍ଠିତ ହୋଇଥାଏ । ଧାନ, ମାଣ୍ଡିଆ, କାଙ୍ଗୁ, ଗଙ୍ଗେଇ ଓ ଅନ୍ୟାନ୍ୟ ଶସ୍ୟ ଅମଳ ହୋଇଯିବା ପରେ ଏଥିରୁ କିଛି ଅଂଶ ଗ୍ରାମ ପାଣ୍ଠିକୁ ଆସିଥାଏ । ଏଥିନେଇ ଯେଉଁ କାର୍ଯ୍ୟକ୍ରମ କରାଯାଇଥାଏ ତାହାକୁ **'ପାଇଚଲା'** କୁହାଯାଏ । ଗାଁର ପଧାନ, ନାଗମ୍ ଓ ବାରଭାଇ ବସି ପାଇଚଲାର ଦିନଧାର୍ଯ୍ୟ କରନ୍ତି । ପାଇଚଲା ଦିନ ଖୁବ୍ ସକାଳୁ ଗାଁର କିଛି ଯୁବକ ସ୍ନାନସାରି ଅଖା କିମ୍ବା ବଡ଼ ଟୋକେଇ

ଏବଂ ଗୋଟିଏ ମାଣ (ପାଇ) ଧରି ଗ୍ରାମର ପ୍ରତ୍ୟକ ପରିବାର ପରିକ୍ରମା କରନ୍ତି । ଯୁବକମାନେ 'ପାଇ' ଧରି ଘରଘର ବୁଲିବାକୁ 'ପାଇଚଲା' କହନ୍ତି । ଯୁବକମାନେ ପ୍ରତ୍ୟକ ପରିବାରରୁ ଏହି ପାଇ (ମାଣ)ରେ ପାଏ କିମ୍ବା ଦୁଇ ପାଏ ଧାନ, ସୋରିଷ, ମାଣ୍ଡିଆ, କାଙ୍ଗୁ, ଗଙ୍ଗେଇ, ସୁତୁରିଡାଲି, ଚାଉଳ ଆଦି ଶସ୍ୟ ସଂଗ୍ରହ କରି ମଣ୍ଡଘରକୁ ଆଣନ୍ତି । ପାଇଚଲା ଦିନ ପାଖାପାଖି ଚାରିପାଞ୍ଚ ବସ୍ତା ଧାନ, ସୋରିଷ, ମାଣ୍ଡିଆ, କାଙ୍ଗୁ, ଗଙ୍ଗେଇ ଆଦି ଶସ୍ୟ ସଂଗୃହୀତ ହୋଇଥାଏ । ଏହାକୁ ମଣ୍ଡଘରର ଏକ ସାଧାରଣ ପାଣ୍ଠି *(common fund)* ମାଧ୍ୟମରେ ସଂରକ୍ଷିତ କରି ରଖାଯାଏ । ଏହାକୁ 'ଗ୍ରାମ ପାଣ୍ଠି' *(village common fund)* କୁହାଯାଏ । ଗ୍ରାମରୁ ଶସ୍ୟ ସଂଗୃହୀତ ହେବାପରେ କିଛି ଜୁଆଙ୍ଗ ଯୁବକ ପାଳନଡ଼ାକୁ ବଳି ସେଥିରୁ 'ଆଉଳିଆ' (ଓଳିଆ) ପ୍ରସ୍ତୁତ କରନ୍ତି । ଏହି ଓଳିଆମାନଙ୍କରେ ଗ୍ରାମରୁ ସଂଗୃହୀତ ହୋଇଥିବା ସମସ୍ତ ଶସ୍ୟକୁ ଆଗାମୀ ବର୍ଷକ ପାଇଁ ଗଚ୍ଛିତ ରଖାଯାଏ । ଏହି ଓଳିଆମାନ ପ୍ରସ୍ତୁତ ହୋଇଯିବା ପରେ ଏହାକୁ ମଣ୍ଡଘରେ ରଖାଯାଏ । ଗ୍ରାମର ନାଗମ୍, ପଧାନ ଓ ବାରଭାଇ ମଣ୍ଡଘରେ ଉପସ୍ଥିତ ରହି ବିଧି ମୁତାବକ ପୂଜାପାଠ କରି ଏହି 'ଆଉଳିଆ'ମାନଙ୍କୁ ମଣ୍ଡଘରେ ସ୍ଥାପନ କରନ୍ତି । ଏହି ଅବସରରେ ମଣ୍ଡଘର ସାମ୍ନାରେ ଥିବା ଗ୍ରାମଶିରି ଶାଳ ନିକଟରେ ଜୁଆଙ୍ଗମାନେ ନିଜର ପିତୃପୁରୁଷ, ଧରମ୍ ଦେବତା ଓ ବାସୁମତି ମାତାଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଓ କୁକୁଡା ଅର୍ପଣ କରନ୍ତି । ପୂଜାକାର୍ଯ୍ୟ ଶେଷ ହେବାପରେ ଗ୍ରାମର ନାଗମ୍, ପଧାନ ଓ ବାରଭାଇମାନେ ମଣ୍ଡଘରକୁ ଆସି ନିଜର ପିତୃପୁରୁଷଙ୍କୁ ମହୁଲି ମଦ ପ୍ରଦାନ କରିବା ପରେ ନିଜନିଜ ମଧ୍ୟରେ ମଦ୍ୟପାନ କରନ୍ତି ।

ପ୍ରତ୍ୟକ ଜୁଆଙ୍ଗ ଗ୍ରାମରେ ଏହି 'ଗାଁ ପାଣ୍ଠି'ର ଏକ ଉଲ୍ଲେଖନୀୟ ଭୂମିକା ରହିଥାଏ । ଗାଁରେ କିଏ ବିପଦଆପଦରେ ପଡିଲେ, କାହାକୁ ରୋଗବଇରାଗ ହେଲେ କିମ୍ବା କୌଣସି ଗରିବ ଜୁଆଙ୍ଗର କିଛି ସାମାଜିକ କାର୍ଯ୍ୟକ୍ରମ ପଡ଼ିଲେ ସେମାନଙ୍କୁ ଏହି 'ଗାଁ ପାଣ୍ଠି'ରୁ ସହାୟତା ପ୍ରଦାନ କରାଯାଇଥାଏ । ଏହାବ୍ୟତୀତ 'ଗାଁ ପାଣ୍ଠି'ଟି ଏକ ଗ୍ରାମ୍ୟବ୍ୟାଙ୍କ୍ ଭଳି କାର୍ଯ୍ୟ କରିଥାଏ । ଏହି ପାଣ୍ଠିରୁ ଗ୍ରାମର ଜୁଆଙ୍ଗମାନଙ୍କୁ ସେମାନଙ୍କ ଆବଶ୍ୟକ ମୁତାବକ ଋଣ ଆକାରରେ ଯୋଗେଇ ଦିଆଯାଇଥାଏ । ବୋଧହୁଏ, ଜୁଆଙ୍ଗମାନଙ୍କର ଏହି ବହୁ ପ୍ରାଚୀନ ପାରଂପରିକ 'ଗ୍ରାମ ପାଣ୍ଠି' ବ୍ୟବସ୍ଥାରୁ ହିଁ ଆଧୁନିକ ଯୁଗର ସମବାୟ ସଂସ୍ଥା ଏବଂ ସ୍ୱୟଂ ସହାୟକ ଗୋଷ୍ଠୀ (ଏସ୍‌ଏଚ୍‌ଜି)ର ଉଦ୍ଭବ ହୋଇଛି ବୋଲି କୁହାଯାଇପାରେ । ଗ୍ରାମକୁ କୌଣସି ବହିରାଗତ ବିଦେଶୀ କିମ୍ବା ଅତିଥି ଆସିଲେ ସେମାନଙ୍କୁ ମଣ୍ଡଘରେ ଅତିଥି ସତ୍କାର କରାଯିବା ସହିତ ସେମାନଙ୍କ ରହିବା ଓ ଖାଇବା ପାଇଁ ଏହି 'ଗ୍ରାମ ପାଣ୍ଠି'ରୁ ଚାଉଳ, ଧାନ, ଡାଲି, ସୋରିଷ ଓ ଅନ୍ୟାନ୍ୟ ସାମଗ୍ରୀକୁ ବ୍ୟବହାର କରାଯାଇଥାଏ ।

# ଜୁଆଙ୍ଗମାନଙ୍କ ବାର୍ଷିକ ପର୍ବ ବିବରଣୀ

| କ୍ର.ନଂ | ପର୍ବର ନାମ | ପାଳିତ ହେଉଥିବା ମାସ |
|---|---|---|
| ୦୧ | ମାଘପୋଡ଼ି (ପୁଷ୍ ପୁନେଇଁ) | ଡିସେମ୍ବର-ଜାନୁୟାରୀ |
| ୦୨ | ଆମ୍ବନୂଆ | ମାର୍ଚ୍ଚ-ଏପ୍ରିଲ୍ |
| ୦୩ | ଅଖାଣି (ଶିକାର ପର୍ବ) | ଏପ୍ରିଲ୍-ମେ |
| ୦୪ | ତିର୍ତିୟା (ଅକ୍ଷିତୃତୀୟା) | ମେ |
| ୦୫ | ରଜ | ଜୁନ୍ |
| ୦୬ | ବାଙ୍କୁର୍ ଅବ (ଆଷାଡ଼ି ପର୍ବ) | ଜୁନ୍-ଜୁଲାଇ |
| ୦୭ | ପିଢପୂଜା | ଜୁଲାଇ-ଅଗଷ୍ଟ |
| ୦୮ | ଗହ୍ମାପୂର୍ଣ୍ଣିମା | ଅଗଷ୍ଟ |
| ୦୯ | ଧାନ ନୂଆଖିଆ (ଗୁଡାବୁଆ) | ଅଗଷ୍ଟ-ସେପ୍‌ଟେମ୍ବର |
| ୧୦ | ରୁମା ପର୍ବ (କାଳାର୍ ଅବ) | ସେପ୍‌ଟେମ୍ବର-ଅକ୍ଟୋବର |
| ୧୧ | ଡଇଳା ପୂଜା (ବିଲପୂଜା) | ଅକ୍ଟୋବର-ନଭେମ୍ବର |
| ୧୨ | ଗୁରୁବାର ଓଷା | ନଭେମ୍ବର-ଡିସେମ୍ବର |
| ୧୩ | ଗୁଣ୍ଡାଦିଆ (କିମିୟାଂ ଅବ) | ଡିସେମ୍ବର-ଜାନୁୟାରୀ |
| ୧୪ | ପାଇଚଲା | ଡିସେମ୍ବର-ଜାନୁୟାରୀ |




ଜୁଆଙ୍ଗ ବାଳିକାଟି ଭାତ ଖାଉଛି



► ହାଟଫେରନ୍ତି ଜୁଆଙ୍ଗ ମହିଳାମାନେ



ଜୁଆଙ୍ଗ ମହିଳାମାନେ ଝରଣାରୁ ପାଣି ସଂଗ୍ରହ କରି ଗାଁକୁ ଫେରୁଛନ୍ତି ।



ହାତୀ, ବାର୍ହା ଆଦି ଜଙ୍ଗଲୀ ପଶୁଙ୍କ କବଳରୁ ଧାନ କ୍ଷେତକୁ ଜଗିବା ଉଦ୍ଦେଶ୍ୟରେ ଜୁଆଙ୍ଗଟି ଗଛ ଉପରେ ନିର୍ମାଣ କରାଯାଇଥିବା ମଞ୍ଚା ଉପରେ ବସିଛି ।

▶ ଭୂମିରେ ଖୋଳାଯାଇଥିବା ଏହି ବାମ୍ଫି (ଚୁଆ) ହିଁ ଜୁଆଙ୍ଗମାନଙ୍କ ପାନୀୟ ଜଳକଷ୍ଟ ଦୂର କରିଥାଏ ।



▶ ଗ୍ରୀଷ୍ମ ଦିନିଆ ଜଳକଷ୍ଟ: ଜୁଆଙ୍ଗ ମହିଳାମାନେ ଶୁଖି ଯାଇଥିବା ଏକ ଚୁଆରୁ ପାଣି ସଂଗ୍ରହ କରୁଛନ୍ତି ।



▶ 'ଜୁରିପକା' (ସମୂହ ମଦ୍ୟପାନ)



▶ ମଶାରି ସହାୟତାରେ ଜୁଆଙ୍ଗ ମହିଳାଟି ଝିଟିପୋକ (କଲେଇ) ସଂଗ୍ରହ କରୁଛି ।



▶ ଏକ ବର୍ଷା ଦିନିଆ ସ୍ମୃତି: ବର୍ଷାରେ ଛତା ଧରି ପାଣି ଆଣିବାକୁ ଯାଉଥିବା ଜୁଆଙ୍ଗ ସେଲାନ୍‌ମାନେ...

# ଷଷ୍ଠ ପରିଛେଦ

## ଜୁଆଙ୍ଗ ଶବ୍ଦକୋଷ

*(glossary)*

| ଜୁଆଙ୍ଗ ଭାଷା | ଓଡ଼ିଆ ଅର୍ଥ | ଇଂରାଜୀ ଅର୍ଥ |
|---|---|---|
| **ଖାଦ୍ୟ ପଦାର୍ଥ** | | |
| *(Foods)* | | |
| ଡଣ | ଭାତ | rice |
| ରୁଙ୍କୁପ୍ | ଚାଉଳ | rice |
| ଆରିଗା | ଡାଲି, ତର୍କାରୀ | curry |
| କାଳାର୍ | କଙ୍କଡା | crab |
| ଆଇଳା | ମାଂସ | meat |
| କାରଙ୍ଗ୍ | ମାଛ | fish |

| | | |
|---|---|---|
| କାରଙ୍ଗ୍ ଆରିଗା | ମାଛ ତର୍କାରୀ | fish curry |
| ସେଙ୍ଗଏ ଆଇଲା | କୁକୁଡା ମାଂସ | chicken |
| ଅଲାକ୍ | ପିଠା | cake |
| ବେଢେରାଂ | ଧୂଆଁପତ୍ର | tobacco |
| କାଳିଆ | ବିଡ଼ି (ଧୂଆଁପତ୍ର ନଳୀ) | tobacco pipe |
| ଦୁଦ | ଦୁଗ୍ଧ | milk |

## ଗୃହପାଳିତ ପଶୁପକ୍ଷୀ

*(Domestic Animals)*

| | | |
|---|---|---|
| ସେଙ୍ଗଏ | କୁକୁଡା | hen |
| ଲ୍ଲାଙ୍ଗୁରୁଇ | ଗଞ୍ଜା | cock |
| ଅଲେଢ୍ | ଗାଈ | cow |
| ଉଣ୍ଡିଆ | ଷଣ୍ଢ | bull |
| ବୁତାଏ | ଗୃହପାଳିତ ଘୁଷୁରୀ | pig |
| ମଇଁଷି | ମଇଁଷି | buffalo |
| ସେଲକ୍ | କୁକୁର | dog |
| ବିଲ୍ଲାଇ | ବିଲେଇ | cat |
| ମେରମ୍ | ଛେଳି | goat |
| ଗାଡରା | ମେଣ୍ଢା | sheep |
| ଇତାଙ୍ଗ୍ | ଗୋବର | dung |
| ଅଲେଇ ଇତାଙ୍ଗ୍ | ଗାଈ ଗୋବର | cow dung |
| ଡେଡଙ୍ଗ୍ | ଗାଈ ବେକର ଘଣ୍ଟି | cow bell |
| ଅଡଂସ୍ | ବତକ | duck |

## ଜୀବଜନ୍ତୁ ଓ ପକ୍ଷୀ

*(Animals & Birds)*

| | | |
|---|---|---|
| କନ୍ତେର୍ | ଚଢ଼େଇ | bird |
| ମାରାକ୍ | ମୟୂର | peacock |
| ହଂସ | ହଂସ | gander |
| ମାଦୁଳି | ବାଦୁଡି | bat |
| ସାକଏ | ମାଙ୍କଡ଼ | monkey |
| କଲେଙ୍ଗ୍ | ମୂଷା | rat |
| ସାର୍ଦ୍ଦୁଲ୍ | ହେଟାବାଘ | wolf |
| ଗରେଇ | ଏଣ୍ଡୁଅ | lizard |
| ଆଣ୍ଡୁ | ହନୁ | monkey |
| ବଣ ବୁତାଏ | ଜଙ୍ଗଲୀ ବାର୍ହା | boar |
| ମେରେଗ | ସମ୍ବର, ହରିଣ | elk/deer |
| କିଳକ୍ | ବାଘ | tiger |
| ଜଟ କିଳକ୍ | ସିଂହ | lion |
| ଏସେ | ଉକୁଣୀ | louse |
| ବାନାଏ | ଭାଲୁ | bear |
| ଶିଆଳ | ବିଲୁଆ | jackal |
| ଆତି | ହାତୀ | elephant |
| ଗୋଳା | ଘୋଡା | horse |
| ତୁକୁର୍ | ବେଙ୍ଗ | frog |
| ବାବୁଙ୍ଗ୍ | ସାପ | snake |
| ଅଳଙ୍ଗ | ଠେକୁଆ | rabbit |
| କାଟାକ୍ସର୍ | ବଣବିଲେଇ | wild cat |
| ସାରେପ | କୁଂଭୀର | crocodile |
| ଗଣ୍ଡେଚ୍ | ଗୁଣ୍ଡୁଚିମୂଷା | squirrel |

| | | |
|---|---|---|
| ଗଦ | ଗଧ | donkey |
| ଗୁଆଁରା | କାଉ | crow |
| ଚେଣା | ଶାଗୁଣା | vulture |
| ରାଏକା | ଶୁଆ | parrot |
| କୁଙ୍କୁଲାଙ୍ଗ | ପ୍ରଜାପତି | buterfly |
| ଉଣ୍ଡିଲାଗ୍ | ଝିଣ୍ଟିକା | grasshopper |
| ପାରା | ପାରା | pigeon |
| କୁଇଲି | କୋଇଲି | cuckoo |
| ଚେୟାନ୍ତେର | ଘରଚଟିଆ | house sparrow |
| ବୁଣି | ବଣି | myna |
| କୁକୁଡାଏ | କପୋତ | dove |
| ତୁପଗ୍ | ପେଚା | owl |
| ବାରାଳା | ଆତ | custard apple |
| ଉସୁରୁବାଙ୍ଗ୍ | ବିରୁଡି | wasp |
| ସୁଆଁଲି | ଅସରପା | cockroach |

## ବୃକ୍ଷଲତା ଓ ଜଙ୍ଗଲଜାତ ଦ୍ରବ୍ୟ

*(Trees & Jungle products)*

| | | |
|---|---|---|
| ସୁମୁସିଂ | ଗଛ | tree |
| ସଲପ୍ ସୁମୁସିଂ | ସଲପ ଗଛ | salap tree |
| ଶାରିଗା ସୁମୁସିଂ | ଶାଳଗଛ | sal tree |
| ବାଙ୍ଗ୍ରୁର୍ ସୁମୁସିଂ | କୁସୁମ ଗଛ | kusum tree |
| ତିନ୍ତିଣି ସୁମୁସିଂ | ତେନ୍ତୁଳି ଗଛ | tamarind tree |
| ଶେଙ୍ଗନ୍ | କାଠ | wood |
| ଆଳ | ବାଉଁଶ | bamboo |
| ଆଲାକ୍ | ପତ୍ର | leaf |

| | | |
|---|---|---|
| ସୁତି | ଶର୍ଗିପତ୍ର ଠୋଲା | sal leaf cup |
| ଗଦାମ୍ | ପିଜୁଳି | guava |
| ବଢ ସୁମୁସିଂ | ବରଗଛ | banyan tree |
| ଲାଙ୍ଗଣଇ | ଲାଲ ରଂଗର ଏକପ୍ରକାର ଜଙ୍ଗଲୀଫଳ | a tribal fruit |

## ବସ୍ତ୍ର, ଅଳଙ୍କାର ଓ ପ୍ରସାଧନ ସାମଗ୍ରୀ

*(Dress, Ornaments & Adornments)*

| | | |
|---|---|---|
| ଅଜନ୍ | ତେଲ | oil |
| ସାବୁନ୍ | ସାବୁନ୍ | soap |
| କାଡ଼ି | ଦାନ୍ତକାଠି | tooth brush stick |
| କତେ | ଶାଢ଼ି | saree |
| ଉଙ୍ଗି | ସାର୍ଟ | shirt |
| ଚେଢ଼ି | ଅନ୍ତଃବସ୍ତ୍ର | inner wear |
| ଇରିଆଳି | ଚିତା କୁଟେଇବା | tattoo |
| କୁଷ୍ଟି | ହାର | necklace |
| କୁଣ୍ଡି | ମାଳି | neck chain |
| ମତେଜ୍ ପୁଲି | ନାକ ଫୁଲ | nose ring |
| ଜଲକ୍ | କାନ ଫୁଲ | ear ornaments |
| ଜଂପା | ମୁଣ୍ଡ ଚାପ କଣ୍ଟା | hair pin |
| ମୁଦି | ମୁଦି | ring |
| ଗାଡୁଆ | ପାଦଖଡୁ | anklet |
| ପାଜାଲି | ପାଉଁଜି | anklet |
| ଡୁଣ୍ଡି | ନୋଥ | nose ring |
| ତାଡ | ବାଜୁ | armlet |
| ଗାଡୁଆ | କଙ୍କଣ | bracelet |

| | | |
|---|---|---|
| କାଡୁ | ଚୁଡ଼ି | bangle |
| ଅଣ୍ଟାଡୁରି | ଅଣ୍ଟାସୁତା | Waistband |
| ଡୁଣ୍ଡି | ନୋଥ | nose ring |

## ଘରକରଣା ଉପକରଣ

*(Household objects)*

| | | |
|---|---|---|
| ଉକୁ | ଚୁଲି | oven |
| ଇଞ୍ଜ୍ୟାଁ (ଇନ୍ୟାଁ) | ଘର | house |
| ସେଡ଼ାକ୍ | କବାଟ | door |
| ଏଲେ | ମୂଷଳ | pestle |
| ଏସର୍ | ଧାନକୁଟୁଣା | paddy grinder |
| ଆଟାସର୍ | ଶିଳ | currystone |
| କନେଚାଙ୍ଗ୍ | ଶିଳପୁଆ | currystone |
| ଦାଅ | ଦାଆ | sickle |
| ଆଡିକା | ଭାତ ହାଣ୍ଡି | cooking pot |
| ଶାବଳ | ଶାବଳ | crowbar |
| କୁଦାଳି | କୋଦାଳ | spade |
| ମିଶାଣି | ଶିଡି | ladder |
| ଜନ୍ତୁରି | ଚକି | grinding stone |
| ଚଲା | ଚାଲୁଣି | strainer/sieve |
| କୁସୁଣି | କାଠ ଡ଼ଙ୍କି | ladle |
| ସାଟୁ | ଲାଉ ଡ଼ଙ୍କି | gourd ladle |
| ଢେନକ୍ | ଛାମ୍ପୁଣି | broom |
| ସାରାକା | ପହଁରା | broom |
| ଉଡାନ୍ | କୁଲା | winnowing fan |
| ଢେକି | ଢିଙ୍କି | wooden oil press |

| | | |
|---|---|---|
| ପଞ୍ଜୁରୀ | ପଞ୍ଜୁରୀ | bird's cage |
| କଟ | ଖଟିଆ | charpoy/string cot |
| ଡିବିରି | ଡିବିରି | lamp |
| ବାଟି/ଡାଙ୍କେନ୍/ପାଇମାଣ/ଗଉଣି | | measuring bowl |
| ଟେଲେଙ୍ଗ୍ ଟେଲେଙ୍ଗ୍ | ସାଇକେଲ୍ | cycle |
| ବିଣ୍ଡି | ନିଆଁହୁଳା | burning faggot |
| କାଳିଆ | ବିଡ଼ି | tobacco pipe |
| ବେଢେରାଂ | ଧୂଆଁପତ୍ର | tobacco |

## ଖାଦ୍ୟଶସ୍ୟ

*(crops)*

| | | |
|---|---|---|
| କୁଦୁ | ମାଣ୍ଡିଆ | ragi |
| ଜିଞ୍ଜାରି | (ଗଙ୍ଗେଇ) ବାଜରା | millet |
| ଗଅମ୍ | ଗହମ | wheat |
| ଚନା | ଚଣା | minor millet |
| ଜୁଆଣି | ମକା | maize |
| ସେଣାଏ | ହରଡ଼ | red gram |
| ବୁଆ | ଧାନ | paddy |
| କିମାଧାନ(କିମିୟାଂ ବୁଆ) | ବିଳମ୍ବ କିସମ ଧାନ | late variety paddy |
| କନେୟାଂ ବୁଆ | ସଅଳ କିସମ ଧାନ | quick variety paddy |
| ରୁଙ୍କୁପ୍ | ଚାଉଳ | rice |
| ସୁଲିର୍ | ବିରି | black gram |
| କଳତ୍ | କୋଳଥ | horse gram |
| ମୁଗ | ମୁଗ | green gram |

| | | |
|---|---|---|
| ମୁସ୍‌ରୀ | ମସୁର | lentils |
| ବୁଟ | ବୁଟ | ground gram |
| ମୋଟରଦାନା | ମୋଟର ଛୁଇଁ | pea |
| ରାମଡିଳା | ରାଶି | sesamum |
| ସୁରୁଷୁ | ଶୋରିଷ | mustard |
| ଚିନାବାଦାମ୍ | ବାଦାମ | ground nut |
| ଶିମ | ଶିମ୍ବ | bean |
| ଅର୍‌ସି | ଅଳସୀ | nizar |
| ତିନ୍ତିଶି | ତେନ୍ତୁଳି | tamarind |
| କାଙ୍ଗୁ | ସୁଆଁ | grass seeds |
| କାଳାର୍ (ରୁମା) | ବରୁଗୁଡି | bean |
| କିଜିରି | ଖଜୁରୀ | dates |

## କୃଷି ଉପକରଣ

*(Agreecultural Equipments)*

| | | |
|---|---|---|
| ମାଚା | ମଞ୍ଚା | espalier |
| ରୁକୁଣିବାଡି | ଉକୁଣୀ | bamboo hook |
| ସିନି | ଲଙ୍ଗଳ | plough |
| ଆଲନା | ଲଙ୍ଗଳଲୁହା | handle of plough |
| ମଇକାଠ | ମଡ଼ି | earth leveller |
| ଯୁଆଳି | ଯୁଆଳି | yoke |
| କୁଦାଳି | କୋଦାଳ | spade |
| ଦାଅ | ଦାଆ | sickle |
| | ଗାଇ ଘଣ୍ଟି | cow bell |
| ଗାଣ୍ଟୁଆ | ଗୋବର ଝୁଡି | dung collecting basket |

| | | |
|---|---|---|
| ଚାତା | ଛତା | bamboo & leaf hat |
| ଟାଙ୍କାରା | ଧାନଖଳା | paddy-ground |
| ବୁଆବାଦା | ଧାନ ଗଦା | paddy heap |
| ଆକା | ଗାଇବନ୍ଧା ପଘା | tether |
| ଦଅଳ | ଅମାର | granary |
| ଆଉଳିଆ | ଧାନଓଳିଆ | paddy container |
| ଆଗର୍ | ବାହୁଙ୍ଗି | carrying pole |
| କୁଦୁଆଉଳିଆ | ମାଣ୍ଡିଆ ଓଳିଆ | ragi granary |
| ଜୁଙ୍ଗ୍ | ଛଣ | straw |
| ବେଣ୍ଡି | ଅଗ୍ନି ସଂଯୁକ୍ତ ପାଳବିଣ୍ଡା | fire catcher |
| ଏକାନ୍ | ଧାନକ୍ଷେତ | paddy field |

## ପନିପରିବା, ମସଲା

*(Vegetables)*

| | | |
|---|---|---|
| ବାଇତାଳୁପ୍ | କଖାରୁ | pumpkin |
| ଗାତାପାଲା | ସଜନା | drum stick |
| ଜେଡ଼ା | ଅମୃତଭଣ୍ଡା | papaya |
| କୋବି | କୋବି | cabbage |
| ଶିମ | ଶିମ୍ବ | bean |
| ବିଲାତି | ଟମାଟର | tomato |
| ବାଇଗଣ | ବାଇଗଣ | brinjal |
| ମୂଳା | ମୂଳା | radish |
| ରେସୁଣ | ରସୁଣ | garlic |
| ଉଲି | ପିଆଜ | onion |
| ଅଦା | ଅଦା | ginger |

| | | |
|---|---|---|
| ସାଙ୍ଗ୍‌ସାଙ୍ଗ୍ | ହଳଦି | turmeric |
| ଡୁଙ୍ଗାରି | ଲଙ୍କା | chilli |

## ମାଟି ଓ ବାଉଁଶ ନିର୍ମିତ ଉପକରଣ

*(Pottery & Basketry)*

| | | |
|---|---|---|
| ଆଟିକା | ମାଟି ହାଣ୍ଡି | earthen pot |
| କାଳାସା | ମାଠିଆ | pitcher |
| | ବାଉଁଶ ପାଚିଆ | basket |
| କାଳିଆ | ଧୂଆଁପତ୍ର ଚିଲମ | tabacco pipe |
| ବେଢେରାଙ୍ଗ | ଧୂଆଁପତ୍ର | tabacco |
| ଘାରି | କୁକୁଡାଘୋଡଣୀ | hen cover |
| ଆଟିଆ | ମସିଣା | large grain mat |

## ଗୃହର ପ୍ରକାରଭେଦ ଓ ବିଭିନ୍ନ ଅଂଶ

*(House types & parts of house)*

| | | |
|---|---|---|
| ଇଞ୍ଜ୍ୟା (ଇନ୍ୟା) | ଘର | house |
| କୁଣ୍ଡି | ଖୁଣ୍ଟି | pillar |
| ଝର୍କାନି | ଝରକା | window |
| ସେଡାକ୍ | କବାଟ | door |
| ସେଙ୍ଗଏ ଗୁଆଳ | କୁକୁଡାଘର | poultry pen |
| ମେରମ୍ ଗୁଆଳ | ଛେଳିଘର | goat pen |
| ଅଳେଢ୍ ଗୁଆଳ | ଗୋରୁ ଗୁହାଳ | cowshed |
| ବୁଡାଇ ଗୁଆଳ | ଘୁଷୁରୀ ଘର | pig sty |
| କାଥ | କାନ୍ଥ | wall |
| ଉକୁ | ଚୁଲି | oven |

## ପ୍ରକୃତି ସମ୍ପର୍କିତ କିଛି ଶବ୍ଦ

*(Natural Names)*

| | | |
|---|---|---|
| ନାଳ | ନଦୀ | river |
| ଉଳି | ପାହାଡ | hill |
| ବଣ | ଜଙ୍ଗଲ | forest |
| ଜରଣ୍ | ଝରଣା | stream |
| ଏଗେର୍ | ପଥର | stone |
| ଲଟପ୍ | ମାଟି | earth |
| କୟୁ | ପବନ | air/wind |
| ଡାକ୍ | ପାଣି | water |
| ଲାଲାଚ୍ | ନିଆଁ | fire |
| ବେଳ | ସୂର୍ଯ୍ୟ | sun |
| ଲେରାଙ୍ଗ୍ | ଜହ୍ନ | moon |
| ଆକାଶ | ଆକାଶ | sky |
| କୁଞ୍ଜିମ୍ ଡାକ୍ | ତାରା | star |
| ଗୁଟୁକିରେ | ଘଡ଼ଘଡ଼ି | thunder |
| ଗିମା | ବର୍ଷା | rain |
| ଏଦାର୍ | ରାତି | night |
| ମେସାର୍ | ଦିନ | day |
| ଗଡାକ୍ | ଜମି | land |
| ତଇଲା | ଉଚ୍ଚ ଜମି | high land |
| ଉମିସା | ଅମାବାସ୍ୟା | new moon |
| ପୂନେଇଁ | ପୂର୍ଣ୍ଣିମା | full moon |
| ଗରନ୍ | ଗ୍ରହଣ | eclipse |

## ଶିକାର ସରଞ୍ଜାମ

*(Hunting elements)*

| | | |
|---|---|---|
| କାକାକ୍ କକମ୍ | ଧନୁ ଶର | bow & arrow |
| ଶେମର୍ | ଛୁରା | knife |
| ଗୁଟିଆ | ଟାଙ୍ଗିଆ | axe |
| | ପକ୍ଷୀଶିକାରଯନ୍ତ୍ର | glued sticks for catching birds |
| ବର୍ଛା | ବର୍ଛା | spear |
| ଖଣ୍ଡା | ଖଣ୍ଡା | sword |
| କୁଟୁରି | କଟୁରୀ | knife for cutting wood |

## ପରିବାର ଓ ସମ୍ପର୍କୀୟ

*(kith & kin)*

| | | |
|---|---|---|
| ବା/ଅବାଏଁ | ବାପା, ଶ୍ୱଶୁର | father/-in-law |
| ବଇଂ/ମାମି | ମାଆ/ଶାଶୁ | mother/-in-law |
| କା | ବଡ଼ଭାଇ | elder brother |
| ବକ | ସାନଭାଇ | younger brother |
| ଆଢିଂ | ବଡ଼ଭଉଣୀ | elder sister |
| ବକରାଇ | ସାନ ଭଉଣୀ | younger sister |
| ଉଆଳି | ପିଲା | child |
| କନନ୍ | ପୁତ୍ର | son |
| କଅଲାନ୍ | କନ୍ୟା | daughter |
| କୁଲି | ଭାଉଜ | sister-in-law |
| କିମିଣ୍ଡାଏ | ଭାଇବୋହୂ | daughter-in-law |

| | | |
|---|---|---|
| ଜନନ | ପୁଅ | son |
| ବୋଇରାଏବୋହୂ | | daughter-in-law |
| ସାଉ | ସ୍ୱାମୀ | husband |
| କୁଟୁମ | ସ୍ତ୍ରୀ | wife |
| ବୁଢ଼ା | ବୁଢ଼ା | old man |
| କାଣ୍ଡାଏ | ବୁଢ଼ି | old woman |
| କଙ୍ଗେର | ଯୁବକ | young man |
| ସେଲାନ୍ | ଯୁବତୀ | young woman |
| ବାଉଁତାଏ | ବିବାହିତ ଯୁବତୀ | married girl |
| ବାଉଁତା | ବିବାହିତ ଯୁବକ | married boy |
| ଅଜା | ଜେଜେ/ଅଜା | grand father |
| ନାନ | ଜେଜେମା/ଆଇ | grand mother |
| ଆତିରେଇ | ବଡ଼ବାପା | father's eld. brother |
| ଦାଦି | ଦାଦା | father's yng. brother |
| ଶାଣୁଇ | ପିଉସୀ | father's sister |
| ମାମୁଇ | ମାମୁ | mother's brother |
| ସାନ୍ବୁଇ | ମାଉସୀ | mother's sister |

## ବିଭିନ୍ନ ପ୍ରକାର ଫଳ ଓ ଫୁଲ

*(Fruits & Flowers)*

| | | |
|---|---|---|
| ବାଇତାଲୁପ୍ | କଖାରୁ | pumpkin |
| ସୁମୁସିଂ | ଗଛ | tree |
| ରସିଂ | ଫୁଲ | flower |
| ଭାଲିଆ | କାଜୁ | cashew |

| | | |
|---|---|---|
| ଢେଡ଼ା | ଅମୃତଭଣ୍ଡା | papaya |
| ଅଲେ | ଆମ୍ବ | mango |
| ଅଣସମ୍ | ପଣସ | jack fruit |
| ଗଦାମ୍ | ପିଜୁଳି | guava |
| କୁଦିଳ | କଦଳୀ | plantain |
| ଜୁଆଣି | ମକା | maize |
| ମୁଣ୍ଡୁନ୍ | ମହୁଲ | mahua |
| ଆଳ | ବାଉଁଶ | bamboo |
| ତିନ୍ତିଣି | ତେନ୍ତୁଳି | tamarind |
| ନିମ | ଲିମ୍ବ | neem |
| ଗାଡାପାଲା | ସଜନା | drum stick |
| ନିମ୍ବୁ | ଲେମ୍ବୁ | lemon |
| ବଏର | ବରକୋଳି | berry |
| ଆଁଓଣା | ଅଁଳା | amla |
| ଜାମ୍ବୁ | ଜାମୁକୋଳି | black berry |
| କୁଲାବ୍ | ବେଲ | bel |
| ବାରାଳା | ଆତ | custard apple |
| କେଙ୍କରା | କାକୁଡି | cucumber |
| ତୁମ୍ବ | କଇଁଥ | wood apple |
| ଲୁଡିଆ | ନଡ଼ିଆ | coconut |
| ବାଙ୍କୁର୍ | କୁସୁମ | kusum fruit |
| ଟଗର | ଟଗର | ticoma |
| ବେଳ ରାସିଂ | ସୂର୍ଯ୍ୟମୁଖୀ | sun flower |
| ରାସିଂ | ଫୁଲ | flower |
| ପଦୁଅଁ | ପଦ୍ମ | lotus |
| କଇଁ | କଇଁ | lily |

| | | |
|---|---|---|
| କୁସୁମୀ | ଗେଣ୍ଡୁ | marrygold |
| ଗୁଲାପ | ଗୋଲାପ | rose |
| ମଲ୍ଲୀ | ମଲ୍ଲୀ | jasmine |
| ମାନ୍ଦାର୍ | ମନ୍ଦାର | china rose |

## ମାଛଧରା ଉପକରଣ :

*(Fishing elements)*

| | | |
|---|---|---|
| ଦାନ୍ଦର | ମୁଗୁରା | fish trap |
| ବୁଟୁଆ | ମାଛସଂଗ୍ରହମୁଣା | small basket for keeping tiny fish |
| କାରଙ୍ଗ୍ | ମାଛ | fish |
| କାରଙ୍ଗ୍ ଲାଠି | ବନ୍ସୀ କାଠି | fishing rod |

## ଶରୀରର ଅଙ୍ଗପ୍ରତ୍ୟଙ୍ଗ

*(Parts of the body)*

| | | |
|---|---|---|
| ଇଣି | ଶରୀର | body |
| ଏମର୍ | ଆଖି | eye |
| ମତେଢ୍ | ନାକ | nose |
| ଦାନ୍ତ | ଦାନ୍ତ | tooth |
| ଆଇଲାଙ୍ଗ୍ | ଜିଭ | tongue |
| ଇତି | ହାତ | hand |
| ଇଢିଙ୍ଗ୍ | ଗୋଡ | leg |
| ବକପ୍ | ମୁଣ୍ଡ | head |
| ଜୁଣ୍ଡା | ବାଳ | hair |

| | | |
|---|---|---|
| ଲୁତୁର୍ | କାନ | ear |
| ସିଲିତମ୍ | ଓଠ | lip |
| ଡମର୍ | ପାଟି | mouth |
| ଏମଙ୍ଗ୍ | କପାଳ | forehead |
| ଆଣ୍ଠୁ | ଆଣ୍ଠୁ | knee |
| ଇଡିପ୍ | ପେଟ | belly |
| ବୁକୁ | ଛାତି | chest |
| ଆଙ୍ଗୁଳି | ଅଙ୍ଗୁଳି | finger |
| ନକ | ନଖ | nail |
| ଡାଟୁଆ | ଜଙ୍ଘ | thigh |
| କିନପ୍ | ପିଠି | back |
| ମୁଅଁ | ମୁହଁ | face |
| ଗାଲ | ଗାଲ | cheek |
| କଙ୍କ | ଗଳା | throat |
| ଅଲାକଡ଼ି | ପାପୁଲି | palm |
| ଡାରମ୍ | କାନ୍ଧ | shoulder |
| ଡ଼ିଓ ଇତି | ଖାଇ ହାତ | right hand |
| ଶାଗି ଇତି | ବାମ ହାତ | left hand |
| ବୁଇ ଆଙ୍ଗୁଳି | ବୁଢ଼ାଙ୍ଗୁଳି | thumb |
| ଉସୁଣି | ନାଭି | navel |
| ଅଣ୍ଟା | ଅଣ୍ଟା | waist |
| ପାଞ୍ଜରା | ମେରୁଦଣ୍ଡ | backbone |
| ଚାଲ | ଚମଡା | skin |
| ଆଡ | ହାଡ଼ | bone |
| ଏମଡାକ୍ | ଲୁହ | tear |
| ନୁନୁ | ସ୍ତନ | breast |

# ଧର୍ମ ଓ ସଂସ୍କୃତି

*(Religion & Culture)*

| | | |
|---|---|---|
| ଦେଓଳ | ମନ୍ଦିର | temple |
| ପୁତୁଳା | ମୂର୍ତ୍ତି | image |
| ଢାଳେ | ମନ୍ତ୍ର | chant |
| କନିଆମୂଲ | କନ୍ୟାସୁନା | bride-price |
| ଶିରିଗୁଣି ଅଡା | ମଶାଣି | crematorium |
| ଶିରିଗୁଣି | ଆତ୍ମା | spirit/soul |
| ମହୁଲି | ମଦ | liquor |
| | ବର୍ଷା ଦେବତା | rain god |
| ବାସୁକି ମାତା | ପୃଥିବୀ | earth goddes |
| ଧରମ୍ ଦେବତା | ସୂର୍ଯ୍ୟ | sun god |
| ମଜାଙ୍ଗ୍ | ଗ୍ରାମସଭା ସ୍ଥଳ | meeting place |
| ଗ୍ରାମଶିରି | ଗ୍ରାମଦେବଦେବୀଙ୍କ ଆସ୍ଥାନ | place of village deity |
| ପଧାନ | ଗାଁ ମୁଖିଆ | village head |
| ନାଗମ୍/ବୁଇତା | ପୁରୋହିତ | village priest |
| ଡ଼ାଙ୍ଗୁଆ | ପଧାନଙ୍କ ସହଯୋଗୀ | assistant to village head man |
| କାର୍ଢି | ନାଗମ୍ଙ୍କ ସହଯୋଗୀ | assistant to village priest |
| ଆର୍ଡି (ପାରିଧି) | ଶିକାର ଯାତ୍ରା | hunting festival |
| ମଜାଙ୍ଗ୍(ମଣ୍ଡଘର) | ଯୁବକଙ୍କ ଘର | dormitory for unmarried youths |

| | | |
|---|---|---|
| ମେଲାଇଁଙ୍ଗ୍ୟାନ୍ | ଯୁବତୀଙ୍କ ଘର | dormitory for unmarried maidens |
| ପାଞ୍ଜିଆ | ଜ୍ୟୋତିଷ | astrologer |
| ରାଉଳିଆ | ଗୁଣିଆ | witch doctor |
| ନାଗମ୍ | ନାରୀ ପୂଜକ | female priest |
| ମଡ଼ାଦାଣ୍ଡିଆ | ଶବବାହକ | corpse bearer |
| କଙ୍ଗେର୍ | ଯୁବକ | young man |
| ସେଲାନ୍ | ଯୁବତୀ | young woman |
| ବୁଢା | ବୃଦ୍ଧ | old man |
| କାଣ୍ଡାଏ | ବୃଦ୍ଧା | old woman |
| ଡଣ୍ଡକାର | ମଜାଙ୍ଗ ତତ୍ତ୍ୱାବଧାରକ | guardian of dormitory |
| କୈଲଙ୍ଗ ଇଞ୍ଜ୍ୟା | ଗାଁ ଶାଳଘର | village diety's place |
| ଉଜା | ପୂଜା | worship |
| ତେଇକେ | ବଳି/ଛେଦ | sacrifice |
| ଅକତା | ପୂଜା ପାଇଁ ପ୍ରସ୍ତୁତ ଅରୁଆ ଚାଉଳ | white rice for worshipping |

## ବାଦ୍ୟଯନ୍ତ୍ର

*(Musical Instruments)*

| | | |
|---|---|---|
| ବାଇଦ | ମାଦଳ | double membrane drum |
| ବଡ଼କାଠ | ବିରାଟକାୟ ମାଦଳ | double membrane drum |

| | | |
|---|---|---|
| ଚାଙ୍ଗୁ | ଚାଙ୍ଗୁ | single membrane drum |
| ଝୁମୁକା | ଝୁମୁକା | musical instrument |

## ଋତୁ ଓ ସମୟ

*(Season)*

| | | |
|---|---|---|
| ଗିମା | ବର୍ଷା | rainy |
| ରାଙ୍ଗା | ଶୀତ | winter |
| କାରା | ଗ୍ରୀଷ୍ମ | summer |

## ସାଧାରଣ କ୍ରିୟା

*(Common Verbs)*

| | | |
|---|---|---|
| ଅନା | ଯିବା | go |
| ତେନା | ଆସିବା | come |
| ତକନା | ବସିବା | sit |
| ଅଙ୍ଗେ | ଶୁଣିବା | listen |
| ଗଳାଏ | ରାନ୍ଧିବା | cook |
| ଡେଗେ | ଡେଇଁବା | jump |
| ନେବଡ଼ମା | ଖେଳିବା | play |
| ଗୀତଏ | ଗୀତଗାଇବା | sing |
| କିଢେ | ନାଚିବା | dance |
| ଦବଡେ | ଦୌଡ଼ିବା | run |
| ଗୁଙ୍ଗେ | ପାଛୁଡିବା | winnow |
| ଲାରାଏ | ହସିବା | laugh |
| ଢେଗେ | କାନ୍ଦିବା | cry |

| | | |
|---|---|---|
| ଲେକେ | ଲେଖିବା | write |
| ଲେବେରେ | ଶୋଇବା | sleep |
| ଢିଗାଏନା | ବିଶ୍ରାମନେବା | rest |
| ସଙ୍ଗା | କିଣିବା | buy |
| ବନାଏ | ତିଆରିକରିବା | build |
| ତାଞ୍ଜ୍ୟା | ଚଢିବା | climb |
| ଲାଏ | ଖୋଳିବା | dig |
| ନିକୁରିମା | ଲଢେଇ କରିବା | fight |
| ତିଞ୍ଜେ | ଦେବା | give |
| ଗେ | ମାରିଦେବା | kill |
| ବାନମ୍ | ଚାପୁଡା ମାରିବା | flog |
| ପଡେ | ପଢିବା | read |
| ଆପସଙ୍ଗା | ବିକିବା | sell |
| ତଙ୍ଗନା | ଠିଆହେବା | stand |
| ସୁରମା | ଚୋରି କରିବା | steal |
| ପର୍ଅଁରେ | ପହଁରିବା | swim |
| ଢଗେ | ଝାଡୁକରିବା | sweep |
| କୁନା | ପିନ୍ଧିବା | wear |
| ବଲେୟୁ | ଜିତିବା | win |
| ଢଗେ | ଜଗିବା | watch |
| ସାପା | ସଫା କରିବା | wash |
| ଇଗେ | ଖୋଲିବା | open |
| କରେ | ବନ୍ଦ କରିବା | shut |
| ତମେ | ଫିଙ୍ଗିବା | throw |
| ତାକେ | ପ୍ରାର୍ଥନା କରିବା | pray |

## ସଂଖ୍ୟା

*(Numbers)*

| | | |
|---|---|---|
| ମୁଇଁଙ୍କୋ | ଏକ | one |
| ଅମ୍ବାର | ଦୁଇ | two |
| ଏଗୋଟା | ତିନି | three |
| ଗାଣ୍ଡାମି | ଚାରି | four |
| ପାଞ୍ଚଗୋଟା | ପାଞ୍ଚ | five |
| ଛଅଗୋଟା | ଛଅ | six |
| ସାତଗୋଟା | ସାତ | seven |
| ଆଠଗୋଟା | ଆଠ | eight |
| ନ'ଗୋଟା | ନଅ | nine |
| ଦଶଗୋଟା | ଦଶ | ten |
| ଏଗାରଗୋଟା | ଏଗାର | eleven |
| ବାରଗୋଟା | ବାର | twelve |
| ତେରଗୋଟା | ତେର | thirteen |
| ଚଉଦଗୋଟା | ଚଉଦ | fourteen |
| ପନ୍ଦରଗୋଟା | ପନ୍ଦର | fifteen |
| ଶଏଗୋଟା | ଶତ | hundred |

## *References*


- *Notes on the Juang-Man in India, Vol. XXVIII No 1 &2 -Elwin Verrier (1948)*
- *Juang jiban-sangita (Odia) -Sj Jagabandhu Padhi, Manorama Publishers, Cuttack (1986)*
- *Hand book on Juang, Adibasi Vol.XI No1&2 -Rout S. P. (1969)*
- *Juang Associasion: Man in India, Vol. IX -Bose N.K (1929)*
- *Descriptive Ethnology of Bengal -Dalton E.T (1872)*
- *Aeitihya, Sanskruti o' Paryatana; Kendujhara (Odia) -Ranjan Pradhan,Published by Creative Odisha, Kendrapada, Odisha (2012)*
- *Mortuary practices of the Paudi Bhuiyans and the Juangs of Odisha: An anthropological study (PhD thesis) -Sarita Nayak (2007)*
- *Odishara Adibasi Chitrakala (Odia) -Rabindra Nath Sahu, Published by Academy of Tribal Dialects and Culture (1993)*
- *Juanga manankar Nrutya o Geeta (Odia) -Gajadhar Majhi (Banaja-1997)*
- *Odishara Parbaparbani, Janijatra o Oshabrata (Odia) -Dr. Surendranath Panigrahi, Published by Satyanarayan Book Store, Binod Behari, Cuttack (2011)*
- *Adibasi, Vol.XXVI, Issue.3, July-September,1986 -Dr. N Patnaik, Published by Tribal and Harijan Research-cum-Training Institute, Govt. of Odisha, Bhubaneswar*

## ଲେଖକଙ୍କ ଅନ୍ୟାନ୍ୟ ବହି

- ମାଟିଗୀତ (କବିତା ସଂକଳନ)
- ତନୁଜା ବଳକୁ ନେଇ ଯେତେସବୁ ବେକାରିଆ ଗପ (ଗପ ସଂକଳନ)
- ଭିଟାମିନ୍ (ଗପ ସଂକଳନ)
- ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ
- ବଣ ଡ଼ଙ୍ଗରର ଗପ (କୋରାପୁଟିଆ ଆଦିବାସୀ ଲୋକ ଗପ ସଂଗ୍ରହ)
- ପରଜା ଜୀବନ ଓ ସଂସ୍କୃତି (ଗବେଷଣାଧର୍ମୀ ପୁସ୍ତକ)
- Tales from hill and jungle (English)
  (tribal folk tales of koraput region)
- ଆଦିବାସୀ ନାଚ ଓ ଗୀତ (ଗବେଷଣାଧର୍ମୀ ପୁସ୍ତକ)
- ଭାଗବତ ଟୁଂଗି (କବିତା ସଂକଳନ)
- ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର (ଗବେଷଣାଧର୍ମୀ ପୁସ୍ତକ)
- ଜୁଆଙ୍ଗ ପର୍ବପର୍ବାଣି (ଗବେଷଣାଧର୍ମୀ ପୁସ୍ତକ)
- ଡୁମା ଦେବତା ଓ ଅନ୍ୟାନ୍ୟ ଗପ (ଗପ ସଂକଳନ)

**ଲେଖକଙ୍କୁ ଆପଣ ଫୋନ୍ କରିପାରିବେ,**
**୯୪୩୭୨୧୩୮୫୪**

about the author

# ranjan pradhan

Ranjan Pradhan, the most lovable name of Odia litereture and research field. He is a well known writer-cum-journalist of Odisha. He is one of the most popular tribal researcher of Odisha. As a tribal researcher he has a special identity in all elite researchers, writers and readers of the Odisha. He is one of the most stylish short story writers of Odia literature. He is a very polite, professional and gentle journalist by nature. He has performed an outstanding contribution for social service and known as an honest nature lover. Voluntarily by donating blood he saves many precious human lives. For this kind of social service he has awarded by the honourable Governor of Odisha and from so many organisations. His campaign to save river has influenced many people of society. As a rural journalist he is well known to everybody in the state. He has worked in the districts like Anandapur, Talcher, Anugul, Nabarangapur and Keonjhar as a district correspondent of Sambad. Mostly he has done excellent in tribal regions of Odisha as a journalist. He has coined a new concept about tribal journalism in Odisha.

Ranjan Pradhan was born in a small remote village of Kendrapada district of Odisha in 1979. He was writting poetry in his school age. He is a graduate in science stream and zoology as his subject. After his graduation from Kendrapada autonomous college, he has completed his Post Graduation in the subject of Odia language and literature from Utkal University. He is a guy completing PGJMC (Diploma in Journalism and Mass Communication) and MJMC (Master in Journalism and Mass Communication) as his professional courses. He has started his professional career from 'Sambad' (the largest Odia daily news paper of Odisha). He has experienced both as a sub-editor in the desk and district correspondent in many districts of Odisha.

He started writing in many odia magazines and newspapers from the year of 1992 during his school life. In the year of 2003, the first poetry book Matigeeta (The song of the earth) is published. Pradhan's poems are purely

folk centric and rich with village experiences. There were the emotional clarity and honesty of experience in his poetry.

Pradhan has written many Odia short stories. He is very popular in the field of Odia short stories. His speciality, the exceptional thought and exclusive style in short stories has made him unique from others. He is a styleish story writer in Odia literature. An Odia short story 'Bapa' (the father) had won *the 13th Bhubaneswar book fair Rabi Pattanaik smruti award (2007)*. During his college period, he had got first position in State Label Odia short story competition sponsored by *Jagaruka Sahitya Sanskruti Pratisthan, Kendrapada (1998)*. He has also got Srusti o' srasta award-2006 (Umerkote, Nabarangapur district of Odisha) for Odia short stories. He has bagged *Lekhalekhi Youth Odia Short Story Award-2007 (Youth Odia Short Story Award, Bhubaneswar)* for excellence in Odia short stories. He has got *Nirvan Yuva Pratibha Samman-2008* (Jayapur, Odisha), *Umakanta Mohapatra Smruti Samman-2008 (Kedar Nath Gabesana Prathisthana, Bhubaneswar)*, *Gouri Sankar award-2011, (Shishu Kalam, Bhubaneswar-2011), Paschima Aadibasi Sahitya samman-2013 (Paschima Sahitya Patrika, Bhubaneswar)* for odia short stories and tribal research. He has got Sahitya Akademi's travel grant and visited New Delhi and made an interaction with the eminent writers of India.

Ranjan Pradhan has written many books both in Odia and English languages. The short story collections T*anuja balaku nei jetesabu bekaria gapa, Vitamin* and *Duma debata o anyaanya gapa* are three masterpeices of the Odia short story world. After few days of publication, the books disappear from the market. Then there have many editions added in the publication history of the short story books.

In the mean time, Pradhan got an opportunity to work in the Koraput tribal region. He joined at Nabarangapur as the district correspondent of Sambad. He worked here for a decade long and riched with much more tribal experiences here. Thousands of news features and exclusive news stories relating tribal lives are published in Sambad and other leading Odia news papers and magazines. He made an extensive tribal research orientetion during staying in Koraput. After some years of working, Pradhan started writing the tribal books of research orientetion. He published *Bana dangarara gapa*

(Tribal Folk Tales of Koraput Region). He collected above a hundred of tribal folk tales from this region. Then He has made another research project 'Paraja life and culture' (an exclusive field study on Paraja tribe). This book really identified him as a true tribal researcher. Again he published a massive book in Odia language *'Aadibasi nacha o geeta'* all about tribal dances and songs of Koraput region of Odisha. This book is another mile stone of his research career. *'tales from hill and jungle'* is his first book published in English language. *Mati geeta* and *Bhagabata tungi* are two odia poem collections of Mr. Pradhan. Another book *'Aeitihya, sanskruti o' paryatana; Kendujhara'* concerning heritage, culture and tourism of Kendujhar district is the another valuable book of Ranjan Pradhan. He has written *'tales of a holy river, the Baitarani'* in english publication and this is one of the best books regarding river in India.

Many of his Odia short stories and tribal features have broadcast in All India Radio. He has presented many talks in AIR. He has participated many programmes in Door Darshan and other electronics medias.

## PERSONAL PROFILE

**Name**
Ranjan Pradhan

**Father's name**
Maguni Pradhan

**Mother's name**
Nayana Pradhan

**Family**
Wife: Pragyan, Daughter: Samiksha

**Address for correspondence**
Ranjan Pradhan
SAMBAD, District Office, Madhapur, Keonjhar, Odisha
Fon: 9437213854 (Mob)

**E-Mail**
ranjan_pragyan@rediffmail.com
pradhanranjan37@yahoo.com

**Date Of Birth**
1st May 1979

**Self Sketch**
Confident, hard working, sincere, honest, organised, caring

**Hobbies**
Writting and reading research based articles, fiction and non fiction, cinema script writting & collecting news from different news channels, journey for new places.

**Zodiac Sign**
Libra

**Motto of Life**
Live with Love

**Profession**
Journalism

**Academic qualification**
Bsc. Zoology (Hons), Utkal University, Odisha
M.A. in Oriya, Utkal University, Odisha

**Professional qualification**

i) Post Graduate Diploma in Journalism & Mass Communication (PGJMC)-IGNOU, New Delhi

ii) Master in Journalism & Mass Communication (MJMC) -North Odisha University, Baripada, Odisha

**Languages known**

Odia, English, Hindi

**Experiences**

a) One and half decade long experience in an Odia daily newspaper Sambad (Both Desk & Field)

b) Five years experience in an Odia literary magazine Abhipsa (Editorial)

c) Exclusive experiences about tribal lives of Koraput and Kendujhar Region

**Awards**

1. First position in state label Odia short story competition sponsored by Jagaruka sahitya sanskruti pratisthan, Kendrapada (1998)
2. Srusti o' srasta literary award-2006, Umerkote, Nabarangapur (For Odia short story)
3. 13th Bhubaneswar book fair Rabi Pattanaik smruti award- 2007 (For Odia short story)
4. Lekhalekhi youth Odia short story award-2007, Bhubaneswar (For Odia short story)
5. Nirvan yuva pratibha samman-2008, Jayapur, Odisha (For Odia short story)
6. Umakanta Mohapatra smruti samman-2008, Kedar Nath Gabesana Prathisthana, Bhubaneswar (For Odia short story)
7. Travel grant fellowship-2008, Sahitya Akademi, Kolkata (For Odia short story)
8. Gouri Sankar award-2011, Shishu Kalam, Bhubaneswar (For Odia short story)

9. Paschima Aadibasi Sahitya samman-2013 (Paschima Sahitya Patrika, Bhubaneswar) for tribal research.

**Books published**

1. Mati gita (Odia modern poems collection)
2. Tanuja balaku nei jetesabu bekaria gapa (Odia short stories collection)
3. Vitamin (Odia short stories collection)
4. Nabarangapur zillara sanskruti o' parayatan (Tribal tourism & culture of Nabarangapur district)
5. Bana dangarara gapa (Tribal folk tales of Koraput region)
6. Paraja life and culture (Research based exclusive tribal field study on Paraja tribe of Koraput region, Odisha)
7. Tales from hill and jungle (Tribal folk tales of Koraput region in English)
8. Tribal dances and songs (Research based exclusive tribal dance and song collection)
9. Bhagabata tungi (Odia modern poems collection)
10. Heritage, culture and tourism: Kendujhar (Odia) (a massive hand book on Keonjhar district)
11. Duma debata o' anyaanya gapa (Odia short stories collection)
12. Juang Parbaparbani (Odia) (Research based exclusive tribal field study on art, culture, ritual, tradition & festivals of Juang, Keonjhar, Odisha)
13. Tales of a holy river, the Baitarani (Odia) (a massive colourful book on the river Baitarani of Odisha)

**News paper & Magazine items**

About thousands of exclusive news stories & field features, short stories, tribal features, poems & other features are published in many leading Odia literary magazines and newspapers including Sambad where the auther is working.

**Ranjan Pradhan**

